# ରାମ୍-ରାହା

(ପହେଲା ଭାଗ୍)

ହେମଚନ୍ଦ୍ର ଆଚାର୍ଯ୍ୟ




ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ରାମ୍-ରାହା

## (ପହେଲା ଭାଗ)


ଲେଖକ : **ହେମଚନ୍ଦ୍ର ଆଚାର୍ଯ୍ୟ**
ଗର୍ଭଣା, ବରଗଡ଼-୭୬୮ ୦୩୩।

ପ୍ରକାଶକ : ସମ୍ବଲପୁର ବିଶ୍ୱବିଦ୍ୟାଳୟ



ପ୍ରଥମ ମୁଦ୍ରଣ : ୨୦୦୧
ମୁଦ୍ରଣ : ଅପୂର୍ବା ଅଫ୍‌ସେଟ, ଭୁବନେଶ୍ୱର
ପ୍ରଚ୍ଛଦ : ସୁଧୀର କୁମାର ଲେଙ୍କା
ମୂଲ୍ୟ : ଦୁଇଶତ ପଚାଶ ଟଙ୍କା


# RAM-RAHA (PART-I)


by : **Hema Chandra Acharya**
Garbhana, Baragarh-768 033

First Edition : **2001**

Publisher : **SAMBALPUR UNIVERSITY**
Jyoti Vihar, Burla-768 019
Sambalpur, Orissa, India.



Printed at : **Apurba Offset**, Bhubaneswar

Cover Design : **Sudhir Kumar Lenka**

Price : **Rs. 250/- (Two Hundred Fifty only)**



# ପ୍ରସ୍ତାବନା

କେତେ ହଜାର୍ ବଛର୍ ତଲେଁ ଆଦିକବି ମହାମୁନି ବାଲ୍ମିକି ଯେନ୍ ରାମେଣ୍ (ରାମାୟଣ) ଲେଖିଯାଇଛନ୍, ତାର୍ ପ୍ରଭାବ୍ ଖାଲି ଭାରତ୍ ଭିତରେ ନାଁଇ, ଭାରତ୍ ବାହାରେଭି ରହିଛେ । ସେ ମହାନ୍ କବି ଯେନ୍ କେତେଟା ଚରିତ୍ର ସୃଷ୍ଟି କରିଛନ୍ ଆଉର୍ ସେ ଚରିତ୍ର ମାନକର୍ ଭିତରେ ଯେନ୍ ସବୁ ଗୁନ୍ ଭରିଛନ୍, ସେଥିର୍ ଲାଗି ସେ ଚରିତ୍ର ଗୁରା ଇଛେନ୍ ଭି ଆଦର୍ଶ୍ ହେଇକରି ମାନବ୍ ସମାଜର୍ ଆଗେ ରହିଛନ୍ । ରାମେଣ୍ ଲେଖା ବାଲ୍ମିକିର୍ ପଛେ ଶେଷ୍ ନାଇଁ ହଇ ଯାଇ । ଭାରତର୍ ପ୍ରାନ୍ତୀୟ ଭାସାଥି ଏନ୍‌ତାକି କେତେଟା ବିଦେସି ଭାସାଥିଭି କେତେନିକେତେ ରାମ୍ ଚରିତ୍ ଲେଖା ହେଇଛ । ହାମର୍ ଯେନ୍ ଭାରତୀୟ ଭାସାଥି ରାମେଣ୍ ମହାଭାରତ୍ ଆରୁ ଶ୍ରୀମଦ୍ ଭାଗବତ୍ ନାଇଁ ଲେଖା ହେଇ, ସେ ଭାସାକେ ଗୁଟେ ସାର୍ବିକ୍ (ପୂର୍ଣ୍ଣାଂଗ) ଭାସା ବଲି ନାଇଁ କହିହଏ । ଭାସାର୍ ତାକତ୍ ଇ ମହାନ୍ କାବ୍ୟ/ପୁରାନ୍‌ର ଲେଖାଥିଁ ଜାନିହେସି ।

ଇଟା ଗୁଟେ ବଢ଼ିଆ କଥା ଯେ ସମଲ୍‌ପୁରି-କୋସ୍‌ଲି ଭାସାଥି ବିଦ୍ୱାନ୍ କବି ଶ୍ରୀଯୁକ୍ତ ହେମଚନ୍ଦ୍ର ଆଚାର୍ଯ୍ୟ ରାମେଣ୍‌କେ ନିଜର୍ ଭିତରେ ଅନୁଭବ୍ କରି ତାଁକର୍ ହିସାବେ 'ରାମ-ରାହା' କାବ୍ୟ ଲେଖିଛନ୍ । ଇତାର୍ ଆଘୁଁ ଶ୍ରୀ ଇନ୍ଦ୍ରମଣି ସାହୁ କୋସଲି ରାମେଣ୍ ଲେଖି ସାରିଛନ୍ । ଶ୍ରୀ ହେମଚନ୍ଦ୍ର ଆଚାର୍ଯ୍ୟ କାବ୍ୟ ହିସାବେ ରାମକଥା କେ ଖାଲି ରୂପ୍ ନାଇଁ ଦେଇ, ଆଧୁନିକ୍ ଦୃଷ୍ଟିକୋଣ୍‌ନୁ ଇତାକେ ବ୍ୟାଖ୍ୟା ଭି କରିଛନ୍ । ଈଟା ତାଂକର୍ କାବ୍ୟକେ ଆହୁରି ଜିଇଁତା ଆରୁ ବାସ୍ତବ୍ କରିଛେ ।

ତାଁକର୍ ଈ ମହାନ୍ କୃତିକେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଛପେଇ କରି ହାମର୍ ଭାସା ଆରୁ ସାହିତ୍ୟର୍ ଉନ୍ନତି କର୍‌ବାର୍ ପ୍ରୟାସ୍ କରିଛେ । ଈ ଗ୍ରନ୍ଥଟା ସାହିତ୍ୟପ୍ରେମି ଆଧାତ୍ମବାଦି, ଭାସାବିଦ୍ ଆରୁ ଗବେସକ୍‌ମାନଙ୍କୁ ନାନା ଦିଗୁଁ ସାହେଯ୍ କର୍‌ବା ବଲିକରି ହାମେ ଆସା କରୁଛୁଁ । ଯେନ୍ ଭାଇମାନେ ଇ କାମ୍‌କେ ପୁରା କର୍‌ବାର୍ ଲାଗି ସାହେଯ୍ କରିଛନ୍, ତାହାଁକେ ଧଏନ୍‌ବାଦ୍ ଦେଉଛେଁ ।□

ଜ୍ୟୋତି ବିହାର

୨୦-୬-୨୦୦୧

(ଧ୍ରୁବରାଜ ନାୟକ)

କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟାଳୟ

# ଲେଖକର୍ ପଦେ....

ପଶ୍ଚିମ ଓଡିଶା ଆର୍ ଛତିଶ୍ ଗଡ୍ ଅଞ୍ଚଲ୍‌ଟାକେ ଆଗେ କୋଶଲ୍ ରାଏଜର୍ ଇଲାକା ଭିତ୍‌ରେ ଥିବାର୍ ଇତିହାସ୍‌ନୁ ଜନା ପଡ୍‌ସି । ଶ୍ରୀ ରାମ୍ ଇ କୋଶଲ ରଜାର୍ ଝି କୌଶଲ୍ୟାକର୍ ପୁଓ ହଇ ଥିବାର୍ ପୁରାନ୍ କହେସି । ଇ ଅଞ୍ଚଲ ଇଛନ୍ ବି ରାମ୍‌କୁ ପାଶ୍‌ରି ନାଇଁ ପାରେ । ସୋର୍ କର୍‌ସି ହଲିଆ ଗୀତ୍, ହୁମ୍‌ଓ ଗୀତ୍, ଦୁଲି ଗୀତ୍ ଆର୍ ଦୁଲା ଗୀତ୍ ଭିତ୍‌ରେ; ଗୁନ୍ ଗୁନେଇ ଥିସି ନ । ରାମ୍ ଚରିତ୍ ଶୁନ୍‌ସି ହିନ୍ଦୀ, ଓଡ଼ିଆ, ବଙ୍ଗାଲୀ କରି ଭିନ୍ ଭିନ୍ ଭାଷା ନେ । ହେଲେ ନିଜର୍ କଥାଭାଷା ହେଉଥିବାର୍ ଭାଷାଥି ରାମ୍‌କଥାକେ ନୁର୍‌ସି, ଟିକେ ଟେଚେ କରି ଯେ'ନେ ପାଏସି ତାର୍ ହୁରୁଦ୍‌କେ ଗୁଟାରଙ୍ଗେ ଉଲ୍‌ଦିନେସି ସେ'ନେ ।

'ସମ୍ଭଲପୁରୀ' ଓଡ଼ିଆ ନୁହେ କି ତାର୍ ଉପଭାଷା ନୁହେ । ଇଟା ଗୁଟେ ଅଲଗ୍ ଭାଷା ଆଏ ଇ ଅଞ୍ଚଲର୍ ଲୋକ୍ ଇ'ଟା କହି ତାକର୍ ଭାଷାକେ ଦେଶର୍ ସଂବିଧାନ୍ ମାଏନ୍ ନାଇଁ ଦେବାର୍ କାଯେଁ ଦୁଖ୍‌ମନା ହେସନ୍ । ଚାହେଁସନ୍ ଇ ସମଲ୍‌ପୁରୀ ଭାଷାନେ ରାମେଣ୍ ମହାଭାରତ୍ କରି ପୁରାଣ୍‌ମାନେ ଲିଖାହେତା; ତାର୍ ବଲେ ଦାବୀ କରିହେତା ଯେ ଭାରତଲାଗି ହିନ୍ଦୀ, ବଙ୍ଗାଲୀ, ଆସାମୀ, ଗୁଜ୍‌ରାତୀ ଯେନ୍ତା ଆ'ନ୍; ଠିକ୍ ସେନ୍ତା ଇ ସମଲ୍‌ପୁରୀ ବି ଆଏ; ଅବେଶ୍ କେତେ ଲୋକ୍ ସମଲ୍‌ପୁରୀ ଠାନେ କୋଶଲୀ ତ. କେତେଲୋକ୍ କୋଶ୍‌ଲୀ-ସମଲ୍‌ପୁରୀ ବି କହେସନ୍ । ନାଆଁ ଯା'ଣା ହେଲେ ବି ଭାଷାଟା ଗୁଟେ ଆଏ, ଅଭିନ୍ ଆଏ । ସମଲ୍‌ପୁରୀ ଭାଷାନେ ରାମ୍‌କଥା ଲିଖା ହଉ, ଇଟା ବନ୍‌ଏ ବନ୍‌ଏ ଲୋକ୍ ମାନେ ମନ୍ ତନ୍ ଦେଇ ଚାହୁଁଥିଲେ । ଡ. ନୀଲ୍‌ମାଧବ ପାଣିଗ୍ରାହୀ ଆର୍ ତାକର୍ ସାଙ୍ଗେ ବନିହା ପଣ୍ଡିତ୍ ଆର୍ ପର୍‌ବୀନ୍ ଲୋକ୍ ସାଙ୍ଗେ ଅନୁଷ୍ଠାନ୍ ମାନେ ମତେ ରାମ୍‌କଥା ଲେଖ୍‌ବାକେ ତହ୍‌କାଲେ, ଇ ସମଲପୁରୀ ଭାଷାନେ । ମୋର୍ ମନ୍ ଭିତ୍‌ରେ ରାମ୍‌କଥା ଲିଖ୍‌ବାକେ ବୀଜ୍‌ଟେ ପଡ୍‌ଲା; ସେଥିଁ ମାଏଟ୍, ପାଏନ୍, ଖଡ୍, ସାର୍ କରି ପକାଲେ, ଶ୍ରୀ ଧନ୍‌ପତି ମହାପାତ୍ର ମେତାଲ୍ ଉପ୍‌ନ୍ୟାସ୍‌କାର୍, ନାଟକ୍‌କାର, ଗୀତ୍‌କାର୍

ଆର୍ ଅନୁଷ୍ଠାନ୍ ମାନେ । ରାମ୍‌କଥା ଲେଖ୍‌ଲିଁ 'ରାମ୍-ରାହା' ନାଆଁ ଦେଇ, ଲିଖା ସାଙ୍ଗେ ସାଙ୍ଗେଁ ଇ ଭାଷାର୍ ମୁଖିଆ ଆର୍ ମୁଲିହାର୍ ପଣ୍ଡିତ୍ ମାନେ ସହରାଲେ, ମନେ ଡହକ୍ ଚଢ଼୍‌ଲା । ଲିଖା ସର୍‌ଲା ଉତ୍ତୁଁ ସମୀକ୍ଷା ସାହିତ୍ୟର୍ ମାଏନ୍‌ତା ବିଦ୍ୱାନ୍ ସ୍ୱର୍ଗତ ଡ. ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଆଜ୍ଞାକର୍ ଗୋଚର୍‌କେ ଆଏଲା । ସେ ଆଜ୍ଞା ତାର୍ ଉପରେଁ 'ରାମ୍-ରାହାର ପ୍ରଥମ ପାହାଚ ତଳେ' ନାଁ ଦେଇ ଗୁଟେ ମନ୍ତବ୍ୟ ଲେଖ୍‌କରି ଦେଲେ; ଯେନ୍‌ଟା

ଇ ଇଲାକାର୍ ବଢ଼ୁଏ ବଢ଼ୁଏ ମାଏନ୍‌ତା ମାନ୍‌କର୍ ମନ୍‌ମାନେ ରାମ୍-ରାହା ଆଡ୍‌କେ ଟାନି ଆହ୍‌ଲା । ରାମ୍-ରାହା ଛପା ହଇ ଲୋକ୍ ହାତ୍‌କେ ଯାଉ ବଲି ସଭେ ଚାହେଁଲେ: ହେଲେଁ ଏତେ ବଡ଼୍ ବିଷଟେ କା'ର୍ ଏକ୍‌ଲାର୍ ହାତେଁ ହେତା ? ବିନ୍ ମାଗି ବି କେତେ ଜନ୍ ନିଜର୍ ଶକ୍ତି ଜାନି ପଏସା ପତର୍ ଦେଇ ଜନାଲେ ସେମାନେ 'ରାମ୍-ରାହା'ର ଛପା ଲାଗି କେତେ ଉଦ୍‌ବେଗ୍ ଆନ୍ । ସେମାନ୍‌କୁଁ ମୋର୍ କୁରୁଡ଼୍ କୁରୁଡ଼୍ ଭାବ୍ କେତେ ଆଉ୍ କେନ୍ତା କରି ଜନାମି ? ରାମ୍-ରାହା ପଢ୍‌ବାର୍ ଲୋକ୍‌କର୍ ଜାନ୍‌ବାର୍ ଲାଗି ଜନେ ନଉଛେଁ ସେ ଭାଷା-ସଉକିଆ ମାନ୍‌କର୍ ମହାନ୍ ନାଆଁମାନେ, ଯେନ୍ ମାନ୍‌କର୍ ଭିତ୍ରୁଁ ମୁଲିହାର୍ ଆନ୍ ଡ. ନୀଲ୍‌ମାଧବ ପାଣିଗ୍ରାହୀ ତାକ୍‌ର ବଂଧୁ ଶ୍ରୀ ଶ୍ରୀପତି ମିଶ୍ର, କବିରାଜ ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀ ଧନ୍‌ପତି ମହାପାତ୍ର ଆର୍ ମୋର୍ ଭାଏ ଶ୍ରୀ ମଙ୍ଗଲ୍ ଚରଣ୍ ଆଚାର୍ଯ୍ୟ । ସେ ପଏସା ସବୁ ରାମର୍ କାମ୍‌କେ ନାଇଁ ଆଏଲା, ବିନର୍‌ବଏ ହଇଗଲା, ସେଟା ବି ରାମର୍ ଇଚ୍ଛା ଆଏ ଭାବି ତୁନ୍ ପଡ଼୍‌ବାକେ ହେଲା ।

'ରାମ୍-ରାହା' ଛପା ହଇ ସେ ଲୋକ୍‌କର୍ ହାତ୍‌କେ ଯାଉ, ଯେନ୍‌ମାନେ ଇ ଭାଷାକେ ବଅଁଚେଇ ରଖିଛନ୍; ଇଟା ବଢ଼ୁଏ ଇଚ୍ଛାଟେ ହେଲେଁ ବି କାମ୍‌କେ ଉତ୍‌ରାବାର୍‌ଟା ବଢ଼ୁଏ କଡ଼ା ଆଏ । ଭାଏଗ୍ ଡ. ନୀଲ୍‌ମାଧବ ପାଣିଗ୍ରାହୀ ଆଜ୍ଞାକର୍ ପରାମର୍ଶନେ ସମ୍‌ଲପୁର୍ ବିଶ୍ୱବିଦ୍ୟାଳୟ(ଜ୍ୟୋତିବିହାର)ର୍ କୁଲ୍‌ପତି ଡ. ଧ୍ରୁବରାଜ୍ ନାଏ୍‌କ ଆଜ୍ଞାକର୍ ଗୋଚର୍‌କେ ନିଆଗଲା । ସେ ଅଜ୍ଞାକର୍ ଚେରେଷ୍ଟାନେ ଆଏଜ୍ 'ରାମ୍-ରାହା' ଲୋକ୍ ହାତ୍‌କେ ଯାଉଛେ । ଇ କାମ୍‌ଲାଗି କୁଲ୍‌ପତି ଡ. ନାଏକ୍ ଆଜ୍ଞାକୁଁ ମୁଇଁ ଯେତେ ଧଏନ ଧଏନ୍ କଲେଁ ବି କମ୍ ହେବା । 'ରାମ୍-ରାହା' ପଢ୍‌ବାର୍ ସଭେ ସେ ଆଜ୍ଞାକୁଁ ଧଏନ୍

ଧଏନ୍ କର୍‌ବେ, ସମ୍ବଲ୍‌ପୁରୀ ଭାଷା ବଅଁଚି ଥିବାର ତକ୍ ସେ ଆଙ୍କା ବଅଁଚ ରହେବେ ଇ ଆଶା ମତେ ଦକ୍ ଦକ୍ ଦିଶୁଛେ । ମୋର୍ ଗାଁ ମାଁ ଇ 'ରାମ୍-ରାହା' କାର୍ଯେ ଯାହା କରିଛନ୍ ଉନିଆଁ କିହେ ନାଇଁ ଜାନ୍‌ଲେଁ ବି ମୁଇଁ ଜାନିଛେଁ, ସେମାନେ ବି ଧଏନ୍ ଧଏନ୍ ଥା'ନ ।

ବିଶ୍ୱବିଦ୍ୟାଳୟ, 'ରାମ୍-ରାହା' ଛପା କର୍‌ବବାରେଁ ଯେନ୍ ଆଙ୍କାମାନେ ମନ୍‌ତନ୍ ଦେଇ ଲାଗିଛନ୍ ସେମାନ୍‌କୁଁ ବି ରାମ୍‌ଇଚ୍ଛାର୍ ମୂର୍ତ୍ତି ଭାବି ମନ୍‌ଭିତ୍‌ରୁଁ ଯୁହାର୍ ଜନଉଛେଁ । 'ରାମ-ରାହା' ଲୋକ୍ ହାତ୍‌କେ ଯାଉ, ପଢ଼ଲା ପରେଁ ଯଦର୍‌ପି ପର୍‌ଶଁସା ମିଲେ ସେମାନ୍‌କର୍ ଆଏ, ଯେନ୍‌ମାନେ 'ରାମ୍-ରାହା' ଲେଖେଇଛନ୍ ବହରେଇଛନ୍; ଆର୍ ନିନ୍ଦା ହେଲେଁ ସେ'ଟା ଖାଲି ମୋର୍ ନ ଆଏ, କାହାକେ ଭାଗ୍ ନାଇଁ ଦେଇ ହଏ । ଏତ୍‌କି ନ ।❑

୭ - ୬ -୨୦୦୧

ଗର୍ଭଣା, ବରଗଡ଼

**ହେମଚନ୍ଦ୍ର ଆଚାର୍ଯ୍ୟ**

# 'ରାମ୍-ରାହା' ର ପ୍ରଥମ ପାହାଚ ତଳେ

କୋଶଳୀ (ସଂବଲ୍‌ପୁରୀ) ଭାଷା ସାହିତ୍ୟର ବିକାଶ କ୍ଷେତ୍ରରେ ସଂସ୍କୃତରୁ ଆହରଣ ଏକ ସାଂପ୍ରତିକ ଧାରା । ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ ଦ୍ୱାରା ରଚିତ ''ମହାଭାରତ କଥା''ର ଆଦିପର୍ବ ଏବଂ ସ୍ୱର୍ଗାରୋହଣ ପର୍ବ ପ୍ରାୟ ଚାରିମାସ ତଳେ ବିପୁଳ ଉତ୍ସାହ ମଧ୍ୟରେ ଉନ୍ମୋଚିତ ହୋଇଯାଇଛି । ସେହି ସଭାରେ ଶ୍ରୀ ହେମଚନ୍ଦ୍ର ଆଚାର୍ଯ୍ୟ ଭାଷଣ ପ୍ରସଙ୍ଗରେ ଜଣାଇଥିଲେ ଯେ ତାଙ୍କ ଦ୍ୱାରା ସଂବଲପୁରୀ ଭାଷାରେ ରଚିତ ''ରାମ୍ ରାହା'' କାବ୍ୟ ମଧ୍ୟ ସମ୍ପୂର୍ଣ୍ଣ ହୋଇଯାଇଛି । 'ମହାଭାରତ୍ କଥା'ରେ ବ୍ୟାସଙ୍କ ମହାଭାରତର ବିଷୟ ବସ୍ତୁର ଅନୁସରଣ ପ୍ରାୟ ବିଶ୍ୱସ୍ତ; କିନ୍ତୁ 'ରାମ୍‌ରାହା'ରେ ଅଛି ବିଷୟ ବସ୍ତୁର ସ୍ଥୂଳ କଙ୍କାଳ ଉପଯୋଗ ଭିତ୍ତିରେ ସ୍ୱଚ୍ଛନ୍ଦ ଚୟନ ଓ ଗୁମ୍ଫନ । ପ୍ରସଙ୍ଗକ୍ରମେ ବକ୍ତବ୍ୟ ଯେ ଷାଠିଏ ଦଶକରେ ସଂବଲପୁରୀ ଗୀତି କବିତାରେ ସଫଳ କବି ପାଟଣାଗଡ଼ର ଶ୍ରୀ ଇନ୍ଦ୍ରମଣି ସାହୁ ବାଲ୍ମୀକି ରାମାୟଣର ଅନୁବାଦ ଶୈଳୀରେ କୋଶଳୀ (ସଂବଲପୁରୀ) ଭାଷାରେ ରାମାୟଣ ରଚନା କରି ସାରିଥିଲେ । ଥରେ ଏହାର କିଛି ଅଂଶ ଦେଖିବାର ସୌଭାଗ୍ୟ ମିଳିଥିଲା ବୋଲି ସ୍ମରଣକୁ ଆସେ । ବିଶ୍ୱସ୍ତ ସୂତ୍ରରୁ ଅବଗତ ହୋଇଛି ଯେ ବହୁ ବର୍ଷ ପରେ ଶ୍ରୀମାନ୍ ଇନ୍ଦ୍ରମଣି ବାବୁଙ୍କ କୋଶଳୀ ରାମାୟଣର ମୁଦ୍ରଣ କାର୍ଯ୍ୟ ଆରମ୍ଭ ହୋଇଯାଇଛି । ନିଶ୍ଚୟ ଅତିଶୟ ଆନନ୍ଦର କଥା । ''ରାମ ରାହା'' କାବ୍ୟ ବିଶ୍ୱସ୍ତ ଅନୁବାଦ ଶୈଳୀରେ ରଚିତ ନହୋଇ ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀର ବାର୍ତ୍ତା ବହନ କରେ । ଗୁମ୍ଫନର ନୂତନତା ଯୋଗୁଁ ଏହାକୁ ରାମାୟଣୀୟ ପରଂପରାରେ ଏକ ମୌଳିକ ସୃଷ୍ଟି ବୋଲି କହିବା ଯଥାର୍ଥ ହେବ ବୋଲି ମୋର ମତ ।

କବି ଶ୍ରୀଯୁକ୍ତ ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଓଡ଼ିଆ କାବ୍ୟ ''ଶବରୀ-ସନ୍ଦେଶ'' ପାଠ କରିବାର ସୌଭାଗ୍ୟ ଲାଭ କରିଥିଲି ୧୯୮୪ରେ । ଏହି କାବ୍ୟ ଓଡ଼ିଆ ରୀତି ଶୈଳୀରେ ଆଦ୍ୟପ୍ରାନ୍ତ 'ଶ' ଅନୁପ୍ରାସରେ ରଚିତ । ବର୍ଣ୍ଣନା ଓ ଅଳଙ୍କାର ପ୍ରୟୋଗର ଚାରୁତ୍ୱ ମଧ୍ୟ କବିଙ୍କ ପ୍ରତିଭାର ଦ୍ୟୋତକ ବୋଲି ମୋର ଅଭିମତ ଲିପିବଦ୍ଧ କରିଥିଲି । ଏହି କାବ୍ୟ ପ୍ରକାଶିତ ହୋଇଛି । ସେହିପରି ତାଙ୍କର ଏକ ପୌରାଣିକ ନାଟକ ମଧ୍ୟ ପ୍ରକାଶିତ । 'ବଏଲାରେ' ଶୀର୍ଷକରେ ୧୬ଟି ଲଳିତ ନିବନ୍ଧ 'ଭୂମି ପୁତ୍ର' ଓ 'କୃଷକ ଜ୍ୟୋତି' ପତ୍ରିକାରେ ସ୍ଥାନିତ । ଏତଦ୍‌ବ୍ୟତୀତ ଅନେକ ଗଳ୍ପ ଓ ନିବନ୍ଧ ମଧ୍ୟ ବିଭିନ୍ନ ସାମୟିକ ପତ୍ରିକାରେ ପ୍ରକାଶିତ । କିନ୍ତୁ ତାଙ୍କର ଅପ୍ରକାଶିତ ଲେଖାବଳୀ ହେଲା ଚାରୋଟି ନାଟକ ଅଭିଶାପ, ନିର୍ବାସିତା, ବିଶ୍ୱାସ (ସାମାଜିକ), ପ୍ରତୀକ୍ଷା (ସାମାଜିକ), କବିତାବଳୀ 'ପାଥେୟ ମୋ ଜୀବନ ଯାତ୍ରା'ରେ ଗୀତି

ଗାଥା- ଶ୍ରବଣକୁମାର, ଅଭିଶପ୍ତ ପରୀକ୍ଷିତ, ବସ୍ତ୍ରାହରଣ, ଶକ୍ତିବିଦ୍ଧ ରାମ ଏବଂ କୃଷ୍ଣକେଳି (ସଂସ୍କାର ମୂଳକ ଦଣ୍ଡନାଚ) । ଏହି ଅପ୍ରକାଶିତ ରଚନାବଳୀ ବିଭାଗ ତଥା ଗୁଣାତ୍ମକତା ଦୃଷ୍ଟିରୁ ଯେପରି ବର୍ଣ୍ଣାଢ୍ୟ ପରିମାଣ ଦୃଷ୍ଟିରୁ ସେପରି ପୁଷ୍କଳ । ଏକମାତ୍ର 'ଶବରୀ ସନ୍ଦେଶ' ଭିତ୍ତିରେ ଏହା ଅନାୟାସରେ ଅନୁମେୟ ଯେ ଏମାନଙ୍କ ମଧ୍ୟରେ କବିଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ରହିଥିବ; କାରଣ ଏ ରଚନା ଗୁଡ଼ିକ ମୂଳରେ କୌଣସି ବାଧ ବାଧକତା ଅଥବା ବ୍ୟବସାୟିକ ବୁଦ୍ଧି ନାହିଁ, ଅଛି ଏକ ସ୍ୱଚ୍ଛନ୍ଦ ମାନସ ବିଳାସ । ଏହି ବହୁପାଠୀ ଏବଂ ଜ୍ଞାନୀ ଓ ସ୍ୱାଧୀନଚେତା ସଜ୍ଜନଙ୍କ ପକ୍ଷରେ ସାହିତ୍ୟ ଚର୍ଚ୍ଚା ଏକ ବୃତ୍ତି ନୁହେଁ, ତାହା ଏକ ବ୍ରତ, ଏକ ସ୍ୱତଃସ୍ଫୂର୍ତ୍ତ ଭାବ-ବିହାର - "A loose sally of the mind" ।

ଗ୍ରାମୀଣ ବ୍ୟକ୍ତି ୧୨୦.୪.୧୯୨୬ରେ ସେ ଜନ୍ମ ଗ୍ରହଣ କରିଥିଲେ । ଅଧୁନା ବରଗଡ଼ ଜିଲ୍ଲା ଅନ୍ତର୍ଗତ ଗର୍ଭଣା ଗାଁରେ । ପଶ୍ଚିମାଞ୍ଚଳର କୋଶଳୀ-ସଂବଲପୁରୀ ଭାଷା ତାଙ୍କ ରସନାର ପ୍ରାଥମିକ ପ୍ରକାଶ ମାଧ୍ୟମ । ହାଇସ୍କୁଲ ଶିକ୍ଷା ପରେ ୨୨ ବର୍ଷ ସରକାରୀ ଚାକିରି କରି ୧୯୬୭ ଆରମ୍ଭରେ ସେ ସ୍ୱେଚ୍ଛାରେ ପଦତ୍ୟାଗ କରିଥିଲେ ଏବଂ ଗତ ତିରିଶ ବର୍ଷ କାଳ ସେହି ଗ୍ରାମରେ କୃଷି ଏବଂ ପଶୁ ସଂପଦର ସହାୟତାରେ ଏକ ସମ୍ମାନିତ ମଧ୍ୟବିତ୍ତ ଗୃହସ୍ଥିର ଜୀବନ ଯାପନ କରିଆସିଛନ୍ତି । ଏଥିରେ ତାଙ୍କର ସାଫଲ୍ୟ ଯାହାହେଉ, ପରିଣତ ବୟସରେ ନୀତି-ପୂତ-ଚେତନା ନେଇ ଉତ୍ତର ସ୍ୱାଧୀନତା କାଳରେ ଗ୍ରାମରେ ସାମାଜିକ ସାଂସ୍କୃତିକ ବିକାଶ ଲକ୍ଷ୍ୟ କରି ଆସିଛନ୍ତି । ନାନା ପୁସ୍ତକାଦି ଅଧ୍ୟୟନ ତାଙ୍କର ପ୍ରିୟକର୍ମ ଏହି ଜୀବନରେ ତାଙ୍କ ଦୃଷ୍ଟିଭଙ୍ଗୀରେ ଅଛି ଏକ ଆଶାବାଦୀ ସଂସ୍କାରକାମୀର ବୈଶିଷ୍ଟ୍ୟ । ଏହା ତାଙ୍କ ରଚିତ ସାହିତ୍ୟର ବିଷୟ-ଚୟନ ତଥା ରଚନା ପରିସରରୁ ସ୍ପଷ୍ଟରୂପେ ପ୍ରତିଭାତ ହୋଇଥାଏ । ତାଙ୍କ ସଂବଲପୁରୀ ରଚନାବଳୀରେ ମଧ୍ୟ ତାଙ୍କର ଏହି ଭାବର ପ୍ରତିଫଳନ ଘଟିଛି । ଗୋଟିଏ ପ୍ରକାଶିତ କାବ୍ୟ ''ସତର୍ ସତୀ ବୃନ୍ଦାବତୀ'' ଏବଂ ଗୋଟିଏ ପ୍ରକାଶିତ ଗଳ୍ପ ସଂକଳନ ''କଥାନି ସଦ୍ ସତାନି''ରେ ତାଙ୍କ ସାହିତ୍ୟିକ ପ୍ରତିଭାର ସ୍ଫୁରଣ ଖୁବ୍ ମନୋହର । ଏହାଛଡ଼ା ତାଙ୍କର ଦୁଇଖଣ୍ଡି ଅପ୍ରକାଶିତ ସଂବଲପୁରୀ ରଚନା ମଧ୍ୟ ଅଛି । ଗୋଟିଏ କାବ୍ୟ 'ନୁନୀ' ଏବଂ ଅପରଟି ଅନେକ ଗୀତ ଓ ଗୀତିଗାଥା । ଏହି ରଚନାବଳୀ କେବଳ କୋଶଳୀ-ସଂବଲପୁରୀ ଭାଷା ରଚନାରେ ତାଙ୍କ ସିଦ୍ଧିର ସନ୍ତକ ନୁହେଁ; ଅଧିକନ୍ତୁ ସେ ସବୁ ପଶ୍ଚିମାଞ୍ଚଳୀୟ ରୀତି ଓ ଜୀବନଧାରାର ଆଲେଖ୍ୟ ଭାବରେ ଯେପରି ଉଜ୍ଜ୍ୱଳ ଚିତ୍ରପୁରୀ, ସେହିପରି ହେମଚନ୍ଦ୍ର ବାବୁଙ୍କ ବିଚାରନୈପୁଣ୍ୟ, କଳ୍ପନାଚାତୁରୀ ତଥା ମାନବିକ ଅବବୋଧର ମଧ୍ୟ ପ୍ରକାଶ ଭୂମି । ସ୍ଥୂଳତଃ ତାଙ୍କର ଓଡ଼ିଆ ତଥା କୋଶଳୀ-ସଂବଲପୁରୀ ରଚନାବଳୀରେ ଦୁଇଟି ଭାଷାର ବଳିଷ୍ଠ ପ୍ରୟୋଗ ଓ ପରୀକ୍ଷା ମଧ୍ୟରେ ସମାନ ଗୌରବନେଇ ଆକାରିତ ହୋଇଛି ଏକ ମନୋହର କବି ପ୍ରତିଭା, ଏକ ସୂକ୍ଷ୍ମବ୍ୟଞ୍ଜନା ସମର୍ଥ ବ୍ୟକ୍ତି ଚିତ୍ତ ।

ଏ ପ୍ରସଙ୍ଗରେ କବି ହେମଚନ୍ଦ୍ରଙ୍କ ସମାଲୋଚକ ବ୍ୟକ୍ତିତ୍ୱର ସ୍ୱକୀୟ ମୌଳିକତା ବିଷୟରେ ନିମ୍ନ ଉଲ୍ଲେଖର ଲୋଭ ସଂବରଣ କରି ହେଉନାହିଁ ।। ମୋର ବହି 'କାବ୍ୟଶିଳ୍ପୀ - ଗଙ୍ଗାଧର' ପାଠକଲା ପରେ ତାଙ୍କ ମତାମତ ପ୍ରସଙ୍ଗରେ ସେ ଲେଖିଥିଲେ ''ଗଙ୍ଗାଧର ମୋ ପାଇଁ ଏକ ଅନବଦ୍ୟ ଓ ଅଦ୍ଭୁତ ପ୍ରତିଭାର ଅଧିକାରୀ; ଏଣୁ ତାଙ୍କ କୃତି ସଂବନ୍ଧରେ ଯେ କୌଣସି ରଚନା ମୋତେ ଆକର୍ଷଣ କରେ । ଏ ଯାବତ୍ ଯାହା ପଢ଼ିଛି *** ।''

ତପସ୍ୱିନୀଂକ ପତ୍ର ଲେଖନ ସଂପର୍କରେ ତାଙ୍କ ମତ ଜାଣିବାକୁ ମୋ ପ୍ରଶ୍ନର ଉତ୍ତରରେ ସେ ଲେଖିଥିଲେ, ''*** ତପସ୍ୱିନୀ ସୀତାଙ୍କର ଶଂସିତ ପତ୍ର ରାମଙ୍କର ହସ୍ତଗତ କରାଇବେ ନାହିଁ, ଏହା ଜାଣି ଗଙ୍ଗାଧର ପତ୍ର ଲେଖାଇଛନ୍ତି । ପତ୍ର ଲେଖାଇବାରେ ଯେଉଁ ହୃଦୟର ଅଭ୍ୟୁଦୟ କରାଇଛନ୍ତି, ସେ ପତ୍ର ଆଉ ନ ଲେଖାଇବାରେ ସେ ହୃଦୟର ଗଭୀରତା ଓ ପ୍ରଶସ୍ତତାର ପରିଚୟ ଦେଇ, ରାମଚନ୍ଦ୍ରଙ୍କର ଶ୍ଲାଘା ପ୍ରତି ପାଦନରେ ଗଙ୍ଗାଧରଙ୍କ ଶିଳ୍ପ ନୈପୁଣ୍ୟ ଚରମୋତ୍କର୍ଷ ଲାଭ କରିଛି । ମୋତେ ଲାଗେ ଗଙ୍ଗାଧର ଯେଉଁ ଭାଗବତୀ ବା ଆଧ୍ୟାତ୍ମିକ ସ୍ଥିତିରେ ଏ ସବୁର କଳ୍ପନା ତଥା କଥନ କରିଛନ୍ତି ତାହା ସମ୍ୟକ୍ ହୃଦୟଙ୍ଗମ କରିବାକୁ ହେଲେ ଅନୁରୂପ ସ୍ଥିତି ଆବଶ୍ୟକ ହୋଇପଡ଼େ । ସେ ସ୍ଥିତି ହୀନତା ସୀତା ଚରିତ୍ର ନେଇ ଭିନ୍ନ କଳ୍ପନା କରେ । ଏଥିରେ ବାସ୍ତବତଃ ସୀତା ଚରିତ୍ରର ମ୍ଲାନି ବା ଗ୍ଲାନି ମୋ ଚିନ୍ତାର ବାହାର ବିଷୟ ।''

କହିବା ବାହୁଲ୍ୟ ତପସ୍ୱିନୀର ବହୁ ଚର୍ଚ୍ଚିତ ପତ୍ର ବିଷୟରେ ହେମଚନ୍ଦ୍ର ବାବୁଙ୍କର ଚିନ୍ତାର ଏକ ସ୍ୱକୀୟତା ଅଛି । ଏହି ସ୍ୱକୀୟତା ଆଧାରରେ ଏବଂ ନିଜର ପରିଣତ ଜୀବନର ଜ୍ଞାନ, ଅନୁଭବ, ଭୂୟୋଦର୍ଶନ ତଥା ବହୁ ପ୍ରକାର ସାହିତ୍ୟ ରଚନାରେ ଲେଖନୀ ଚାଳନା ଜନିତ ପରିପକ୍ୱ ଅଭ୍ୟାସ ଲବ୍ଧ ନୈପୁଣ୍ୟର ସାଧୁ ଉପଯୋଗ କରି କାବ୍ୟର କିସ୍କିନ୍ଧ୍ୟାକାଣ୍ଡ ଲେଖା ସରିବା ପରେ ମୁଁ ପ୍ରଥମେ ଦେଖିଥିଲି ପାଣ୍ଡୁଲିପି ।

'ରାମ-ରାହା' ନାମ କରଣ ହିଁ କବିଙ୍କ ଭାଗବତ ଚେତନାର ସୂଚକ । ତାଙ୍କ କାବ୍ୟରେ ବର୍ଣ୍ଣିତ ରାମଚରିତର ଅନୁଶୀଳନକୁ ସେ କଳ୍ପନା କରିଛନ୍ତି ଏକ ରାମପ୍ରାପ୍ତିର 'ରାହା' ବା ମାର୍ଗରୂପରେ । ଏ ମାର୍ଗରେ ଅଧ୍ୟାୟ ବା ସର୍ଗ ନାହିଁ, ଅଛି ସୋପାନ ବା 'ପାଉଚ' । ଆଧ୍ୟାତ୍ମିକ ଉନ୍ନୟନର ଶୀର୍ଷ ଦେଶରେ ରହିଛନ୍ତି ରାମ । ତାଙ୍କୁ ପାଇବା ଲାଗି ପାଉଚ ପରେ ପାଉଚ ଚଢ଼ି ପାଠକକୁ ସାଧକକୁ ଉଠିବାକୁ ହେବ । କାବ୍ୟ ନାମ ଓ କାବ୍ୟ ବିଭାଗର ନାମ ଉଭୟ ମଧ୍ୟରେ ଏହି ଆଧ୍ୟାତ୍ମିକ ପ୍ରଲେପ ରାମାୟଣୀୟ ପରଂପରାରେ ଏକ ନୂତନ ଧାରା । ପୁନଶ୍ଚ ଏ ସୋପାନର ବିନ୍ୟାସ କଲାବେଳେ କବି ତାର ପ୍ରକୃତି ମଧ୍ୟରେ ଭଗବଦ୍ ପାରାୟଣ ପରି ପ୍ରତିଟି ଅଧ୍ୟାୟରେ ଅଛି ସ୍ୱୟଂ ବାଲ୍ମୀକିଙ୍କ ଦ୍ୱାରା ପ୍ରବଚନ ଢଙ୍ଗରେ ଗୋଟିଏ ଗୋଟିଏ ପ୍ରସଙ୍ଗରେ ରଚିତ ପଦାବଳୀ ।

ମୂଳକୁ ଅଛନ୍ତି ବୀଣା ବାଦନ ପରାୟଣ ରାମକୁମର ଲବକୁଶ । ତାଙ୍କ ବୀଣାନିକ୍ୱଣର ସହଚର ଝିଞ୍ଜଣୀ-ରାମତାଳି ମଧ ବାଜୁଛି । ସୀତା ସମେତ ସକଳ ତପସ୍ୱୀ ତପସ୍ୱିନୀଙ୍କ ଉପସ୍ଥିତିରେ ହେଉଛି ରାମକୀର୍ତ୍ତନ ଗୀତାକାର ରାମାୟଣ ପ୍ରବଚନ । ଗାୟକ ସ୍ୱୟଂ ଭକ୍ତ ପ୍ରବର କବି ଶିରୋମଣି ମହାମୁନି ବାଲ୍ମୀକି । ଋଷି ଆଶ୍ରମର ପୁଷ୍କଳ ସୌନ୍ଦର୍ଯ୍ୟଭରା କମ୍ର ପ୍ରକୃତିର ପ୍ରାଣୋନ୍ମାଦକର ବର୍ଣ୍ଣନା ମଧ୍ୟରେ ନଇଁ ଆସେ ଶାନ୍ତିର ସ୍ନିଗ୍ଧ ସ୍ପର୍ଶ । ପ୍ରାତଃକୃତ୍ୟ ସାରି ଗୋଟିଏ ଗୋଟିଏ ହୋଇ ଆସନ୍ତି ଋଷିକୁମାର, ଋଷିକୁମାରୀ, ଲବ କୁଶ ଆସି ବୀଣାଧରି ପ୍ରସ୍ତୁତ ହୁଅନ୍ତି । ଶେଷରେ ଆସନ୍ତି ବୟସ୍ୱିନୀ ତପସ୍ୱିନୀମାନେ ତଥା ଜନକ ନନ୍ଦିନୀ ରାମ ରମଣୀ ସୀତା । ପ୍ରାଥମିକ ଭଜନ କୀର୍ତ୍ତନ ସରିଲା ବେଳକୁ ଶାନ୍ତ ସଂଯତ ଶୁଭ୍ରବପୁ କୁଳପତି ଆସିବା ପରେ ଆରମ୍ଭ ହୁଏ ରାମ ଚର୍ଚ୍ଚା । ଦିନେ ଦିନେ କୁଶ ଅଥବା ଲବ ଅଥବା ଅପର କେହି ତାପସ ଭକ୍ତ ପ୍ରଶ୍ନ କରନ୍ତି ରାମଙ୍କ ବିଷୟରେ । ତହିଁ ଆରଦିନ ସେହି ପ୍ରଶ୍ନର ଉତ୍ତର ଆକାରରେ ସଂପୃକ୍ତ ଉପାଖ୍ୟାନର କାବ୍ୟରୂପ ପୋଥିମଧ୍ୟରୁ ବାହାର କରନ୍ତି କୁଳପତି । ଏହିପରି ଗୋଟିଏ ଗୋଟିଏ ପାହାଚ ସରେ ଦିନକୁ ଦିନ, ଦିନକୁ ଦୁଇଟି ଅଧିବେଶନ ବସେ । ପାଳିତ ବନ ପଶୁ ପକ୍ଷୀ ହେର୍ନା କୁତ୍ରା, ସମ୍ବର, ଗୟଳ, ରୂପ, ପଣ୍ଡ୍କା ସମସ୍ତେ ବି ଆସି ଠୁଳ ହୁଅନ୍ତି ଚୌପାଢ଼ୀ ଚାରିପାଖେ । ସମଗ୍ର ପରିବେଶ ହୋଇ ଉଠେ ରାମମୟ । ପ୍ରସଙ୍ଗକ୍ରମେ ବାଲ୍ମୀକି କହନ୍ତି ତାଙ୍କ ଆତ୍ମ ଚରିତ ଦସ୍ୟୁ ରତ୍ନାକର କଥା କିପରି ଦିନେ ବୀଭତ୍ସ ପଙ୍କିଳ ନରମାରଣ କାର୍ଯ୍ୟକ୍ରମ ମଧ୍ୟରେ 'ମରା' ପଦର ନିରନ୍ତର ଉଚ୍ଚାରଣ ମଧ୍ୟରୁ ସେ ପାଇଥିଲେ ରାମ ସଂପତ୍ତି । ସେହି ପରମାରାଧ ରାମଚନ୍ଦ୍ରଙ୍କ ଗୁଣ ମହିମା କୀର୍ତ୍ତନରେ ଆତ୍ମବିଭୋର ବାଲ୍ମୀକିର ପ୍ରକାଶ ଘଟିଛି କବି ହେମଚନ୍ଦ୍ରଙ୍କ ହୃଦୟମନ ମଧ୍ୟରେ । 'ରାମ୍‌ରାହା' ହୋଇଯାଇଛି ଏକ ପାବନ ମାର୍ଗ ।

ଆଙ୍ଗିକର ଏ ନୂତନ ପରିକଳ୍ପନା କବିଙ୍କ ପ୍ରତିଭାର ସୂଚକ । କିନ୍ତୁ ଆଖ୍ୟାନ ବସ୍ତୁର ଉପସ୍ଥାପନ କାଳରେ ମଧ୍ୟ କବି କୌଣସି ଏକ ନର୍ଦ୍ଦିଷ୍ଟ ରାମାୟଣର ଅନୁସରଣ କରିନାହାନ୍ତି । ତାଙ୍କ କଥାରେ :- "ମୁଁ କୌଣସି ଏକ ରାମାୟଣକୁ ଅବଲମ୍ବନ କରି ନାହିଁ । ମୂଳତଃ ବାଲ୍ମୀକି ରାମାୟଣର ଓଡ଼ିଆ ଅନୁବାଦ ମାନ ଦେଖିଛି । ଅନ୍ୟ ଭାଷାରେ ବିଭିନ୍ନ ରାମାୟଣକାରଙ୍କର ରାମାୟଣ ତଥା ତଦାଶ୍ରିତ ସାହିତ୍ୟ କୃତିମାନ ପଢ଼ି ଲେଖିଛି ।" ଅନ୍ୟ କଥାରେ ଏହା ଅନେକ ରାମାୟଣର ସଂଗୃହୀତ ସାର (Digest) ଆଧାରରେ ରଚିତ । ରାମଚରିତ ଉପସ୍ଥାପନାରେ ତାଙ୍କର ନିଜର ଲକ୍ଷ୍ୟ ବିଷୟରେ କହନ୍ତି, "ମୁଁ ରାମଚରିତକୁ ଯେତେ ପାରିଛି ତର୍କ ସମ୍ମତ, ଯୁକ୍ତି ସଂଗତ, ସାମାଜିକ ତଥା ଲୋକ ରୁଚି ଓ ଯୁଗରୁଚି ଉପଯୋଗୀ କରିବାର ଚେଷ୍ଟା କରିଛି, ରାମ ଚରିତ ଉପରେ ଅନ୍ୟାୟ ଓ ଅପାର ପାରଂପରିକତାର ବୋଝ ନ ଲଦି **" କବିଙ୍କର ଏ ଲକ୍ଷ୍ୟ ଯେ ଖୁବ୍ ସଫଳ ହୋଇଛି ତାହା ଏ କାବ୍ୟ ପାଠକ ମାତ୍ରେ ହୃଦୟଙ୍ଗମ କରିବେ ।

ଲେଖକଙ୍କର ଉକ୍ତିର ଏକ ସ୍ୱାଭାବିକ ଅନୁସିଦ୍ଧାନ୍ତ ହେଲା ଯେ ସେ ଉପାଖ୍ୟାନଗୁଡ଼ିକର ଧାରାବାହିକତା ଉପରେ ଗୁରୁତ୍ୱ ନଦେଇ ବ୍ୟାପକ ସ୍ଥାନାନ୍ତର ନିୟୋଜନ କରିଛନ୍ତି । ଯେତେବେଳେ ସଂପର୍କିତ ଭାବରେ ଗୋଟାଏ ପ୍ରସଙ୍ଗର ଅବବୋଧ ସ୍ୱତଃ ଆବଶ୍ୟକ ହୋଇ ପଡ଼ିଛି, ସେତେବେଳେ କବି ପୂର୍ବ ବୃତାନ୍ତ ରୂପେ ତାହାର ଉପସ୍ଥାପନ କରିଛନ୍ତି । ଏହାଦ୍ୱାରା ପୁରାଣ କାବ୍ୟର ଗତାନୁଗତିକତା ସ୍ଥାନରେ ଆସିଛି ଶୈଳ୍ପିକ ଗ୍ରନ୍ଥନର ନାଟକୀୟ ଚମତ୍କାରିତା ।

ଉତ୍ତରାକାଣ୍ଡର ପାଉଚ-୪ ଓ ପାଉଚ-୫ର ପରିକଳ୍ପନାରେ କବିଙ୍କର ଅଭିନବ ଗ୍ରନ୍ଥନ କୌଶଳ ବାସ୍ତବରେ ଅତ୍ୟନ୍ତ ହୃଦୟଗ୍ରାହୀ । ଏହି ପ୍ରସଙ୍ଗରେ ସମଗ୍ର କାବ୍ୟର ସକଳ ପାଉଚ୍‌ରେ ପାରାୟଣରେ ସୀତା ଲବକୁଶଙ୍କ ଉପସ୍ଥିତିରେ ବାଲ୍ମୀକିଙ୍କ ରାମଚରିତ ବର୍ଣ୍ଣନା ମଧ୍ୟ ଏକ ବିଚାର ଯୋଗ୍ୟ ଉପାଦାନ । ଅବଶ୍ୟ ବାଲ୍ମୀକି ଆଶ୍ରମରେ ଏମାନଙ୍କର ପରିଚୟ ଯତ୍ନ ପୂର୍ବକ ଗୋପନ ରାଖାଯାଇଛି । ସୀତା ବୃଦ୍ଧା ତପସ୍ୱିନୀ ଓ ବାଲ୍ମୀକିଙ୍କ ମାଁ ଏବଂ ତାପସକୁମାର କୁମାରୀଙ୍କ ନାନୀ । ଏ ସମ୍ବନ୍ଧ କବି ସ୍ପଷ୍ଟ କଥାରେ ଉଲ୍ଲେଖ କରିଛନ୍ତି ସୀତାଙ୍କ ଆଶ୍ରମ ପ୍ରବେଶ ଦିନ ଏକ ସ୍ୱାଭାବିକ ପରିବେଶରେ- ଠିକ୍ ଯେପରି ଗାଁରେ ଘଟେ; ଜଣେ ଆଗନ୍ତୁକାଙ୍କୁ କଣ ବୋଲି ଡାକିବି ପ୍ରଶ୍ନର ଉତ୍ତର ପ୍ରସଙ୍ଗରେ । ଲବକୁଶଙ୍କ ଜନ୍ମ ରହସ୍ୟ ସଂପର୍କରେ କବି କହନ୍ତି, ‘‘କାହାର ପୁଓ, କାହାର ନାତି କାହାକେ ଜନା ନାଇଁ ।’’ ଏହି ଲବକୁଶ ବୀଣାବାଦନ ନିପୁଣ ଏବଂ ଧନୁର୍ବିଦ୍ୟା ସମେତ ସର୍ବବିଦ୍ୟା ବିଶାରଦ ହେବା ପରେ ‘‘ରାମ-ରାହା’’ କାବ୍ୟର ଆରମ୍ଭ ପରିକଳ୍ପନା କରାଯାଇଛି । ସ୍ୱୟଂ ବାଲ୍ମୀକିଙ୍କ ରାମ ଭକ୍ତିରେ ଆପ୍ଲୁତ ସମଗ୍ର ଆଶ୍ରମବାସୀ ତଥା ଲବକୁଶ । ଅପରିଜ୍ଞାତ ଆତ୍ମ ପରିଚୟ ସେଠି ସଂପୂର୍ଣ୍ଣ ବିସ୍ମୃତ ।

ଏହିପରି ଏକ ପରିବେଶରେ ସୀତା ନିର୍ବାସନ ଏବଂ ଲବକୁଶଙ୍କ ଜନ୍ମର ବର୍ଣ୍ଣନା ବାସ୍ତବରେ ଏକ କଷ୍ଟକର ପ୍ରସଙ୍ଗ । କବି ହେମଚନ୍ଦ୍ର ଗଙ୍ଗାଧରଙ୍କ ତପସ୍ୱିନୀର ମାର୍ଗରେ ବିଷୟ ବସ୍ତୁର ଗ୍ରହଣ କରି ଯାଇଛନ୍ତି । ପାଉଚ-୪ ଓ ପାଉଚ-୫ର ତାହାହିଁ ବିଷୟ ବସ୍ତୁ । ଏ ଦୁଇଟି ଅଧିବେଶନରେ ସୀତା ଅନୁପସ୍ଥିତ । ପ୍ରଥମ ଅଧିବେଶନରେ ମଧ୍ୟ ଲବକୁଶ ନାହାନ୍ତି । ଦ୍ୱିତୀୟ ଅଧିବେଶନରେ ସେମାନେ ଅଶ୍ୱମେଧ ଘୋଡ଼ାକୁ ଅଟକାଇ ରଖି ସଂବାଦ ଦେଇଛନ୍ତି ଋଷିଙ୍କୁ । ଏହି ଅନୁପସ୍ଥିତିର ସୁଯୋଗ ସୃଷ୍ଟି କରି କବି ବାଲ୍ମୀକି ବର୍ଣ୍ଣିତ ସୀତା ନିର୍ବାସନ ବୃତ୍ତାନ୍ତ, ଶତୃଘ୍ନଙ୍କ ଉପସ୍ଥିତି ଦିନ ଲବକୁଶଙ୍କ ଜନ୍ମ ପ୍ରଭୃତିର ସଂକ୍ଷିପ୍ତ ବିବରଣୀ ଦେଇ କାବ୍ୟରଧାରା ଏବଂ ସୌଷ୍ଠବ ରକ୍ଷା କରିଛନ୍ତି । କେବଳ ଏହି ଦୁଇଟି ସୋପାନରେ ସେମାନଙ୍କର ଅନୁପସ୍ଥିତିର ଯୋଜନା ତାଙ୍କର ସମଗ୍ର ରାମାୟଣ ପାରାୟଣରେ ଲବକୁଶଙ୍କ ଉପସ୍ଥିତିକୁ ସ୍ୱାଭାବିକ କରି ଦେଇଛି । ଗଙ୍ଗାଧରଙ୍କ ‘ପ୍ରଣୟ-ବଲ୍ଲରୀ’ରେ ରାଜସଭାରେ ଶକୁନ୍ତଳାର ପ୍ରତ୍ୟାଖ୍ୟାନ ପୂର୍ବରୁ ତାକୁ କୌଶଳରେ ମୂର୍ଚ୍ଛିତା କରି ମେହେର ଯେପରି ଶକୁନ୍ତଳାର ମନକୁ ଦୁଷ୍ମନ୍ତଙ୍କ ପ୍ରତିକୂଳ ଚିନ୍ତାରୁ

ସୁରକ୍ଷିତ କରିଛନ୍ତି, ସେହିପରି ହେମଚନ୍ଦ୍ରଙ୍କ ଏହି କୌଶଳ ଯୋଗୁଁ ସମଗ୍ର କାବ୍ୟର ଆଙ୍ଗିକ ସୌଷ୍ଠବ ସୁରକ୍ଷିତ ହୋଇଛି ।

ପଂଚମ ପାଉଚ ପରେ ଆଉ ପାରାୟଣ ନାହିଁ । ଷଷ୍ଠ ପାଉଚରେ ବାଲ୍ମୀକି ଏକ ପ୍ରକାର ଅମ୍ବଗୋପନ କଲାପରି ସମାଧି ମଧ୍ୟରେ ଆଶ୍ରମ ସଂକଟର ସମାଧାନ ଖୋଜିଛନ୍ତି । ତାଙ୍କ ଅନୁପସ୍ଥିତିରେ ଅଶ୍ୱମେଧ-ଅଶ୍ୱ ରକ୍ଷକ ଶତ୍ରୁଘ୍ନ ଓ ସୈନ୍ୟମାନଙ୍କୁ ପରାଜିତ ନିହତ କରି ଲବକୁଶ ମୁନିଙ୍କୁ ଜଣାଇବା ଲକ୍ଷ୍ୟରେ ଆସିଛନ୍ତି, କିନ୍ତୁ ସମାଧିଭଙ୍ଗ ନକରି ମା'ଙ୍କ ଅନୁରୋଧରେ ଭୋଜନ ପରେ ପୁଣି ଫେରିଯାଇଛନ୍ତି ଅଶ୍ୱମେଧ ଅଶ୍ୱ ନିକଟକୁ । ଭରତ ଲକ୍ଷ୍ମଣ ଏବଂ ତାହାପରେ ସ୍ୱୟଂ ରାମଚ଼ନ୍ଦ୍ର ସସୈନ୍ୟ ଆସି ପରାଜିତ ଓ ନିହତ ହେଲା ପରେ ବିଜୟୀ ପୁତ୍ରମାନେ ଫେରିଛନ୍ତି ମା'ଙ୍କ ପାଖକୁ । ରାମ-ସହଯୋଗୀ ହନୁମାନ୍ ମଧ୍ୟ ଆସିଛନ୍ତି ତାଙ୍କ ପଛେ ପଛେ । ଦେଖି ଚିହ୍ନିଛନ୍ତି ଓ ପଦ ବନ୍ଦନା କରି ଲବକୁଶଙ୍କ ପରିଚୟ ପାଇଛନ୍ତି । ସେତିକିବେଳେ ଆସି ପହଞ୍ଚିଛନ୍ତି ଋଷି ।

ସପ୍ତମ ତଥା ଅନ୍ତିମ ପାଉଚ ମଧ୍ୟ ବର୍ଣ୍ଣନାତ୍ମକ । ଋଷିଙ୍କ ସଂଜୀବନୀ ପ୍ରଭାବରେ ରାମାଦିଙ୍କର ସଂଜ୍ଞା ଲାଭ ଓ ଅଶ୍ୱସହ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପରେ ସଶିଷ୍ୟ ବାଲ୍ମୀକି ଅଶ୍ୱମେଧ ଯାଗ ଶାଳାରେ ପ୍ରବେଶ କରିଛନ୍ତି । ଲବକୁଶଙ୍କ ମୂର୍ତ୍ତି ଓ ରାମାୟଣ ଗାନରେ ବିମୁଗ୍ଧ ହୋଇଛନ୍ତି ଅଯୋଧ୍ୟାବାସୀ । ସେହି ସ୍ଥାନରେ ସୁବର୍ଣ୍ଣ ପ୍ରତିମା ସୀତାଙ୍କୁ ଦେଖି ମା' ବୁଦ୍ଧିରେ ଲବକୁଶ ପଦବନ୍ଦନା କରିବାରେ ସୀତା ତଥା ଲବକୁଶ ସମସ୍ତଙ୍କର ପରିଚୟ ପରିଷ୍କାର ହୋଇଯାଇଛି ଏକ ନାଟକୀୟ ମୁହୂର୍ତ୍ତରେ । ଏ ମିଳନ ଦୃଶ୍ୟ କଳ୍ପନା କରିବାରେ କବି ହେମଚନ୍ଦ୍ରଙ୍କ ପ୍ରତିଭା ଗଙ୍ଗାଧରୀୟ ପ୍ରତିଭାର ଅନୁରୂପ ହୋଇଉଠିଛି ।

ଅପୂର୍ବ ଆଙ୍ଗିକ ତଥା ବିଷୟ ଗୁମ୍ଫନର ଅନବଦ୍ୟ ନୂତନ ଶୈଳୀ ଯୋଗୁଁ ରାମାୟଣ କାହାଣୀର ପୁରୁଣା କଙ୍କାଳ ସତେ ଯେପରି ଏକ ଆଧୁନିକ ଭାବଧାରାରେ ସଂସାଧିତ ଓ ପରିପୁଷ୍ଟ ହୋଇ ଏକ ସ୍ୱକୀୟ ଚମତ୍କାରିତାରେ ସଂପୂର୍ଣ୍ଣ ଭାବେ ମୌଳିକ କାବ୍ୟର ଗୌରବ ଲାଭ କରିଛି ହେମଚନ୍ଦ୍ର ବାବୁଙ୍କ 'ରାମ୍-ରାହା' କାବ୍ୟରେ ।

ଏ ମୌଳିକତାର ଦୁଇଟି ଅପୂର୍ବ ନୂତନ ଦିଗ ମଧ୍ୟ ବାରିହୋଇ ପଡ଼େ ।। ପ୍ରଥମତଃ ଏ କାବ୍ୟରେ ବ୍ୟାପକ ଭାବେ ବର୍ଣ୍ଣିତ ପ୍ରକୃତି କବିଙ୍କ ସ୍ୱକୀୟ ପରିବେଶରେ ପଶ୍ଚିମାଞ୍ଚଳୀୟ ପ୍ରକୃତି; ଏଥିରେ ବର୍ଣ୍ଣିତ ଜନ ଜୀବନ ଆଚାର ବ୍ୟବହାର ଏକାନ୍ତ ଭାବେ ପଶ୍ଚିମାଞ୍ଚଳର ଜଡ଼ ଓ ଜୀବନ୍ତ ପ୍ରକୃତି ହିଁ କାବ୍ୟର ଆଧାର । ସର୍ବୋପରି ବୀଣା, ଖଞ୍ଜଣୀ, ରାମତାଳି ସହଯୋଗରେ ରାମ ଭଜନରେ ପାଉଚ- ପାରାୟଣର ଆରମ୍ଭ ଏବଂ ରାମ କୀର୍ତ୍ତନରେ ତାହାର ଶେଷ ମଧ୍ୟ

ପଶ୍ଚିମାଞ୍ଚଳୀୟ ଧର୍ମୀୟ ସାଂସ୍କୃତିକ ଅଧିବେଶନର ଆଭାସରେ ପୁଷ୍କଳ ହୋଇଛି । ଦ୍ୱିତୀୟତଃ କୋଶଳୀ-ସଂବଲପୁରୀ ଭାଷା ପ୍ରୟୋଗରେ ହେମଚନ୍ଦ୍ରଙ୍କ ଲେଖନୀର ସିଦ୍ଧି ଏ କାବ୍ୟର ଅପର ପ୍ରଭାବଶାଳୀ ବୈଶିଷ୍ଟ୍ୟ । ଏହି ଭାଷାର ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ବିଳସିତ ହୋଇଛି କବି ପ୍ରତିଭାର ସ୍ଫୁଲିଙ୍ଗ । ଅଳଙ୍କାର ପ୍ରୟୋଗ, ନୂତନ ମାର୍ଗର ସ୍ୱତନ୍ତ୍ରଅର୍ଥବହ ପଦ ପ୍ରୟୋଗ ଚାତୁରି, ଗ୍ରାମୀଣ ଢଗଢମାଳି, ପ୍ରବାଦ ପ୍ରବଚନ ତଥା ଲୋକ ବିଶ୍ୱାସ ସମ୍ମତ ସୂକ୍ତି ସୁଭାଷିତ ମଧ୍ୟରେ କାବ୍ୟ କେବଳ ବିଭବଶାଳୀ ହୋଇନାହିଁ, ବରଂ ପାଠକ ମନର ଅନୁରୂପ ଓ ଅନୁକୂଳ ଭାବ ସଞ୍ଚାର ମଧ୍ୟରେ ଅତ୍ୟନ୍ତ ରୋଚକ ହୋଇ ଉଠିଛି । ଏକ ନିୟମିତ ଅକ୍ଷର  ବୃତ୍ତ ଅଥବା ମାତ୍ରାଛନ୍ଦର ଶୃଙ୍ଖଳା କେତେକ ସ୍ଥାନରେ କବି ସ୍ୱୀକାର କରି ନାହାନ୍ତି ଧ୍ୱନି ଅନୁରୋଧରେ । ଏକ ସଂପୂର୍ଣ୍ଣ ଭାବାନୁକୂଳ ମିତ୍ରାକ୍ଷର ମୁକ୍ତ ଛନ୍ଦରେ ରଚିତ ପଦାବଳୀକୁ ସ୍ୱତଃ ସଂଗୀତମୟ କରି ଉଠିବ ନିପୁଣ ପୁରାଣ ପଣ୍ଡା ବା ପ୍ରବଚନକାରଙ୍କ ସ୍ୱକୀୟ ଦକ୍ଷତା ।

ଶେଷରେ ନୀତି ଓ ଆଦର୍ଶର  ପ୍ରତିଷ୍ଠା ନିମିତ୍ତ ଏପରି ପ୍ରାଣମୟ ରସାଳ ରୋଚକ କାବ୍ୟ ସୃଷ୍ଟିରେ ହେମଚନ୍ଦ୍ରଙ୍କ ନିଷ୍ଠାପର ସାଧନା ଓ ସିଦ୍ଧି  ମୂଳରେ ବିଦ୍ୟମାନ ରହିଛି ତାଙ୍କର ସ୍ୱକୀୟ ଭାଗବତୀ ଚେତନା ଏବଂ ଆଧ୍ୟାତ୍ମିକ ଭାବନା । ତାହାହିଁ ଏକ ପ୍ରେରଣା ଭୂମି କବିଙ୍କ ଭାବ ଓ କଳ୍ପନାକୁ ନିୟନ୍ତ୍ରିତ କରିଛି, ସୌଷ୍ଠବମୟ ପ୍ରକାଶ ଦିଗରେ ପରିଚାଳିତ କରିଛି । କବିଙ୍କ ଉଚ୍ଛ୍ୱାସମୟ ପଦାବଳୀ ମଧ୍ୟରେ ଏ ସୂତ୍ର ସ୍ୱତଃ ଧରାପଡ଼ିଯାଏ । ରାମପ୍ରାପ୍ତିର ସୁତୁଙ୍ଗ ଶୀର୍ଷ ଭୂମିକୁ ଯାତ୍ରା କରିବାର ପ୍ରଥମ ସୋପାନରେ କବି ଯେଉଁ ଅବିଚଳିତ ନିଷ୍ଠା ପ୍ରଦର୍ଶନ କରିଥିଲେ ତାହାହିଁ ତାଙ୍କ ସଂସାର-ଜଞ୍ଜାଳଗ୍ରସ୍ତ ଖଞ୍ଜ ପଦକୁ ଯୋଗାଇଛି ଶକ୍ତି, ଯିବାକୁ ଯିବାକୁ ଉପରକୁ ଉପରକୁ ଓ ଆହୁରି ଉପରକୁ ।

ମୁଁ ମଧ୍ୟ ପାଠକଙ୍କୁ ସେହିପରି ଏ 'ରାମ୍-ରାହା'ର ପ୍ରଥମ ସୋପାନ ତଳେ ଆଣି ପହଞ୍ଚେଇ ଦେଲି । ପାଠକ ସ୍ୱୟଂ ଚଢ଼ନ୍ତୁ, ସ୍ୱୟ ଉପଲବ୍ଧି କରନ୍ତୁ ଏହି ମୌଳିକ କାବ୍ୟରେ ନିହିତ ରସ ମାଧୁରୀ, ସଂଗୀତ ମୂର୍ଚ୍ଛନା ତଥା ଆଧ୍ୟାତ୍ମ ଭାବାବେଶ । 'ରାମ୍-ରାହା କାବ୍ୟ ମଧ୍ୟରେ ରାମ୍‌ରାହା  ତଥା କବି ହେମଚନ୍ଦ୍ରଙ୍କ ପ୍ରତିଷ୍ଠା ଅଙ୍କିତ ହେଉ ପ୍ରାଣେ ପ୍ରାଣେ ।❑

ସମ୍ବଲପୁର

୧୦-୬-୯୭

**ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା**

# ସୂଚୀ



❑❑❑

# ପାଉଚ୍-୧

# ବାଲ୍ମୀକି ଆଶ୍ରମ୍‌ନେ ରାମେଣ୍

ହେ ରାମ୍ ! ତୋର୍ ଜଏ ହେଉ ତୋର ନ ଥାଉ ଲଏ
ଭିଲ୍ ବାନ୍ଧିକରି ଭାଗୁ ଭଏ ମନ୍ ରହୁ ମୋର ଥଏ ।                    ॥୧॥

ସଦ୍‌ଭାବ୍‌ନା ଉଦୟ୍ ହଉ ଦୁସ୍‌କ୍ରୁତ୍ ଯାଉ କ୍ଷଏ
ନାଇଁ ହ ନିର୍‌ଦୟ, ଦେଖା ଜଗତ୍ ରାମ ମଏ ।                    ॥୨॥

ମୋର  ଭକ୍‌ତି କମ୍ ଜହ ତୁଇଁ କର୍‌ବୁ ତଏ
ଦେଖେଇ ତ ନାଇଁ ହଏ, ଛାଡି ଲାଜ୍ ଭଏ ।                    ॥୩॥

ଭକ୍‌ତି-ଭୁଖା ଅବିନୟ ମୁଇଁ ତୁଇଁ ଶକ୍‌ତି ମଏ
ଦେଲା ଟିକ ହେଲା ନ ବଏ ଦେ ବୁନ୍ଦେ ବିନୟ୍ ।                    ॥୪॥

କାଏବ୍ ଲେଖ୍‌ବାର୍ କାଯେଁ ମୁଇଁ ନୁରୁଥିଲି ନାଏକ୍
ଆଦର୍ କରି ନାରଦ୍ କହେଲେ ରାମ୍ ଏକା ନ ଲାଏକ୍ ।                    ॥୫॥

ରମି ହେସି ଶମି ହେସି ରସ୍ ଅଛେ ତୋର୍ ନାମେ
ଅମ୍‌ରତ୍ ଝର୍‌ସି ଗୁନି ପାର୍‌ଲେଁ ତୋର୍ ସବୁ କାମେ ।                    ॥୬॥

କେ କହେସି ଆଉ ଅବ୍‌ତାର କିଏ ସଏଦ୍ ବ୍ରହ୍ମ
ଆଇଛୁ ଇ’ ମର୍‌ତ୍ ଭୂଇଁ ଦେଖାବାର୍‌କେ ଧର୍ମ୍ମ ।                    ॥୭॥

ସତେଁ ତୁଇଁ କା’ଣା ଆଉ ତୁଇଁ କାଏଁନ ଜାନ୍‌ବୁ
ଆମେ ଯେ ଯାହା ବଏଲେଁ କାଁ କରି ହେଲେ ମାଁନ୍‌ବୁ ?                    ॥୮॥

ଯାହା ବି ହ ମୁଇଁ ତତେ ନେଇଛେଁ ଏକା ଆଦ୍‌ରି
ସଁପିହଇଛେଁ ନିଜର୍ ଭାବି ରଖ୍‌ବୁ ଟିକେ ଆବ୍‌ରି ।                    ॥୯॥

ଇନେ ଯଦ୍‌ରି ବଲ୍ ସଂବଲ୍ ଟିକେ କା'ର୍ ନ ହେଲା
ଉଦୁମାତ ହଇ ପୁର୍‌ଥୀ ଘାଏ ଦହ୍‌ଲେଇ ନେଲା । ॥୧୦॥

ସରବ୍ ସହନୀ ହେଲେଁ ବି ସେ ସହି ନାଇଁ ପାରି ତୁର୍‌ତି
ଶୁଇଲା ଠାନେ ବି ପୁହୁଁଚି ଯାଏସି କାନ୍ଦି କାନ୍ଦି ଧର୍‌ତୀ । ॥୧୧॥

ଦେ-ଦେବ୍‌ତା ସାଙ୍ଗେ କହେସି ହଇ କେତେ ଗୁଲ୍‌ଗୁଲା
''ଆସ ମହାପ୍ରୁ ! ଦେଖ୍‌ବ କେନ୍ତା ହେଇଗଲି ନ କୁଲ୍‌କୁଲା । ॥୧୨॥

ଧର୍‌ତୀନୁ ବି ଆହୁରି ଟିକେ ହଇ ତୁଇଁ ଦୁଖ୍‌ମନା
କହେସୁ ନର୍‌କେ ସବୁ ଦେଲେଁ ବି ହଇଥିସି ତନ୍-ମନା । ॥୧୩॥

ମୁନୁଷ୍ ଭିତ୍‌ରେଁ ମୁଇଁ ଅଛେଁ ସବ୍ ଶକ୍‌ତି ଧରି
ସ୍ୱାର୍ଥି ସାଁକୁର୍ ଭାବନା ତାହିଁ ଗୁର୍‌ହୁ ଦେସି ଭରି । ॥୧୪॥

ମହାପ୍ରୁ ସବୁ କରିନେବା ବଲିଁ ହେସି ନିଷତ୍
ଇ'ଟା ଜାନି ଉତ୍‌ପତିଆ ଦଲଟା ହେସନ୍ ଉଷତ୍ । ॥୧୫॥

ମତେ ପାଶ୍‌ରି ମହାପ୍ରୁ ମେତାଲ୍ ମାନ୍‌ଏ ତାର୍ ଦେହ୍‌କେ
ସେ ଆତ୍‌କେ ଉଲ୍‌ଦି ନିଏ ଯାହା ଥାଏ ସ୍ନେହେ କେ । ॥୧୬॥

ଦିହର୍ ସୁଖେଁ ଉଷତ୍ ହୁଏ ଦୁଖେଁ ଦୁଖ ଭାରି
ତୁନ୍ ତାନ୍ ମୁଇଁ ଶୁଇଥାଏଁ ସାଁପର୍ ଶେଯ୍ ପାରି । ॥୧୭॥

ମତେ ଜଗେଇ ଲଗେଇ ପାର୍‌ଲେଁ ସବୁ ବନ୍‌ଏ କାମେ
ଗୁଡେଁ ଗଡ଼େନାଇଁ କଁଟା ମନ୍ ଥିଲେଁ ମୋର୍ ନାମେ । ॥୧୮॥

ତୋର୍ ଭାବନା ଏନ୍ତା ବଲିଁ ଡଗ୍‌ଡର୍ ଦିଶୁଛେ
ତୋର୍ ବୁତାକେ ମୋର୍ ଚିନ୍ତା ଅନ୍‌ମାନେ ତ ମିଶୁଛେ । ॥୧୯॥

ହେଁଥିର୍ ଲାଗି ଆଏଲୁ କାଏଁ ମୁନୁଷ ଦେହ୍‌ଟେ ଧରି
ମୁନୁଷ୍ ଜନମ୍ କରମ୍ ମୁନୁଷ୍ ବଲ୍ ବୁଧି ଭରି । ॥୨୦॥

ମୁନୁଷ୍ ବିହେଁ ସବୁ କଲୁ ମୁନୁଷ୍ ସୀମା ଭିତ୍‌ରେଁ
କେ ଭିର୍‌କିଲା କେ ତର୍‌କିଲା କରିଁଗଲୁ ତୋର୍ ବତ୍‌ରେଁ ।                ॥୨୧॥

ସାଧୁ ସୁତର୍ ମିତର୍ ହେଲେ ଫିତର୍ ହେଲେ ଲବାର୍
ସୁନ୍ଦର ତୁଇଁ ସୁନ୍ଦର୍ ରାହା ସୁନ୍ଦର୍ ତୋର୍ କବାର୍ ।                ॥୨୨॥

ମୁନୁଷ୍ ଦେହେଁ ସମ୍ଭବ୍ ସବ୍ ନର୍ ହେବା ନାରେନ୍
ଶିଖାବାକେ ଆଏଲୁ କାଏଁ ସେ ଟା ଆଏ ରାମେଣ୍ ।                ॥୨୩॥

ମୋର୍ ମେତାଲ୍ ଚୋର୍‌ଟାକେ ଧରାଲୁ ତୋର୍ ସୋର୍
କେଡ଼େ ନିର୍‌ମଲ୍ ହୁରୁଦ୍ ତୋର୍ ନୁର୍‌ଲେଁ ନାଏଁନ କୋର୍ ।                ॥୨୪॥

'ନାଇଁ ଶୁନେ' ନାଇଁ କହେବୁ ଡାକୁଟାକର୍ ଡାକ୍
ବିନ୍ କାରନର୍ ଦୟାର୍ କାଯେଁ ଯୁହାର୍ ଲାଖ୍ ଲାଖ୍ ।                ॥୨୫॥

ମାନୀ ଗୁନୀ ବାଲ୍‌ମୀକି ମୁନି ରମି ରାମେଣ୍ ଗାଉଛନ୍
ପାଲିଆ ଧରି ଲବକୁଶ ତାଲେଁ ବୀନା ବାଉଛନ୍ ।                ॥୨୬॥

ସେ ତାଲେଁ ଗାଏଲା ମେତାଲ୍ ବୁହେ ତମ୍‌ସା ନଏଦ୍
ତାହାରି ଧାରେଁ ମିଶିଁ ଯାଏ ଅମ୍‌ରତ୍ ଧାର୍ ସଏଦ୍ ।                ॥୨୭॥

ସେ ସୁରେଁ ନ ପାଏନ୍ ଭିତ୍‌ରେଁ ଝୁରି ଯାଆନ୍ ପହଁରି
ରାମ୍ ଅଙ୍ଗର୍ ରଙ୍ଗେଁ ରସି ଗଛ୍ ଆସନ୍ ଲହରିଁ ।                ॥୨୮॥

ଗୀତର୍ ରସେଁ ଶାଗ୍ ରସିଆ ଗଛ ପତର୍ ପୁଲ୍‌କୁଛନ୍
ଗଛ ଅଗିର୍ ଗୁଭା ଭିତ୍‌ରୁଁ କଢ଼ ବାହାରି ଫୁଲକୁଛନ୍ ।                ॥୨୯॥

ଧୁକା ମୁହେଁ ଝୁପା ଝୁପା ଫୁଲ୍ ଫୁଟି ଝୁଲୁଛନ୍
କଅଁଲି ଖରା ଗରାଖ୍ ଦେଖି ଏ'ଦେ ଉଢ଼୍‌ନା ଖୁଲୁଛନ୍ ।                ॥୩୦॥

ଫୁଲେଁ ବସି ପର୍‌ଜାପତି ଫୁଲର୍ ମନ୍ ମଜଉଛେ
ଆନିର୍ ବାନିର୍ ରଙ୍ଗେଁ ଦିହ୍‌କେ ମାଏନ୍ ମନ୍‌ସା ସଜଉଛେ ।                ॥୩୧॥

କଲା ଭମର୍ ଦେଖାସି ନିଜର୍ ଗଲାର୍ କରାମତି
ମହୁମାଛି କହେସି କିଛି କେନ୍ ଫୁଲର୍ ଛାତି । ॥୩୨॥

ସମ୍‌କର୍ ଗୀତ୍ ଯମକ୍ ଧରି କେତେ ମଧୁର୍ ଲାଗେ
ରଷିର୍ ରାମେନ୍ ଗୀତ୍‌କେ ସଥେଁ ସରାଗ୍-ରାଗେଁ ପାଗେ । ॥୩୩॥

ନଏଦ୍ ଖଏଣ୍ ଥିଁ ଗଛ୍ ଖୁଁଟ୍ ଘଚାଘଚ୍ ଲାଗିଛନ୍
କିଏ ଡେଙ୍ଗ୍ ତ କିଏ ବାଙ୍ଗର୍ ଯିଏ ଯାହା ମାଗିଛନ୍ । ॥୩୪॥

ତାକର୍ ତଲେଁ ଫଏଲିଁ ଯାଏ ସୁରୁତ୍ ଶୀତଲ୍ ଛଏରା
ସରଗୁଁ ଉତ୍‌ରି ଶାନ୍ତି ଚତ୍‌ରୀ ଥାକ୍‌ସିମାରି ଅହେରା । ॥୩୫॥

ଫାଁକ୍ ଦେଖି ଖରା-ଆାଖିଁ ଘାଏ ଘାଏ ଡୁଙ୍ଗୁଛେ
ଉଖି ନୁରି ଉକିଆ-ଗୁରୀ ଗଛ୍ ତଲ୍‌ତଲ୍ ରଙ୍ଗୁଛେ । ॥୩୬॥

ସୁରୁ ସୁରୁ କୁରିଆ ଦିଶେ କୁଶ୍ କାଏଁଶର୍ ଛାଆନି
ସାନ ହେଲେ ବି ମାନ୍ ମହତେଁ ମନ୍ ଘିନା ଚାହାନି । ॥୩୭॥

ଆଗେଁ ଆଗେଁ ତୁଲ୍‌ସୀ-ଚଅଁରା, ପାଶେଁ ଫୁଲ୍‌ଗଛ୍
ଖୁଏଲ୍‌କେ ଲାଗି କୁରିଆମାନେ ଠିଆଡ୍ ଆଗ୍‌ପଛ୍ । ॥୩୮॥

ବର୍ ପିପଲ୍ ଅଏଁଲା ଅଶୋକ୍ ଲିମ୍ ହଏଡ଼ା ବେଲ୍
ଗଛ୍ ଝୁଣ୍ଟୁ ତଲେଁ ବେଦୀ ଯାଇଛେ ଲମ୍‌ତେଲ୍ । ॥୩୯॥

ଚାଏର୍ ଖୁଁଟିଆ ବେଦୀର୍ ମଝିଁ ହୁମ୍ କୁଣ୍ଟେ କୁହୁଲୁଛେ
ଉନିଆଁ ଠାନେ ନାଇଁ ତାହିଁ ଯେନ୍ କହର୍ ବିହିଲୁଛେ । ॥୪୦॥

ହୁମ୍ କୁଁଡର୍ କୁହୁଲା ମାଖି ଗଛ୍ ଦିଶନ୍ ଧୁଁଙ୍ଗିଆ
ଆକାଶ୍‌ଚାରୀ କୁହାକୁହି କେତେ ସୁନ୍ଦର୍ ଡୁଙ୍ଗିଆ । ॥୪୧॥

କାହିଁ ଶୁଇଛନ୍ ହେର୍ଣ୍ଣା ହୁଦା କେନ୍ ଚିଥଲ ଛୁଆ
କାପ୍‌ଲି କରନ୍ କାନ୍‌କେ ଠିଆ କରି ଟୁଆକେ ଟୁଆ । ॥୪୨॥

ଦିହ୍ ଆଗ୍‌କେ ପଛ୍‌କେ କରି ସମର୍ ଠିଆଡ଼େ ଠିଆଡ୍
ଲୈଁଜ୍‌କେ ନଚେଇ ଆଏଁଖ୍ ଉଁଚେଇ ଦେଖେ ଇଆଡ୍ ସେଆଡ୍ । ।।୪୩।।

ପାଶର୍ ଗଛେଁ ଦିହ୍‌କେ ରେଁଡି ହୁଏ ଘାଏ ଘାଏ ଖୁଜେଇ
ଖଲିଆ ମାଟିଁ ସିଙ୍ଗ୍‌କେ ବୁଥିଁ ଦଉଛେ ଥରେ ପଜେଇ । ।।୪୪।।

ବେଦୀ ଲାଗନ୍ତୁ ବାଘ୍ ଛୁଆଟେ ଦିହ୍‌କେ ଲମେଇ ଶୁଇଛେ
ଗଛ୍ ଉଢାଲୁଁ ମା' ମାଇଟା ନଜର୍‌ଟେ ତେହିଁ ଥୁଇଛେ । ।।୪୫।।

ମାତିଥିବାର୍ ହାତୀ ପଟେ ଝୁଲିଁ ଆଉଛେ ଉତ୍‌ରି
କେନ୍ ଦରହାନେ ପଡ଼ିଥିଲା ପାଏନ୍ ପଡୁଛେ ନିଥିରି । ।।୪୬।।

ଆଗର୍ ଦୁହି ଗୋଡ୍‌କେ ଲମେଇ ବେଦୀ ପାଶେଁ ଶୁଇଲା
ମୂର୍‌ଖାମି କାଏଁ ଜାନ୍‌ଲା ମେତାଲ୍ ମୁଡ୍‌କେ ଗାଡ଼ି ଲୁହିଲା । ।।୪୭।।

ରାମେନ୍ ସୁରେଁ ରାମ୍ ରାମ୍ ପଢ଼ନ୍ ରୁପ ଗୁହ୍ଲଡ଼ା
କେ ବସିଛେ ଡାଲେଁ କିଏ ଦିଏ ଖଣ୍ ଉଡ଼ା । ।।୪୮।।

କେଁ କାଁ ସୁରେଁ ମୟୂର୍ ବେଦୀ ପାଶେଁ ଚହଲୁଛନ୍
ଚଁପା ଚରେ ଗଛ୍ ଉପରେଁ ଅଁପ୍‌ରା ଚିପ୍‌ରା କହ୍‌ଲୁଛନ୍ । ।।୪୯।।

ତିତେର୍ ଡାହୁକ୍ ଅଏନ୍‌କା ଢେଁଟି କୁଇଲି କୁମ୍‌ହାଟିଆ
ନିଜର୍ ସୁରେଁ ଗୀତ୍ ଗାଉଛନ୍ ଗୁଁର୍‌ରୁ ଗୁଲିହା ଟିହା । ।।୫୦।।

ରାମ୍ ଦିହର୍ ବରନ୍ ମାଖିଁ ଠିନ୍ ଠିନି ଆର୍ ହରଲ
ବାଟ ପାଖେଁ ନାଟ୍ କଲା, ଲେଖେଁ ଥାଆନ୍ ଦଲ୍‌ଦଲ୍ । ।।୫୧।।

ଶଁଖ୍ ମରମର୍ ଦେହେ ମୁହେଁ ଧୋବ୍ ଫର୍ ଫର୍ ଡ଼ାଢ଼ି
ବରଫ୍ ରଙ୍ଗର୍ ମୁରିଆଁ ଜଟା ମୁଡେଁ ଯାଇଛେ ମାଡ଼ି । ।।୫୨।।

ସମର୍ ଛାଲେଁ ବସି ଋଷି ରାମେନ୍ ରସେଁ ଶମିଛନ୍
ଲବକୁଶ ଚେଲା ପିଲା ରୁଣ୍ ପୁଣ୍ ହଇ ଜମିଛନ୍ । ।।୫୩।।

ଭାବ୍ ସମ୍ଦରେଁ ବୁଡ଼ି ଉପ୍‌କି ରୁଆଁ ଉଠେ ଟାଁକ୍‌ରି
ମନ୍-ଭୂଇଁନେ ରାମ୍ ଭାବ୍‌ନାର୍ ଗଛ୍ ଆସେ ଆଁକ୍‌ରି । ॥୫୪॥

ମଉନ୍ ମୁନି ଘାଏକେଁ ଛନ୍‌କେଁ ଆଁଖିର ପାଏନ୍ ପୁଛୁଛନ୍
ଡାଢ଼ି ମେଛା ସୁଆଁଲି ସୁଆଁଲି ହିଟ୍‌ଲା ଜଟା ଖୁଟୁଛନ୍ । ॥୫୫॥

ହାତ୍ ଯୁଡ଼ିକରି କୁଶ ମୁନିର୍ ପାହାନେ ଥୁଇଁ ମଥା
କହେଲା "ବାବା ! ଆଦେଶ୍ ହେଲେଁ କହେତିଁ ପଦେ କଥା । ॥୫୬॥

"କା'ଣା ଆଏ ଯେ କହ ବେଟା ! କେନ କର୍‌ସିଁ ମନା
କେନ୍ କଥା ଥିଁ କେଭେଁ ତମର୍ ହେଲିଁନ ଦୁଖ୍ ମନା ?" ॥୫୭॥

କହେଲା କୁଶ "ପହେଲା ବାବା ! ରାମ୍ ଗୁନ୍ ସହରେଇ
ବନ୍‌ଏ ପଦ୍‌ଦୁ ଗାଏଲ ସମ୍‌କର୍ ମନ୍ ମାନ୍ ଲହରେଇ । ॥୫୮॥

ପଦେ ଅଖିରେ କାହିଁ କେନ୍ତା ନାଇଁ କହେଲ 'ସୀତା'
ମିଠା ହେଲେଁ ବି ରାମର୍ ନାମ୍ ସୀତାର୍ ବିନେ ଶିଠା" । ॥୫୯॥

ବାଲ୍‌ମୀକି ମୁନି ଆବ୍‌ରି ଆନି କୋଡ଼୍ କରି ଧଏଲେ
ଗଦ୍ ଗଦ୍ ହଇଁ ମୁଡ୍ ସୁଆଁଲି କଅଁଲ୍ କଥେଁ କହେଲେ । ॥୬୦॥

ଦେଖ୍‌ଲେଁ ସିନା ଛୁଆ ଦିଶୁ ଶଏ ଯୁଗର୍ ବୁଢ଼ାଟେ
ଗିଆନ୍ ରସର୍ ସମୁଦର୍‌ଟେ ଦିଶୁ ସିନେ ଢୁଡ଼ାଟେ । ॥୬୧॥

ବନ୍‌ଏ ଗହେରର୍ କଥା ଗୁଟେ ଦେଲୁ ବେଟା ! ପଚ୍‌ରେଇ
କଥାର୍ ଧାର୍ ସୁଧାର୍ ଭାବେଁ ବସି ଦେଖିମା ଇଁଚ୍‌ରେଇ । ॥୬୨॥

ହାତ୍ ଗୋଡ଼୍ କରି ଛାଟ୍‌ପାଟ୍ ଆଚ୍‌ମନ୍ କରି ଆସ
ଏକ୍‌ମନ୍ ଏକ୍‌ଚିତ୍ ହଇଁ ଗୁଟେ ଆସନେ ବସ । ॥୬୩॥



# ପାଉଚ୍-୨

# ସୀତା-ରାମ ସମନ୍ଧ ଆଉ୍ ରାମ୍ ମହେମା

ମନର୍ ମୁନୁଷ୍ ଡାକେ ରାମ୍ ! ଆସ ନି ଯେ ଘାଏ
ସାଙ୍ଗେ ନେଇ ସୀତା ସତୀ ଆଉର୍ ତିନ୍‌ହି ଭାଏ ! ।।୧।।

ଦଶିରଥ୍‌ନୁ ଗୁଟେ ବି ରଥ୍ ନାଇଁ ଆଏତେଁ ମୋର୍
କେନ ଧରା ଦେବ ରାମ ! କାହିଁ କର୍‌ବ ସୋର୍ ? ।।୨।।

କୁଶଲ୍ କରି କବାର୍ କର୍ବାର୍ ସାଧ୍ ନାଇଁ ଯୋଗ୍
କଉଶଲ୍ୟା ହଇଁ ଗର୍ଭେ ଧର୍‌ବାର୍ ଭାଏଗେଁ କାହିଁ ଭୋଗ୍ ? ।।୩।।

ମନ୍ ଭିତ୍‌ରେଁ ଭାବ୍‌ନା-ଭିଲିଁ ଲଢ଼ା ଯୁଝା ଲାଗିଛେ
ଗୁଲିହା ମୋର ମନ୍-ଇଲାକା ଅଯୋଧ୍ୟା ହେବାର୍ ଲାଗିଛେ । ।।୪।।

ରମି ହେବାର୍ ଥିତି ଥିଁ ତ ନାଇଁ ରହେବାର୍ ଘଡ଼େ
'ମରା' ହଉଛେ 'ରାମ'ର୍ ନାମ୍ ଜିଭେଁ ଯଦ୍‌ରି ପଡ଼େ । ।।୫।।

ମନ୍ ଭିତ୍‌ରେଁ ଦୁଖର୍ ଘରା ଖାଲି ହାଏ ହାଏ
କେନ୍ତେଇ ସେନେ ପଡ଼୍‌ବା ତୋର୍ ଆନନ୍ଦମଏ ଛାଏ । ।।୬।।

ବାରଣ୍ ନାଇଁ କି କାରଣ୍ ନାଇଁ ତୋର୍ ଦୟାର୍ ଲାଗି
ଯେ'ନେ ଚାହେଁସୁ ଉଲ୍‌ଦି ନେସୁ ନାଇଁ ଜାନ୍‌ଲେଁ ବି ମାଗି । ।।୭।।

ଆଏଁଖ୍ ଉବ୍‌ରେଇ ନାଇଁ ହୁଏ ଅଜ୍ଞାନ୍-ଅନ୍ଧାର୍ ଢ଼ାପିଛେ
ବାହାର୍ ଭିତର୍ ଯାହିଁ ଦେଖେଁ ଇ ମୁଡ୍ ସେ ମୁଡ୍ ଖେପିଛେ । ।।୮।।

ମୁଇଁ ସିନେ ମୁରୁଖ୍ ତୁଇଁ ତ ଗିଆନ୍ ଉକୁ ଠାନ୍
ଆଶ୍ କରିଛେଁ ପାଏମି ବଲି ତତେ ପାଏବାର୍ ଗିଆନ୍ । ।।୯।।

ଜୟ ରାମ୍ ଜୟ ସୀତାରାମ୍ ହେ ବଇଦେହୀ-ପତି !
ଦେହ୍-ରାଇଜର୍ ରାଜା ତୁଇଁ ସାରା ଜଗତର୍ ଗତି । ॥୧୦॥

ମୁନିର୍ ଭଜନ୍ ଶୁନି ଆଶ୍ରମ୍ ପରି ଯାଇଛେ ତବଧି
ନାଇଁ ଶୁଭେ ବି ଚେ଼ରେ ମାନକର୍ କଚି଼ର୍ ମିଚି଼ର୍ ଶବଦ୍ । ॥୧୧॥

ଶବଦ୍ ନାଇଁ କରି ପବନ୍ ହୁର୍ ହୁରିଆ ବୁହୁଛେ
ଗଛର୍ ଜଗତ୍ ମୁଣ୍ଡ୍ ହଲାଇ ଭଜନ୍-ରସ୍‌କେ ପିଉଛେ । ॥୧୨॥

ସୁରୁଯ୍-ଦେବ୍‌ତା ସେ ରସ୍ ନୁ ଭାଏଲ୍ ଯିବା ବୁକି
ଫୁର୍‌ଙ୍ଗୋଲ୍ ନୁରି ଖରାର୍ ଜିଭେଁ ଦେଖୁଛେ କାଏଁ ଢୁକି । ॥୧୩॥

ବେଦୀ ପାଶେଁ ସେ ରସେଁ ହରିନ୍ ଛୁଆ ଉଦ୍‌କୁଛନ୍
ଉନ୍‌ମନା ହଇ ଝୁରିମାନେ ତମ୍‌ସା ପାନି ଫଦ୍‌କୁଛନ୍ । ॥୧୪॥

ମୁନି କହୁଛନ୍, "ଶୁନିଥିଲ ତ କୁଶ ପଚ଼ରେଇ ଥିଲା
ସୀତାର ନାମ୍ ବିନେ ରାମ୍ ତୁସ୍ତି ଥିଲା ଢିଲା । ॥୧୫॥

ସହଜ୍ କଥା ନୁହେ ସେଟା ରାମ୍ କଥାର୍ ସାର୍
ନାଇଁ ଜାନ୍‌ଲେଁ ବୁରଥା ସବୁ ତେତ୍‌କେଁ ରାମେନ୍ ଖାର୍ । ॥୧୬॥

ସେ ତତ୍ତୁକେ ହେତୁ କରମା ବନ୍ଧ୍ଏ କରି ଶୁନ୍‌ଅ
ଶୁନ୍‌ଲେ ଖାଲି ନାଇଁ ହଏ ଯେତ୍‌କି ପାର୍‌ବ ଗୁନ୍‌ଅ । ॥୧୭॥

ରାମ୍ ଯାହିଁ ସୀତା ତାହିଁ, ସୀତା ନାଇଁ ଥାଇ ରାମ୍
ସରବ୍ ବ୍ୟାପୀ ଥିବା କାହିଁ ଅଛେ ହେନ୍ତା ଠାନ୍ ? ॥୧୮॥

ପୁରୁଷ୍ ରୂପେଁ ରାମ୍ ଥିଲେଁ ନାରୀର୍ ରୂପେଁ ସୀତା
ମାଆଁ ମୂରତି ସୀତା ହେଲେଁ ରାମ୍, ମୂରତି ପିତା । ॥୧୯॥

ସୀତା ନାଇଁ ଥାଇ ରାମ୍ ଭାବ୍ ନାଇଁ ଭାଷା
ଉକିଆ ନାଇଁ ସୁରୁଯ୍ ଦେଖ୍‌ବା ମୁରୁଖ୍ ମନର୍ ଆଶା । ॥୨୦॥

ଜନ୍ ନାଇଁ ଜନକ୍ ରାଏତ୍ କେଭେଁ କାହିଁ ହେଲାନ ?
ପରାନ୍ ନାଇଁ ପରାନୀଟେ କାହିଁ କେ ପାଏଲାନ ? ।।୨୧।।

ଅଲ୍‌ଗାବାର୍ ଚେରେଷ୍ଟା କଲେଁ ରାମ୍ ଠାନୁ ସୀତାକେ
କାଣା ହେସି କିଏ କହେବା ହେଡ଼େ ଗହନ୍ କଥାକେ ।'' ।।୨୨।।

ଏତ୍‌କି କହି ମୁନି ବାବା ଆଏଁଖ୍ ମୁଜି ଥେବ୍‌ଲେ
ନାଇଁ କହନ୍ ନ ଆଉର୍ କାଏଁ ଲବ କୁଶ ଭାବଲେ । ।।୨୩।।

ମାଥ୍ ଲୁହାଇ ହାତ୍ କେ ଯୁରି ସୁତର୍ ସରଲ୍ ପଦେଁ
ଥାବେଁ ରଖି ମନ୍‌କେ କହେଲେ ଭାବର୍ ଗଦ୍‌ଗଦେଁ । ।।୨୪।।

''ବଁକ୍ ଯୁଡ଼ିନୁ ପଟେ ଯଦ୍‌ରି ଶବର୍ ଶରେଁ ମଲେଁ
ତୁମେ ସେ ଅ' ଭାସି ଯାଏସ ଘାଏକେଁ ଆଖିର ଜଲେଁ । ।।୨୫।।

ତୁମର୍ ହୁର୍‌ଦେଁ କରୁଣ୍ ରସ୍ ବାଁଧି ନେଇଛେ ବସା
ସବୁ ରସର୍ ସବୁ କାଲେଁ କରୁଣ୍ ରସେଁ ଭର୍‌ସା । ।।୨୬।।

ତତୁ କଥା ସମ୍‌କର୍ ଲାଗି ସବୁଦିନେ ନୀରସ୍ ଆଏ
ରସର୍ ସାଗର୍ ସେ କଥାକେ ରସେଁ ସାନି ନିଅ ଘାଏ । ।।୨୭।।

ଧିଆନ୍ ତମର୍ ଧନ୍ ତମେ ଗିଆନ୍-ରାଏଜର୍ ରାଜା
ଶୁଖା ତତୁ, ଭୁଖାର୍ ଲାଗି କରି ପାର୍‌ବ ଖଜା ।'' ।।୨୮।।

କହି ଡଁଡା ଶାଲ୍ ହଇ ମୁନିର୍ ପାହେଁ ପଡ଼୍‌ଲେ
ବାକି ଯାହା ଥିଲେ ଯାଇ ସେ ଗୋଡ଼୍‌ତଲେଁ ଗଡ଼୍‌ଲେ । ।।୨୯।।

''କହ କହ'' ଗୁରୁ ! ବଲି ଜହ ଜହ କହୁଛନ୍
ଏତେ ଆଗ୍ରହ ଦେଖି ମୁନି ନାଇଁ କହି କାଏଁ ରହୁଛନ୍ । ।।୩୦।।

ଝଁକେର୍ ରାତି ମେଘ୍‌କେ ଦେଖି ପି'ଛଲ୍ ଛଲ୍ ଚରେ
ଯେନ୍ତାହେସି ପାଏବାର୍‌କେ ବର୍‌ଷିଲା ପାଏନ୍ ଧାରେ । ।।୩୧।।

ସେନ୍ତାକି ତାହୁଁ ଅଏଧିକା ଶୁନ୍‌ବେ ହ'ନ୍ ଆତୁର୍
ଏବେ କହେବେ ସେ' ଦେ କହେବେ ଆଶେଁ ଭାଙ୍ଗୁର୍ କୁହୁର୍ । ।।୩୨।।

ରାମର୍ ବାଟ୍ ଛାଟ୍ ନୁହେ ଚଢ଼େନ୍ ଉଦ୍‌ରେନ୍ କିନ୍ଦରା
ଋଷି କହୁଛନ୍ ପୁଛୁଁଚି ନୁହେ ହେଲେଁ ଜହ ତନ୍ଦରା । ।।୩୩।।

ଶାନ୍ତ ସୁଧାର୍ ସୁତର୍ ଭାବେଁ ଶୁନ୍‌ବ ରାମର୍ କଥା
ଇ ଆଡ଼ ସେ ଆଡ଼୍ ଘିର୍‌ବ ଯଦ୍‌ରି ଜଲ୍‌ଦି ହେବ ଅଥା । ।।୩୪।।

ପାଖେ କହେଲେଁ ବୁଝ୍‌ବ ପାଖେ ମନ୍ ନାଇଁଥିଲେ ଥଏ
ରାମ୍ ହେବା କି ରାକଶ୍ ହେବା ନାଇଁ କରି ହୁଏ ତଏ । ।।୩୫।।

ତମ୍‌ସା ନଦୀର୍ ଖଏଣ୍ ଠାନୁ ସର୍‌ଯୁ ନଦୀର ଖଏଣ୍‌କେ
ଯିମା ଚ଼ାଲ ଛାଡି ଇନେ ନିଜର୍ ନିଜର୍ ଗଏଣ୍ କେ । ।।୩୬।।

ଗଏଣ୍ ନାଇଁ ଥିଲେଁ ଖଏଣ୍ ଖାଏବା ଭୋକ୍ ଶୋଷ୍
ଆତ୍‌ମା ସାଙ୍ଗେ ଆନନ୍ଦ୍ ଥିବା ଛାଡ଼ି ରାଗ୍ ରୋଷ୍ । ।।୩୭।।

ସେ' ନେ ଗୁଟେ ରାଏଜ୍ ଅଛେ ନାଆଁ ଅବଧି ପୁର୍
ବଇକୁଁଠ୍ ସାଙ୍ଗେଁ ଯୁଲେଇ ଦେଖିଲେଁ ନୁହେ ଜହ ଧୂର୍ । ।।୩୮।।

ସରଗ୍ ସେନ୍‌କେ ସର୍‌ଲି ଆଇଛେ ଦେବ୍‌ତା ଆ'ନ୍ ଲୋକ୍
ମରତ୍ ଭୂଇଁଥିଁ ଦେଖିମା ଚ଼ାଲ ସାଏଖାତ୍ ଗୋଲୋକ୍ । ।।୩୯।।

ଦୟା ଖେମା ଶାନ୍ତି ନେଇ ରାଜ୍ କରେ ସତ୍
ମିଛ୍ ସେନେ ତୁଚ୍ଛ ଭାବେଁ ଲହତର୍ ଦହସତ୍ । ।।୪୦।।

ପଷେ ବୁନ୍‌ଲେଁ ଅଶେଷ୍ ଫଲ୍ ମାଏଟ୍ କେତେ ସରସ୍
ପୁର୍‌ଥୀ ଦେସି ଅସ୍‌ରା ଶଏସ୍, ଗାଏ ଗୁର୍‌ହୁ ଗୁରୁସ୍ । ।।୪୧।।

ନିଜର୍ କାମେ ସଭେ ତତ୍‌ପର୍ ବଗ୍‌ରା ନାଇଁ ଲାଗେ
ରୁଗ୍‌ହା ଭୁଖା ଦୁଖା ନାଇଁ ଭିଖି କିହେ ନାଇଁ ମାଗେ । ।।୪୨।।

ଆବ୍‌ରି ଆଦ୍‌ରି ନିଜର୍ କରମ୍ ଧରମ୍ ଲେଖେଁ ଧରି
ନୀତି ନିଏର୍ ବାଟେଁ ଚାଲନ୍ କାହାକେ ନାଇଁ ଡ଼ରି । ।।୪୩।।

ରଜା ପର୍‌ଜାର୍ ସାଙ୍ଗେଁ ବାପ୍ ପୁଓ ମେତାଲ୍ ନାତା
ନେବାର୍ ଲୋକ୍ ନୁରା ଲାଗସି ରାଏଜ୍ ଯାକର୍ ଦାତା । ।।୪୪।।

ଯେନ୍ ଋତୁନେ ଯେ'ନ ଯେନ୍ତା ହେବାର୍ କଥା ହେସି
ଦର୍କାର୍ ଦେଖି ବର୍ଷା ହେସି କମ୍ ନାଇଁ କି ବେଶୀ । ।।୪୫।।

ସାନ୍ ସାନ୍ ଛୁଆ ମାନ୍‌କର୍ ସିଆନ୍ ମେତାନ୍ ବୁଦ୍ଧି
ଘର୍ ଦୁଆର୍ କଲା ଲୁକର୍ ତପୀର୍ ଲେଖେଁ ଶୁଦ୍ଧି । ।।୪୬।।

ମନ୍ଦ ଭାବ୍‌ନା ଦ୍ୱନ୍ଦ୍ୱ ଭାବ୍‌ନା, ଭାବ୍‌ନା ଲଢ଼େଇ ଝଗଡ଼ା
ରାମ୍ ନାମର୍ ବାଡ଼୍‌ନିନେ ବନ୍ଧାନ୍ ଜାନି ଜଗ୍‌ଡା । ।।୪୭।।

ବଧ୍ ନାଇଁ ଅବଧ୍, ଅଯୋଧିଆ ଯୁଧ୍ ନାଇଁ
କେତେ ଦିନୁ ନାଁ ଡାକ୍ ଯେ କେ ଜାନ୍‌ବା କାହିଁ ?'' ।।୪୮।।
ହାତ୍‌କେ ଯୁଡ଼ି କହେଲା ଲବ ମାଏନ୍ତା ଋଷି ବାବା
ତୁମର୍ ଇ କଥା ପଦକ୍ ସମ୍‌କୁଁ କଲା କାବା । ।।୪୯।।

ଯେନ୍ ସମିୟାର୍ କଥା କହୁଛ ନାଇଁ ଜନ୍‌ମି ରାମ୍
ଲୋକର୍ ନିକେ କେନ୍ତା ଆଏଲା ତାକର୍ ସୁନ୍ଦର ନାମ୍ । ।।୫୦।।

ମୋର ବାଗିର୍ ଅବୋଧ୍ ଟାକର୍ ଦୋଷ୍ କରି ମାଫ୍
ବନ୍‌ଏ ହେତା ଛନ୍‌ଏ ମେତାଲ୍ ସଁଶେ କଲେଁ ସାଫ୍ । ।।୫୧।।

କଥା ଶୁନି କହେଲେ ମୁନି ନୁହେ ଇଟା ଦୋଷ୍
ଗୁନ୍ ଆଏ ବୁଆ ! ଉଷଦ୍ ଲାଗ୍‌ଲା ନୁହେ ରୋଷ୍ । ।।୫୨।।

ରାମ୍ ନାମ୍‌ଟା ଗୁଟେ ସମିଆ ଗୁଟେ ଦେଶର୍ ନୁହେ
ସବୁ ସମିଆର୍ ଆଏ କେଭେଁ କାହିଁ ନାଇଁ ଲୁହେ । ।।୫୩।।

ରାମ୍ ପଦ୍ ଟା ଧନ୍ ସବୁ ଯୁଗେଁ ସତ୍ ଆଏ
ଦୁନିଆଁ ଦରିଆ ପାର୍‌ଲାଗି ସମ୍‌କର୍ କାଯେଁ ରଥ୍ ଆଏ । ॥୫୪॥

ପର୍ଲେ ହେବାର ତକ୍ ଅଛେ ସୁର୍‌ଷ୍ଟି ହେଲା ଦିନୁ
ସର୍ଜନା କାହିଁ ଠହରି ରହେବା ରାମ୍ ନାମ୍‌ର୍ ବିନୁ । ॥୫୫॥

ଅକଲ୍‌ନା କେନ୍ କାଲୁଁ କେତେ ଯୁଗୀ ମୁନି ରମି
ସେ ନାଁଆନେ ହଜି ଯାଇଛନ୍ ଆନନ୍ଦ୍ ମନେ ଗମି । ॥୫୬॥

ଆନନ୍ଦ୍‌ମଏ ଥିତି ଆଏ ପାଏଲା ଲୁକ୍‌କୁଁ ରାମ୍
ଅଛେ ସବୁ ଦିନେ ଚେ଼ତନ୍ ଚ଼ଢ଼ି ତାର୍ ଧାମ୍ । ॥୫୭॥

ରାମ୍ ପଦ୍‌ଟା ସଂପଦ୍ ଆଏ ପରମ୍ ବହ୍ମ-ରୂପ୍
ଏତ୍‌କି ଶୁନି ଲବର୍ ସାଙ୍ଗେଁ ସଭେ ହେଲେ ଚୁପ୍ । ॥୫୮॥

ଉଷତ୍ ହଇଁ ଲବ କହେଲା ଯୁଡି ଦୁଇ ହାତ୍
ସେ'ନୁ ସେଆଡ଼୍ କହ ବାବା ! ଧରେ କଥାର୍ ମାତ୍ । ॥୫୯॥

ମୁନି କହେଲେ ଶୁନି ବସ୍‌ଲେଁ ଥର୍‌କେଁ କେ'ନ ସର୍‌ବା ?
କଥା ଠାନ୍‌କେଁ କିନ୍ତୁଥିବା ଦିନ୍ ଖାଲି ଗର୍‌ବା । ॥୬୦॥

ରାମ୍‌ର କଥା ରସର୍ କଥା ନୁହେ ବଣର୍ କଥା
ସେ ଚ଼ାହେଁଲେ ବୁଝବ୍ ଘାଏକେଁ ନେହେଲେଁ ହେବ ଅଥା । ॥୬୧॥

ବେଲ୍ ଆଏଲା ମୁଡ଼୍ ଉପର୍‌କେ ସଂଧିଆର୍ ସମିଆ ହେଲା
ସବୁ ସାରି ଆସ୍‌ଲେଁ ବସ୍‌ମା ଫେର୍ ଉପର୍ ବେଲା । ॥୬୨॥

ପୂଜା ସାରି ଆଲ୍‌ତି ସର୍‌ଲା ସଭେ ମୁଡ଼ିଆମାରି
ଜନ୍‌ଜନ୍ କରି ସଭେ ଗଲେ ମନେ ଆନନ୍ଦ ଅସୁମାରି । ॥୬୩॥



# ପାଉଚ୍-୩

## ଦିଲୀପ୍-ରଜାକର୍ ଗୋ-ସେବା

ଗରି ଗଲା ମଏଧାନ୍ ଆର୍ ବେଲ୍ ଉହୁରି ଆଏଲା
ଗଛ୍ ଖୁଁଟର୍ ଆକାର୍ ଯାକର୍ ଛଏରା ଦୁହୁରି ହେଲା । ।।୧।।

ପଛିମ୍ ଆଡ଼୍‌କେ ଯାଇ ବେଲ୍ ପୂରୁବ୍ ଦିଗ୍‌କେ ଦେଖୁଛେ
ଆଏଲା ବାଟ୍‌କେ ଛଏରା କଁଟେ କେତେ ଆଏ ଯୁଖୁଛେ । ।।୨।।

ଗଲା ବାଟ୍‌କେ ଲେହେଁଟି ଦେଖି କଲା କାମ୍‌କେ ସୋର୍
କର୍‌ବାର୍ ଆଏ ନୀତି,ବେଦ୍ କହେ ଦେଇ ଯୋର୍ । ।।୩।।

ହେଥିର୍ କାଯେଁ ଶାମ୍‌କୋଲ୍ କାଏଁ ଚଲାବାଟେଁ ଗାର୍
ଛାଡି ଛାଡି ଯାଏସି ଯିବାର୍ ଥିସି ଯେନ୍ ପାର୍ । ।।୪।।

ଋଷି ସମର୍ ଛାଲେଁ ବସି ଲେଖା ରାମେନ୍ ପେସ୍ରେଇ
ପାଶେଁ ଲବକୁଶ ହ'ନ୍ ଘାଏ ଘାଏ ଘେଁସ୍ରେଇ । ।।୫।।

ଚେଲା ଗୁହୁଡା କିଏ ବସିଛେ ପାରି ଚିଥଲ୍ ଛାଲ୍
କେ ପକେଇଛେ କୁଶର୍ ପଟି କିଏ ନୀବାର୍ ପୁଆଲ୍ । ।।୬।।

ସଭେ ଦେଖନ୍ ମୁନି ମୁହୁଁକେ କହେବେ କେତେବେଲେଁ
କିଏ ଅଘାସି ଅମୃତ୍ ଆନି ଯାହାକେ ଯେତେ ଦେଲେଁ । ।।୭।।

ସମକୁଁ ତବଧ୍ କରି ଶୁଭେ ମୁନି ମୁହୁଁର୍ ଓଁକାର୍
ଲବକୁଶ କହେଲେ କହେଲା ତାକର୍ ବୀନାର୍ ତାର୍ । ।।୮।।

ଶୁନ୍‌ବାର୍ ଲୋକ୍ ସଭେ କହେଲେ ଓମ୍ ଓମ୍ ଓମ୍
ଝଁକ୍‌ରି ଗଲା ଆଶ୍ରମ୍ ସାରା ଟାଁକରି ଗଲା ଲୋମ୍ । ।।୯।।

କେତେ ସୁରୁଡ୍ ମଧୁର୍ ଲାଗ୍‌ଲା ମିଶି ସବୁ ଓଁକାର୍
ଲେହେଁଟା ସୁରେଁ ଚହଟି ଗଲା ମନ୍‌ମତା ସେ ଝଁକାର୍ । ॥୧୦॥

ଗଛପତର୍ ତମ୍‌ସା ନଏଦ୍ ପାଲିଆ ଧଏଲା ମେତାଲ୍
ଲାଗ୍‌ଲା ସେଥିଁ ଘୁମ୍‌ରି ଗଲା ଆକାଶ୍ ପୁର୍ଥୀ ପାତାଲ୍ । ॥୧୧॥

ରାମ୍‌ର୍ ଜଏ ଗାଇ ମୁନି ମୂଲ୍ କର୍‌ଲେ କଥା
ଅଯୋଧ୍ୟାର୍ ଗୁନ୍ ଗାଏଲେଁ କାହିଁ ଲାଗ୍‌ବା ଅଥା । ॥୧୨॥

ଆଖିଁ ଛଲ୍‌କେ ପାନି ଭକ୍ତି ସର୍‌ସର୍ ହଇ ସାନି
ମୁନି ଘାଏ ଘାଏ ପୁଛି ନିଅନ୍ ପାତଲ୍ ବଲ୍‌କଲ୍ କାନି । ॥୧୩॥

ଦୁର୍ଗୁନ୍ ଦୁସ୍‌କୃତ୍ ସବ୍ କେତେଦିନୁ ପଛେଇ
ସବୁ ବନ୍‌ଏ ଥିତି ଆସି ହଇ ଯାଇଛନ୍ ବିଛେଇ । ॥୧୪॥

ଈ ସବୁ ବଛ୍‌ରେ ଅଧିକେଁ କେନ ପାରିଛେ ହଇ
ବନ୍‌ଏ ବନ୍‌ଏ ରଜାମାନେ ଥିତି ଆନିଛନ୍ ବନେଇ । ॥୧୫॥

କେତେ ରଜାର୍ କେତେ ତିଆଗ୍ କେତେ ମେହେନତ୍ ଲାଗେ
ସଦ୍‌ଭାବନା ବନା ନୁହି ସତ୍‌କାର୍ ପାଇ ଜାଗେ । ॥୧୬॥

ଶୁଆ ସାରୀ କଥା ଛାଡ କୁଆ ଡ଼ାକେ ରାମ୍
ରାମ୍‌ର୍ ନାମେ ମାକର୍ ନାଚେ ଏନ୍ତା ଅବଧ୍ ଧାମ୍ । ॥୧୭॥

ପର୍‌ଜା ପାଲ୍‌ବାର୍ ସୁରେଁ ନିଜର୍ କାମ୍‌ନା ନେଇ କାମ୍
ପୁରା କର୍‌ବେ ବଲିଁ ଦିଲୀପ୍ ରଜା ଦୟାର୍ ଧାମ୍ । ॥୧୮॥

ଗୁରୁ ବଶିଷ୍ଠ ରଷି ସବୁ ସିଧି ଯାହାର୍ ବଶେଁ
କହେଲେ ଆଦର୍ଶ ପୁଓଟେ ଗୁରୁ ! ହେତା ମୋର୍ ବଅଁଶେଁ । ॥୧୯॥

ଗୁରୁ କହେଲେ କାମ୍‌ନା ପୂରାଏ କାମ୍ ଧେନୁର୍ ସେବା
ସୁରଭିର୍ ଝି ନନ୍ଦିନୀ ଅଛେ ହେନ୍ତା ପୁଓ ସେ ଦେବା । ॥୨୦॥

ଜନମ୍ କଲା ମାଁର୍ ସାଙ୍ଗେଁ ପୁର୍ଥୀ ଆର୍ ଗାଏ
ମାନୁ ନାଇଁ ମାନୁ ମୁନୁଷ୍ , ସମାନ୍ ନିମାନ୍ ଆଏ । ॥୨୧॥

ଗୁଟେ ରୁମେ କୁଟେ ଦେବ୍‌ତାର୍ ଗାଏର୍ ଦିହେଁ ବାସ୍
ଗାଏ ସେବାର୍ ଦେବାର୍ ଫଲ୍ କରି ନୁହେ ପରକାଶ୍ । ॥୨୨॥

କେନ୍ ଧନ୍ ଇ ପୁର୍ଥୀନେ ନୀଲ୍ ଆକାଶର୍ ତଲେଁ
ନାଇଁ ମିଲ୍‌ବା ବନ୍‌ଏ ମନେ ଗାଏର୍ ସେବା କଲେଁ । ॥୨୩॥

ଗୋରୁ ଚ଼ରା ଥିଲା ସେଭେଁ ସବୁ ପର୍‌ଜାର୍ ପେଶା
ପର୍‌ଜାର୍ ପେଶା ରଜାର୍ ମାଏନ୍‌ତା ଥାଏ ହରୁମେଷା । ॥୨୪॥

ସେଥିର୍ କାଯେଁ ରାଜ୍ ସୁଖ୍ ସଂଭୋଗ୍ କେ ନୈ ପଚ଼ରେଇ
ରାଜା ସାଙ୍ଗେ ରାନୀ ଲାଗ୍‌ଲେ ନନ୍ଦିନୀ କେ ଚ଼ରେଇ । ॥୨୫॥

କଅଁଲି ଘାଁସର୍ ସୁରେଁ ସୁରେଁ ନନ୍ଦିନୀ ଦିନ୍‌ଏ ଯାଉଛନ୍
ପଛେଁ ପଛେଁ ଧନୁଶର୍ ଧରି ଦିଲୀପ୍ ରଜା ଧାଉଁଛନ୍ । ॥୨୬॥

ପାହାଡ଼୍ ଖୁଲେଁ ପୁହୁଁଚିଲେ ଯାଇ ନିଝାଟ୍ ପରେ ଝାର୍
ମୁନୁଷ୍ ଛାଡ଼ ଚେ଼ରେର୍ ଶବଦ୍ ନାଇଁ ଶୁଭେ କେନ୍‌ପାର୍ । ॥୨୭॥

ସୃଜି ପର୍‌ଲେଁ ଠନ୍ କର୍‌ବା ଝାଏଁ କରେ ସେ ଠାନ୍
କେନ୍‌ନୁ ହେଲା ଗର୍ଜନଟେ କିଲ୍‌କିଲେଇ ଗଲା କାନ୍ । ॥୨୮॥

ରଜା ଦେଖନ୍ ତଲ୍ ଉପର୍ ସବୁଆଡ଼୍ ସେ ଘଡ଼ି
ବାଦଲ୍ ନାଏଁନ ଶୁଭେ କେନ୍ତା ମେଘର୍ ଘଡ଼ଘଡ଼ି । ॥୨୯॥

ଆଏଁଖ୍ -ଘୁଡ଼ାଥିଁ ମନ୍‌ଟା ଚ଼ଢ଼ି ବୁଲୁଥିଲା ଡ଼ଙ୍ଗର୍
ରମି ଯାଉଥିଲା, ଶମି ଠାନ୍ ସୁନ୍ଦର ସୁନ୍ଦର୍ । ॥୩୦॥

ଶବଦ୍ ଆଡ଼୍‌କେ ଗଲା ଘୁଡ଼ା ଘିଚିହଇ ବର୍‌କସି
ଦେଖିଲେ ରଜା ଗାଏ ଉପରେଁ ସିଂହଟେ ଅଛେ ବସି । ॥୩୧॥

ଗାଏର୍ ଦିହୁଁ ରକତ୍ ଆଖୁଁ ବହେ ଲହର୍ ଧାର୍
ଦେଖି ରଜାର୍ ରିଷ୍ଟି ହେଲା ତୁରତି ସୀମା ପାର୍ । ॥୩୨॥

ସିଂହ୍ ଯେତ୍‌କି ଗର୍‌ଜେ ସେତ୍‌କି ଆକୁଲ୍ ବିକୁଲ୍ ଗାଏ
ଲେହେଁଟା ଶବ୍‌ଦେଁ ଡଙ୍ଗର୍ ପର୍ବତ୍ କରନ୍ ହାଏ ହାଏ । ॥୩୩॥

ରାଗ୍ ଜର୍ ଜର୍ କହେଲେ ରଜା ଧୁନେ ଶର୍‌କେ ଯୁରି
ସଁଭ୍‌ଲା ସିଂହ୍ ! ଶମ୍‌ବୁ ଏତ୍‌କେଁ ସିଧା ଶମନ୍ ପୁରୀ । ॥୩୪॥

ଆଶ୍ରିଯ୍ ରଜା ଶୁନି ସିଂହର୍ ମୁହେଁ ମୁନୁଷ୍ ଭାଷି
''କେଡେ, ବେଡା ରଜା ! ଉପ୍‌ରେଁ ଉପ୍‌ରେଁ ଯାଉ ଭାସି । ॥୩୫॥

ଶିବର୍ ସିଂହ୍ ଝାର୍‌କେ ଜୁଗି ଇନେ ଅଛେଁ ବସି
ଖାଏମି ତାହାକେ ଯେ'ବି ହଉ ଆଏଲେଁ ଇନ୍‌କେ ପଶି ॥୩୬॥

ଶରଟେ କାଏଁ ଖଏତ୍ କର୍‌ବୁ ହେଁ ଥିଁ କାଏଁ ମର୍‌ମି ?
ଝାରେଁ ମୁଇଁ ଝାରର୍ ରଜା କେନ ରଜାକେ ଡର୍‌ମି । ॥୩୭॥

ଭଲ୍ ଗତି ଅଛେ ହେଲେଁ ଇ'ନୁ ଏତ୍‌କେଁ ପଲାନ
ଭୁଖେଁ ଶୁଖେଁ ଜୀବନ୍ ଇଆଡ୍ ସେଆଡ୍ ହଇଁଗଲା ନ । ॥୩୮॥

ପଟେ ଗାଏର୍ ପେଟ୍‌କେ ଜୁଗୁ କେନ୍‌ରଜାର୍ ରଜା
ରାଏଜ୍‌ଟେ ବୁଡେଇ ଉଡାବୁ ପରେ ଗୋରୁ ସେବାର୍ ଧଜା । ॥୩୯॥

ମୋର ନାଁ ନେଇଁ ରଜାମାନେ ବସ ସିଂହାସନ୍
ସୁ-ଆସନ୍‌ଟେ ପାଏଲେଁ କର୍‌ସ ସବୁ କୁଶାସନ୍ । ॥୪୦॥

ସିଂହର୍ ଆସନ୍ ପାଇ କର୍‌ସ କୁଳିହା ଲେଖେଁ ବିଚାର୍
ଭୂଷଣ୍ ହେସି ହତ୍ୟା ମିଥ୍ୟା ଅତି ଆତ୍ୟାଚାର୍ । ॥୪୧॥

ଗିଆନୀ ଗୁନୀ କବି କୋବିଦ୍ ମରୁଥିସନ୍ ଭୁଖେଁ
ନଠା କୁଠା ଚୁଠାମାନେ ଶୁଇଥିସନ୍ ସୁଖେଁ ॥୪୨॥

ପଶ୍ ପଶ୍ ଲହୁ ପର୍‌ଜାର୍ ନେଇ ଘିନ୍‌ସ ନିଜର୍ ଯଶ୍
ଧଏନ୍‌ରେ ମୁନୁଷ୍ ! ନିଜର୍ ବଡ଼ତି ଶୁନ୍‌ବାରେଁ ତୋର୍ ରସ୍ । ||୪୩||

ଗାଏ  ପଟ୍‌କର୍ ପେଟ୍ ପୂର୍‌ବାର୍ ଲାଗି ଚିନ୍ତା ତୋର୍
ତୋର୍ ରାଏଜର୍ ଆଏଁ ମୁଇଁ ପେଟ୍ ପୁଡୁଛେ ମୋର୍ । ||୪୪||

ଯେ' ବି ହଉ କାହାରି ଲାଗି ଏତେ ଗହେର୍ ମମ୍‌ତା
ସୁନ୍ଦର୍ ନୁହେ ରଜାର୍ ଅଲଙ୍କାର୍ ଆଏ ସମ୍‌ତା । ||୪୫||

ନନ୍ଦିନୀକେ ବଅଁଚାବୁ ତ ମୁଇଁ କେନ୍ତା କର୍‌ମି ?
ଝାର୍ ରାଏଜର୍ ଆଏଁ ବଲିଁ ଚିନ୍ତା ନାଇଁ; ମର୍‌ମି ? ||୪୬||

ସିଂହର କଥା ପଦ୍‌କ ରଜାର୍ ରିଶ୍‌ମି ଟିକେ ଫକାଲା
ଉପ୍‌ଲୁଥିଲା ଗୁରସ୍ ହାଁଡ଼ି ପାଏନ୍ ଆନି ପକାଲା । ||୪୭||

ରଜା କହେଲେ "ଝାରର୍ ରଜା ! କ୍ଷେତ୍ରି କୁଲେଁ ଜନମ୍
କ୍ଷେତ୍ରୀ ରକତ୍ ଦିହେଁ, କ୍ଷେତ୍ରୀର୍ କାମ୍ ମୋର୍ ଧରମ୍ । ||୪୮||

ଆଖିଁର୍ ଆଗେଁ ଆଶ୍ରିତ୍ ଟେ ଆର୍ ପାର୍‌କେ ଯିବା
କାଁ ଜୀବନ୍ ବଲ୍‌ମା, ମୋର ଦିହେଁ ଯାହା ଥିବା ? ||୪୯||

ନନ୍ଦିନୀକେ ଛାଡ଼ି ସିଂହ୍ ମତେ ଦେ ଗା ଖାଇ
ମୁଇଁ ମର୍‌ସିଁ ତୁମେ ବଅଁଚ଼ ବଅଁଚି ଯାଉ ଇ ଗାଇ ।" ||୫୦||

ମେଛା ହଲେଇ ସିଂହ୍ କହେଲା "ଛୁଛା କର୍‌ବୁ ଜନମ୍ ?
କେ'ନ ପାଏବୁ ଏନ୍ତା ଜୀବନ୍ ଆଉର୍ ଏନ୍ତା କରମ୍ ? ||୫୧||

କେତେ, ସୁନ୍ଦର୍ ଥିତି ତୋର୍ କେତେ ବଡ଼୍ ରାଏଜ୍
କେତେ ପ୍ରାଣୀ ଆତୁର୍ ଅଛନ୍ ପାଏବାକେ ତୋର୍ ସାହେଯ୍ । ||୫୨||

ଗାଏ ପଟ୍‌କର୍ ଲାଗି କେତେ, ଜୀବନ୍ କର୍‌ବୁ ବୃଥା
ଖିସାଲା ମନ୍‌କେ ବନ୍‌ଏ ହିସାବେଁ ଭଲ୍ କରି ଭୁର୍‌ଥା । ||୫୩||

ଏନ୍ତା ଗାଏ ହଜାର୍ ହଜାର୍ ବଶିଷ୍ଟ୍ ଋଷିର୍ କାଯେଁ
ଜୀଇଁଥିଲେଁ ଦେଖୁ ମର୍‌ମି ବଲୁ କେନ୍ ଲାଗେଁ ? ॥୫୪॥

ତୋର୍ ଲହୁ ପଷ୍‌କେଁ ମୋର୍ ନାଇଁ ଭିଜେନ ଟିଁ ଟି
ତୋର୍ ମାଉଁସ୍ ପଲ୍‌କେଁ ଭୋକ୍ ନାଇଁ ଯାଏ ହଟି । ॥୫୫॥

କଟର୍ କଟର୍ ନୈ କର୍ ସୋଲ୍; ଖାଉଛେଁ ମୁଇଁ ଗାଏ
କାଲ୍ କାଲ୍‌କେ କଥା ଥିସି ଘଟ୍‌ନା ଘଟ୍‌ସି ଘାଏ ।'' ॥୫୬॥

ହାତ୍‌କେ ଯୁଡି ଦିଲୀପ୍ ରଜା କହେଲେ କରି ବିନ୍‌ତି
''ପଶୁରାଜ୍ ହୋ ପଶୁଛେ ନାଇଁ ତୋର୍ କଥା ମୋର୍ ମନ୍ ଥିଁ । ॥୫୭॥

ଜୀବ୍ ଆତ୍‌ମା ରହେବାକେ ଦିହ୍‌ଟା ଗୁଟେ ଖୋଲ୍
ନାଇଁ ଜାନ୍‌ଲା ଲୁକେ ସୋଜ୍ ଦିହ୍-ମାୟାନେ ଭୋଲ୍ । ॥୫୮॥

ଆଏଜ୍ ନାଇଁ ଗଲେଁ ଦିନ୍‌ଏ ଇ ଜୀବନ୍ ଯିବା
ମାଟିର୍ ପିଁଡ ମାଟି ମିଶ୍‌ବା ସବୁଦିନ କାଁଏ ଥିବା ? ॥୫୯॥

ଇ ଦିହ୍ ଗଲେଁ ଦିହ୍‌ଟେ ଫେର୍ ମିଲ୍‌ବା କରମ୍ ଜାନି
ଦିହ୍ ଗଲେଁ ବି ଆତ୍‌ମା ଥିବା ହେବା ଘାଟିଁ ସାନି । ॥୬୦॥

ଜଲି ପୁଡି ମରୁଥିବା ପଷ୍ଟେଇ ହେବାର୍ ଜୁଏ ନେ
ହରୁ ହରଦମ୍ ଭକ୍ ଭକାବା କଲା କାମର୍ ଭଏନେ । ॥୬୧॥

ସେ ଜୀଇଁବାର୍ ଜୀବନ୍ ନୁହେ ବିବେକ୍-ବେଁକ୍ ମୁରି
ବନ୍‌ଏ, ସତ୍‌କର୍‌ମେ ପାର୍‌ଲେଁ ମରନ୍-ବାଟ୍‌କେ ମୁରି । ୬୨

ମତେ ମାରି ଆଶ୍ରିତ୍ କେ ଜୀବନ୍ ଦିଅ ରଜା !
ଜୀବନ ଦେଇ, ନାଇଁ ଦିଅ ମରନ୍ ନୁ ବଡ୍ ସଜା'' ॥୬୩॥

ଏତ୍‌କି କହିଁ ଯୁହାର୍ କରି ମୁଣ୍ଡ୍ ଲଗାଲେ ଭୂଇଁ
ଉଠି ଦେଖିଲେ ସିଂହ୍ ନାଏନ କାହିଁ ଅଛେ କାଏଁ ଜୁହିଁ ? ॥୬୪॥

ସାବୁଦ୍ ସୁନ୍ଦର୍ ନନ୍ଦିନୀ ତାହିଁ ଠାଦ୍ କାପ୍ଲି କରୁଛେ
ଦିଲୀପ୍ ଦିହ୍‌କେ ଚାଟି ଚାଟି ସେନେହ୍ ସରାଗ୍ ଭରୁଛେ । ॥୬୫॥

କହେ "ବିଶିଷ୍ଟ ତପର୍ ବଲ୍ ମତେ ଘେରି ରଖୁଛେ
ନିଜେଁ ଯମ୍ ସିଂହ୍ ହେଲେଁ ବି ମତେ କାହିଁ ଭଖୁଛେ ? ॥୬୬॥

ଜାନ୍‌ଲିଁ ମୁଇଁ ମୋର୍ ଲାଗି ଜାନ୍ ଦେବାକେ ତିଆର୍
ସେବାର୍ ଫଲ୍ ନିଶ୍ଚେ ପାଏବୁ ଭାବ୍‌ନା ନାଇଁ ଆର୍ । ॥୬୭॥

ମୋର୍ ଗୁରସ୍ ପିଇ ନିଜେଁ ରାନୀକେ ବି ପିଆବୁ
ସବ୍ କାମ୍‌ନା ପୂରା କର୍‌ବାର୍ ମନ୍ ଲାଖ୍ ପୁଓ ପାଏବୁ ।" ॥୬୮॥

କହି ସାରି ମହାନ୍ ମୁନି ଲେଖା ରାମେନ୍ ସଁଖିଲି
କହେଲେ, "ଯେନ୍ ପୁଓ ପାଏଲେ କେ ପାର୍‌ବା ପାଶ୍‌ରି ? ॥୬୯॥

ତାକର୍ ନାଏଁ ବଅଁଶ୍ ଚ଼ଲ୍‌ଲା ତାହିଁ ଜନ୍‌ମିଲେ ରାମ୍
ଚାଲ ଏତ୍‌କେଁ ଯିମା କର୍‌ମା ଶଉଚ ସଂଧିଆ କାମ୍ । ॥୭୦॥

ସୁରୁଯ୍ ଗଲେ ମାଁର୍ କୋଡ୍‌କେ ଚ଼େରେ ଧଏଲେ ଗୁଡା
ଅଂଧାର୍-ଉଢ୍‌ନା ଉଢ଼େ ଧର୍‌ତୀ, ହେଲା ବେଲ୍ ବୁଡ଼ା । ॥୭୧॥

ଲବ କହେଲେ" ଦିଲୀପ୍ ରଜାର୍ ପୁଓ କିଏ ଆଏ ?
ଯାର୍ ନାଁଏଁ ବଅଁଶ୍ ଚ଼ଲେ କହେବେ ନାଇଁ କାଏଁ ଘାଏ ?" ॥୭୨॥

ଋଷି କହେଲେ କାଏଲ୍ ସକାଳୁଁ ପହେଲା ସେଥିର୍ କଥା
ପର୍‌ବା ବାବୁ ! କାଁ କରି ତୁଇଁ ଆଗୁଁ ହଉଛୁ ଅଥା । ॥୭୩॥



# ପାଉଚ୍-୪

## ରଘୁ ରଜାକର୍ ଯଜ୍ଞଅଶ୍ୱ ରକ୍ଷା

ଏଛନି ଏ' ଦେ ହୁମ୍ ସରିଛେ କୁହୁଲା ନୁହେ ଯାଏ
ପୂଜା ସିନା ସରେ, ସରେ ନୁହେ ଗହଲି ଘାଏ । ।।୧।।

ମେଲା ପରିଛେ ଆସନ୍ ମାନ୍ ଚେ଼ଲା ନୁହେ ଆସନ୍
ଧିଆନେ ରଷି ଆଏଁଖ୍ ମୁଜି ପଦ୍ମାସନେ ବସନ୍ । ।।୨।।

ଲବକୁଶ ବୀନାର୍ ତାର୍ ସଲ୍ଖା ସଲ୍ଖ୍ କରୁଛନ୍
ସାରେଗାମା ସାତ୍‌ହି ସୁର୍ ନିଜର୍ ଠାନେ ଭରୁଛନ୍ । ।।୩।।

ଓଁ କହି ମୁନିର୍ ମୁହୁଁ ବାହାର୍‌ଲା ରାମ୍ ରାମ୍
ସତର୍ ଶାନ୍ତି ଉତ୍‌ରି ଆଏଲା ଗହଲି ଥୁମ୍ ଥାମ୍ । ।।୪।।

ଶୁନ୍‌ବାର୍ ଲୋକ୍ ନିଜର୍ ନିଜର୍ ଠାନେ ପର୍‌ଲେ ବସି
ରଷିର୍ କଥା ଖୁସି ଶୁନ୍‌ବା ବେଲ୍ ବି ଉଦେ ହଁସି । ।।୫।।

ପବନ୍ ଆଏଲା ହୁର୍ ହୁରିଆ ସାଫ୍ ସୁତର୍ ବେଶେଁ
ଆଗୁଁ ଅଗ୍‌ନି କୁଁଡେଁ ଅଛନ୍ ଅଙ୍ଗ୍‌ରା ହଇ ଶେଷେଁ । ।।୬।।

ଜଲ୍ ଦେବତା ଖଲ୍ ଖଲାସନ୍ ତମ୍‌ସା ନଦୀର କୁଡ଼େଁ
ଶୁନ୍‌ବେ ବଲିଁ ଯାହା କହେବେ ମୁନି ନିଜର୍ ଟୁଣେ । ।।୭।।

ବନ୍ ଦେବ୍‌ତା ମନ୍ ଦେଇଛନ୍ ପତର୍-କାନ୍ ଡେ଼ରି
ସବ୍ ଆଏଲେ ନ କାହାକେ ଟାକି ରଷି କରନ୍ ଦେରି । ।।୮।।

ସୀତା ନାନୀ ସାଙ୍ଗେ ଆଏଲେ ମୁନି କୁମାରୀର୍ ଦଲ୍
ରାଜ୍ ରାନୀ କିଏ କହେବା, ଦିହେଁ ଦେଖି ବଲ୍‌କଲ୍ । ।।୯।।

ବାହାର୍ ସରଲ୍ ସୁନ୍ଦର୍ ସହଜ୍ ଭିତ୍‌ରେଁ ଆନନ୍ଦ୍ ରାମ୍
ନାରୀ ହଇ କାଏଁ ରାମ୍ ଆଏଲେ ସାରି ପୁରୁଷ୍ କାମ୍ । ।।୧୦।।

ବାଲକ୍ ରାମ୍ ଲବକୁଶ ହଇଁ ଧରିଛନ୍ ବୀନା
ଶୁନ୍‌ବାର୍ ଲୋକ୍ ଭିତ୍‌ରେଁ ଶୁନନ୍ ନିଜର୍ ଚ଼ରିତ୍ ସିନା । ।।୧୧।।

ରାମ୍ ନାମ୍ ନାଦ୍ ବ୍ରହ୍ମ ହଇଁ ଶୂନ୍ୟେ ଖେଲୁଛେ
ଶ୍ୟାମଲ୍ ଦେହର୍ ବରନ୍ ଡ଼ାଲେଁ ପତ୍‌ରେଁ ଦୁଲିଝୁଲୁଛେ । ।।୧୨।।

ରାମ୍-ବାଦୀ ଋଷି ଦେଖନ୍ ଜଗତ୍ ରାମ୍-ମଏ
ତାକର୍ ମୁହୁଁ ଯାହା ବାହାରେ କେବଲ୍ ରାମର୍ ଜଏ । ।।୧୩।।

ଛାଡ଼୍‌ଲା ଠାନୁ ମୁନି କହେଲେ ଶୁନି ସଭା ତବଧ୍
ରାମ୍‌ର୍ କଥା ମୁହୁଁ ଖୁଲ୍‌ଲେଁ ବାକୀ ଶବଦ୍ ଜବଦ୍ । ।।୧୪।।

ଗୋର ମାତାର୍ ବରେଁ ରାନୀ ସୁଦକ୍ଷିଣା ମାଆଁ
ପୁଓ ଦେଲେ ପୁର୍ଥୀ ମା'କେ ନାଇଁ ମେଟେ ତାର୍ ନାଆଁ । ।।୧୫।।

ବିପଦ୍ ଆପଦ୍ ସାଙ୍ଗେ କାଲ୍ ସମୁଦର୍ କେ ଲଘୁଁ
ଅଁତ୍‌ରି ଶାଲେ ମାତିରି ଋଷି ନାଆଁ ଦେଲେ ରଘୁ । ।।୧୬।।

ଦିଲୀପ୍ ରଜା ଅଶ୍ୱମେଧ୍ ଯଜ୍ଞ କରି କରି
ଆଉର୍ ଗୁଟେ କରିପାର୍‌ଲେଁ ଶହେ ଯିବା ଭରି । ।।୧୭।।

ଅଶ୍ୱମେଧର୍ ଅଶ୍ୱଜୁଗା, ଆଏ କଡ଼ା କବାର୍
ଘୁଡ଼ା ଛେଁକ୍‌ବା ମାନୀ ରଜା ହେଲେଁ ଟିକେ ଲବାର୍ । ।।୧୮।।

ଯୁଆନ୍ ହେଲେ ଛୁଆ ରଘୁ ଷାଠେ ଷଁଢ଼ର୍ ବଲ୍
ଶସ୍ତର୍ ଜ୍ଞାନ୍ ସାଙ୍ଗେଁ ବିସ୍ତର୍ ଶାସ୍ତର୍ ଜ୍ଞାନ୍ ପ୍ରବଲ୍ । ।।୧୯।।

ମୁରିଆଁ ମୁରିଆଁ ଡ଼େନା ଆବ୍‌ରେ ବିଁଏ ଉସାର୍ ଛାତି
ଶୁଁଢ୍ ଧଏଲେଁ ଉଁ ନାଇଁ କରେ ମାତ୍‌ଲା ଦଁତା ହାତୀ । ।।୨୦।।

ଧୁନ୍ ଧଏଲେଁ ଶତ୍ରୁ ଛାଆନି ହେସି ଶୂନ୍ ପଦା
ଗଦେଇ ହେସନ୍ ଶ'ଶ' ସଏନ୍ ହାତେଁ ଥିଲେଁ ଗଦା । ॥୨୧॥

ବର୍‌ଛି ବର୍‌ଷାଲେଁ ଯାହାକେ ବର୍‌ତିବା କାଏଁ ଆର୍
ହୁର୍‌ଶିଲେଁ ତିର୍‌ଶୂଲ୍ ଯାହାକେ ଯାଏ ଆର୍ ପାର୍ । ॥୨୨॥

ପରଶୁ ଥିଲେଁ ହାତେଁ ପାର୍‌ସନ୍ ଶ'ଶ' ମୁଣ୍ଡ୍ ଗଦେଇ
ଶମ୍‌ଲେଁ ସେ ସମର୍ ଭୂଇଁ ରକ୍‌ତେଁ ହଏ କଦେଇ । ॥୨୩॥

ଶେଷ୍ ଯଜ୍ଞ କରନ୍ ଦିଲୀପ୍ ବିଶେଷ୍ ଆଡମ୍ବରେଁ
କେ ଅଛେ ଭାଏଲ୍ ଛେଁକ୍‌ବା ଘୁଡା ? କେ କହେବା ମରେଁ ? ॥୨୪॥

ଘୁଡା ଜୁଗି ଯାଆନ୍ ରଘୁ ସାଙ୍ଗେଁ କେତେ ସଏନ୍
ଯେନ୍‌କେ ଗଲେଁ ରଜାମାନେ ଦିଅନ୍ ପୂଜା ମାଏନ୍ । ॥୨୫॥

ଦେଖିଲେ ଦିନ୍‌ଏ କାହିଁଗଲା ଯଜ୍ଞଘୁଡା ନାଏଁନ ?
ଇହାଦେ ଈନ ଚରୁଥିଲା ଉଭିଁଗଲା ସାଏଁନ ? ॥୨୬॥

ରଘୁ କହେଲେ ଲଘୁ ହେଲା କା'ଣା କରିହେବା ?
ମୁହାମୁଁହୀ ସିନେ ନେସନ୍, ଚୁରେଇ ହେଲେଁ ନେବା । ॥୨୭॥

ଯଜ୍ଞର୍ କବାର୍ କାମ୍ ସବୁ ମାହାଲିଆ ହେଲାନ
ବାର ବରଷର୍ ତପିସା ପରେ ଶୁଖୁଆ ପୁଡାନେ ଗଲାନ । ॥୨୮॥

କେନ୍ତା କରି ହେସି ବଲି ଯୁବ୍‌ରାଜର୍ ଭାବନା
କାମ୍‌ଧେନୁ ଦେଲା ପୁଓର୍ ମାର୍ ଯିବା କାଏଁ କାମ୍‌ନା ? ॥୨୯॥

ନୁରୁନ୍ ନୁରୁନ୍ ପୂରୁବ୍ ଦିଗେଁ ପୁହୁଁଚି ଯୁବ୍‌ରଜା
ଦେଖିଲେ ଯାଏ ରଥଟେ ତାହିଁ ବଜ୍ର୍ ଚିହ୍ନର୍ ଧଜା । ॥୩୦॥

ଶାଗୁଆ ରଙ୍ଗର୍ ଘୁଡା ଦେଖି ଜାନ୍‌ଲେ ସେ ଇନ୍ଦର୍ ଆଏ
ପଛେଁ ଯୁଡା ଯଜ୍ଞ ଘୁଡା ସୁନ୍ଦର୍ ଆର୍ ସୁତର୍ ଥାଏ । ॥୩୧॥

ଆଗେଁ ଯାଇ ରଥ୍ ଅଟ୍‌କେଇ ରଜା ଦେଲେ ଛେକିଁ
କହେଲେ ଘୁଡା ନାଇଁ ଚିହ୍ନଲ ହଜାର୍ ଆଖିଁ ଦେଖି । ।।୩୨।।

ଦେବ୍‌ତା ହଇଁ କଲ କେନ୍ତା ଦଏଦ୍ ମେତାଲ୍ କାମ୍
ଯେନ୍ ଖଲିଥିଁ ଖାଏସ ସେଥିଁ ଥୁକ୍‌ଲ ଗାମ୍ ଗାମ୍ । ।।୩୩।।

ହବି ଦେସୁଁ ଯଜ୍ଞେ ପାଏବେ ବଲି ଦେବ୍‌ତା ମାନେ
ତମ୍‌କୁ ମିଶେଇ ଦେବ୍‌ତା ସବୁ ପାଏସ ଗୁଟେ ଠାନେ । ।।୩୪।।

ସେ ଯଜ୍ଞ-ଘୁଡା ଅଜ୍ଞ ଲେଖେଁ ଆନ୍‌ଲ ଚୁରେଇ
ଯଜ୍ଞ ପୂରା ହେବା କାଏଁ ଘୁଡା ନାଇଁ ଫିରେଇ । ।।୩୫।।

ରଘୁର୍ କଥା ଶୁନି ସରଗର୍ ରଜା ସର୍‌କିଁ ସର୍‌ମେ
କହେ ତୁମର୍ କଥା କଁଟା ମେତାଲ୍ ଗବେ ମର୍‌ମେ । ।।୩୬।।

ଯଜ୍ଞ ନୁହେ ବଡ ବଡ୍ ଆଏ ଯଶର୍ କଥା
'ପୁରୁଷୋତ୍ତମ' ଖାଲି ବିଷ୍ଣୁ ମହେଶର 'ପୌବ୍‌ମଥା' । ।।୩୭।।

ସେନ୍ତା ମୁଇଁ 'ଇନ୍ଦ୍ର' ଏକ୍‌ଲା ଶତ୍‌କ୍ରତୁ ଆଏଁ
ଆର୍ କିହେ ନାଇଁ ଦିଲୀପ୍ ଯଜ୍ଞ କଲା ଯାଏଁ । ।।୩୮।।

ଘୁଡା ଛାଡ୍‌ଲେଁ, ଛାଡ୍‌ବାକେ ପଡବା ନାଆଁ ଯଶ୍
ଦେବ୍‌ତା ହେଲେଁ ବି ଛାଡି ନୁହେଁ ନିଜର୍ ବଡ୍‌ତି ରସ୍ । ।।୩୯।।

ରଘୁ କହେଲେ ''ପିନ୍ଧୁଁ ମୋର୍ ପରାନ୍ ଛାଡ୍‌ଲେଁ ଯାଇ
ଲଡେଇ କରି ଛଡେଇ ନିଅ ଘୁଡା ସରଗ୍ ସାଇଁ । ।।୪୦।।

ରଘୁ ସାଙ୍ଗେଁ ମେଘ୍ ବାହନର୍ ଧୂମ୍ ଧଡ୍‌କା ଲଡେଇ
ଲାଗିଁଗଲା କିଏ ଛାଡ୍ ସି ସହଜେଁ ନିଜର୍ ବଡେଇ । ।।୪୧।।

କେତେ ଶସ୍ତର୍ କଟାକଟି କେତେ ଯେ ଶର୍‌ମରା
ହେଲେଁ ଭିତ କେଭେଁ ହେଲେଁ ନୁହନ୍ ଜିତା ହରା । ।।୪୨।।

ଶେଷେଁ ଇନ୍ଦ୍ର ରିଶ୍‌ମି ହଇ ପେଶ୍‌ଲା ତାର୍ ବଜର୍
ଘିଡ୍ ଘିଡାନୁ ଆସି ପଡ୍‌ଲା ଛାତିନେ ଯୁବ୍ ରାଜ୍‌ର୍ ।  ॥୪୩॥

ବଜ୍‌ରେଁ ଘାଏଲ୍ ଜବର୍ ରଘୁ ଭୁଗ୍‌ରେଇ ହଇଁ ପର୍‌ଲା
ଇନ୍ଦର୍ ବଏଲା ଇ ଲଢ଼େଇ ଇନୁ ଏକା ସର୍‌ଲା ।  ॥୪୪॥

କଲ୍‌ଠେଇ ଟିକେ କର୍ ପଲ୍‌ଟେଇ ଯୁବ୍ ରଜା ଉଠ୍‌ଲା
କରା ବରଷାର୍ ପରାସ ପାଶ୍‌ରି  କଦମ୍ କଢ଼ ଫାଏଁ ଫୁଟ୍‌ଲା ।  ॥୪୫॥

ଶର୍ ମୁନାନୁ ସୁନାର୍ ଶର୍‌ଟେ ସୁନା ସୀର୍‌କେ ସୁତ୍‌ରେଇ
ଅବ୍‌ହେଲାନ କହେଲେ ରଘୁ ଦିହୁଁ ଜାନ୍ ନେମି ଉତ୍‌ରେଇ ।  ॥୪୬॥

ଅମର୍‌ମାନେ ବି ମର୍‌ସନ୍ କହି କଥା କର୍‌ମି ଯାଚି
କେନ୍ତା କର୍‌ବୁ ଚିନ୍ତା କର୍ ଇ ଶର୍ ଗଲେଁ ଘାଏ ବାଜି ।  ॥୪୭॥

ମଘ୍‌ବା ହେଲା କାବା ଦେଖି ରଘୁର୍ ପରାକ୍ରମ୍
ଭୋଲ୍ ହଇଁ ଘାଏ ସୋର୍ ନାଇଁ ପାଏ ସଦ୍ ଆଏ କି ଭ୍ରମ୍ ।  ॥୪୮॥

ଯେନ୍ ବଜ୍‌ରେଁ ପର୍ବତ୍‌କର୍ ପଏଁଖ୍ ପାର୍‌ଲିଁ କାଟି
ଯେନ୍ ବଜ୍‌ରେଁ ବୃତ୍ରାସୁର୍‌କେ ମିଶେଇ ନେଲି ମାଟିଁ ।  ॥୪୯॥

ଯେନ୍ ବଜରର୍ ଶବ୍‌ଦେଁ ଘାଏ ପୁର୍ଥୀ ଯାଏ ଦୁଲ୍‌କି
ସେ ବଜ୍‌ରେଁ ରଘୁର୍ କାହିଁ ଛିର୍‌ଟେ ନାଇଁ ମଲ୍‌କିଁ ।  ॥୫୦॥

ଧଏନ୍ ଧଏନ୍ ରଘୁ ଧଏନ୍ ତୋର୍ ମାଁ ବାପ୍
ଘୁଡ଼ା ଛାଡ଼ି ଯାହା ମାଗବୁ ମାଗ୍ ଦେମି ସାଫ୍ ।  ॥୫୧॥

'ଅଶ୍ୱର୍ ବିନେ ଅଶ୍ୱମେଧର୍ ଫଲ୍ ମିଲ୍‌ବା ବଲିଁ
କହେଲେ ରଘୁ 'କହୁନ୍ ଯାଇ  ବାପାର୍ ନେ ମାତଲୀ' ।  ॥୫୨॥

ଶହେ  ଅଶ୍ୱମେଧର୍ ଫଲ୍ ପାଏବେ ଯଦ୍‌ରି ବାପା
କାଁ କରି ଇ ଲଢ଼ା ଯୁଝାର୍ ବଢୁଥିବା ଚାପା  ॥୫୩॥

ଜାନିଥିବ ଇନ୍ଦର୍ ରଜା ! ବାପର୍ ମନ୍ ଜାନି
ପୁଓ ନାଇଁ କରି ପାରେଲଁ ପୁଓ ଥିଁ କାଏଁ ମାନି ? ॥୫୪॥

ସବୁ କଥା ହେବା ବାବୁ ! ବଲିଁ ପଲାଲେ ଇନ୍ଦର୍
ରଘୁ ଫିର୍‌ଲେ ଅବଧ୍ ପୁରୀ ଯଶ୍ ଉଡ୍‌ଲା ସୁନ୍ଦର୍ । ॥୫୫॥

ଦିଲୀପ୍ ରଜା ପୁଓର ବୁଦ୍ଧି ବଲ୍ କୀର୍ତ୍ତି ଦେଖି
ବାନପ୍ରସ୍ଥ ନେଲେ ରାଏଜ୍ ଯୁବରାଜ୍ କେ ଟେକି । ॥୫୬॥

ରଘୁ ହେଲେ ଚକର୍‌ବର୍ତ୍ତୀ ଚଉଦିଗ୍ କରି ଜଏ
ହାର୍‌ଲା ରଜା ବି ବୋଧ୍ ହେଲେ କାହାରି ନାଇଁ ଭଏ । ॥୫୭॥

ମହାପୁରୁକୁଁ କର୍‌ତା ମାନି କରନ୍ ସବୁ କାମ୍
କାମେ ହାତ୍ ଗୋଡ୍ ମୁହଁ, ମନେ ମହାପୁରୁ ନାମ୍ । ॥୫୮॥

ସଂପଦ୍ ବଲିଁ ଭାବନ୍ ରଘୁ ନାମ୍ ଥିଲେଁ ସୋର୍
ପ୍ରଭୁର୍ ନାମ୍ ପାଶ୍‌ରି ନେଲେଁ ବିପଦ୍ ମହାଘୋର୍ । ॥୫୯॥

ତାକର୍ ରାଏଜ୍ ଯାକର୍ ଉଡ଼େ ସୁଖର୍ ସୁନା କୁକ୍‌ରା
ଯେ ହେଲେଁ ଭି ଲୁଭେଁ ହେବେ ସଂସାର୍ ପଡ଼େ ଡ଼କ୍‌ରା । ॥୬୦॥

ବିଶ୍ୱଜିତ୍ ଯଜ୍ଞ କଲେ ଈଶ୍ୱର୍ ଇଚ୍ଛା ମାନି
ଯାହା ମାଗ୍‌ଲେଁ ତାହା ଦିଅନ୍ ଲାଏକ୍ ଲୋକ୍ ଜାନି । ॥୬୧॥

ମାଗ୍‌ବାର୍ ଲୋକ୍ ସରିଥିଲେ ସରିଥିଲା ନ ଧନ୍
ପୁହୁଁଚି ଆଏଲେ କୌତ୍ସ ଋଷି ମାଗ୍‌ବେ କିଛି ମନ୍ । ॥୬୨॥

ବରତନ୍ତୁ ଋଷିବରର୍ ଶିଷ୍ୟ ଆନ୍ ସିଏ
ବ୍ରହ୍ମଜ୍ଞାନ୍‌ଥିଁ ଜିତ୍‌ବାର୍‌କେ ପାଶେଁ ନାଇଁ କିହେ । ॥୬୩॥

ଗୁରୁ-ବିଷ୍ଣୁର୍ ସେବା କରି ଚଉଦ ବିଦ୍ୟା ଅରଜି
ଦକ୍ଷିଣା ଦେବେ ଜାନି ବୁଝି ଗୁରୁଦେବ୍ କର୍ ମରଜି । ॥୬୪॥

ଛନ୍ଦ୍ କଳ୍ପ ଜ୍ୟୋତିଷ୍ ଶିକ୍ଷା ନିରୁକ୍ତ ବ୍ୟାକରଣ୍
ଛ'ହି ଅଙ୍ଗର୍ ସାଙ୍ଗେଁ ଚାରହି ବେଦ୍ ସମୀକରଣ୍ । ॥୬୫॥

ନ୍ୟାୟ୍ ମୀମାଂସା ଧର୍ମ୍ମ ଶାସ୍ତର୍ ପୁରାଣ୍ ତାର୍ ପରେଁ
ସବୁ ମିଶି ଚ଼ଉଦ ବିଦ୍ୟା ହେସି ଅଧ୍ୟୟନ୍ କଲେଁ । ॥୬୬॥

ଚ଼ଉଦ ବିଦ୍ୟାର୍ ଲାଗି ଚ଼ଉଦ କୋଟି ସୁନା ମୋହର୍
ଦକ୍ଷିଣା ଦେବେ ବଲିଁ ରାଜ୍‌ଦୁଆରେଁ ଋଷି ହାଜର୍ । ॥୬୭॥

ଯଜ୍ଞ ପରେ ରାଜ୍‌କୋଷ୍ ଜାନି ଥିଲା ଶୂନ୍ ଶାନ୍
କେନ୍ତା ମାଗ୍‌ବେ ଋଷି ଏଡ଼େ ବଡ଼୍ ମହତ୍ ଦାନ୍ । ॥୬୮॥

ଦୁଖ୍‌ମନା ହଇଁ ଫିରି ଯାଉଥିଲେ ଅପ୍‌ସରି
ଫିରେଇ ଆନ୍‌ଲେ ରଘୁ ସବୁ କଥା ଜାନିକରି । ॥୬୯॥

ଦିନାଦୁଏ କୁନୁଆଁ ରଖ୍‌ଲେ ପୂର୍‌ଲା ରାଜକୋଷ୍
ଚ଼ଉଦ୍ କୋଟି ସୁନା ପାଇ ଋଷିର୍ ମନ୍ ସନ୍ତୋଷ୍ । ॥୭୦॥

ଋଷି ଭାବ୍‌ଲେ ନେମି ଖାଲି ନାଇଁ ଦିଏଁ କାଏଁ କିଛି ?
କା'ଣା ଦେବେ ଭାବି ଭାବିଁ ମନ୍ ହଏ ବିଛି । ॥୭୧॥

ଯାହା ଦେଲେ କିହେ କାହାକେ ନୁହେ ଦିଅନ୍ ପରେ
ଉବେଲ୍ ଜାନି ବାଲ୍‌ମୀକି ମୁନି କଥା ବନ୍ଦ କଲେ । ॥୭୨॥



# ପାଉଚ୍-୫

# ରଘୁରଜା ଆର୍ କୌସ୍ ଋଷି କଥା

କଥା ଆରଂଭ୍ ନୁହେ ହଏ ରାମ୍-ଭଜନ୍ ସରିଛେ
ଓମ୍ ଶବ୍ଦର୍ ନିନାଦ୍‌ନେ ଆଶ୍ରମ୍ -ଆକାଶ୍ ଭରିଛେ । ।।୧।।

ବେଲ୍ ଥିଲା ମୁଡ଼୍ ଉପ୍‌ରେଁ ପବନ୍ ଥିଲା ଗରମ୍
ଶାଗୁଆ ପତର୍ ଶୀତଲ୍ ନିଶାସ୍ ଛାଡ଼ି କର୍‌ଲେ ନରମ୍ । ।।୨।।

ଗଛମାନ୍‌କର୍ ପାଚ୍‌ଲା ପତର୍ ଯେନ ଯେନ୍ତା ଝରୁଛନ୍
ଅଶୁଦ୍ଧ୍ ଭାବ୍‌ନା ଥିଲେଁ ସେନ୍ତା ମଝ୍ ଆକାଶୁଁ ପରୁଛନ୍ । ।।୩।।

ଯାହା ବକ୍‌ସୁଁ ଯାହା ଭାବ୍‌ସୁଁ ସେ ନିର୍ ଆକାଶ୍ ନେ
ରହିଥିସନ୍ ଯା`ନ୍ ଖାଲି ଭାବ୍‌ନାର୍ ପ୍ରକାଶ୍‌ନେ । ।।୪।।

ରାମର୍ ପୂର୍ବପୁରୁଷ୍ କଥା ମୁନି -ମୁହୁଁ ବାହାରୁଛେ
ଶୁନ୍‌ଲା ଲୁକର୍ କାନୁ ହଇ ଆକାଶ୍ ଯାକର୍ ଠହୁଁରୁଛେ । ।।୫।।

ମୁନି କହେଲେ ଶୁନିଥିଲ ରଘୁ-କଥା କାଏଲ୍
ରଘୁ ଗଲେନ କେଭୁଁ, ନାଆଁ ନୁହେ ଯାଏ ଟାଏଲ୍ । ।।୬।।

ରାମ୍ ଆ'ନ ତ ରଘୁ ରଜାର୍ ପୁର୍‌ଖା ପାତିର୍ ଅଂଶ୍
ନାଆଁ ରଘୁନାଥ୍ ତାକର୍ କୁଲ୍ ରଘୁବଂଶ୍ । ।।୭।।

ସୂର୍ଯ୍ୟ ବଂଶର୍ ସବୁ ରଜାକୁଁ ପାଶ୍‌ରି ହେବା ପଛେ
ରଘୁର୍ ନାଆଁ ରାମର୍ ନାଏଁ ଯୁରା ହଇ ଅଛେ । ।।୮।।

ରାମର୍ ନାମେ ରଘୁର୍ ନାମ୍ ଲିପି ହଇଛେ ଗୁଟେ
ରାମ୍‌ର୍ ବିହେଁ ସଥେଁ ଯେନ୍ତା ରଘୁ ମାଉଁସ୍ ଫୁଟେ । ।।୯।।

ପାଟ୍‌ଲା ମାଟିର୍ ଗଛ ମେଡାଲ୍ ପିଲାଟାକ ବଢୁଛେ
ରେଙ୍ଗାଲ୍ ନର୍‌ଜା ଉଲ୍‌ହା ଜାଗା ପାଇଁ ପର୍ ଛାଡୁଛେ । ||୩୨||

ରୁଠା ଦିହେଁ ପୋଟ୍ ବିଚାର୍ ପଠା ଯୁଆନ୍ ହେଲା
ବିଦର୍ଭ ଦେଶର୍ ଦୂତ୍ ଆସିଁ ରଘୁରାଜ୍‌କୁଁ କହେଲା । ||୩୩||

"ଆମର୍ ରଜା ଭୋଜ୍ ତାକର୍ ବହେନ୍ ଇନ୍ଦୁମତୀ
ପର୍‌ତେ କାହିଁ ଯିବ କହେଲେଁ କେତେ ରୂପ୍‌ବତୀ । ||୩୪||

ତାକର୍ ବିହାର୍ ଲାଗି ସ୍ୱୟଂବର୍ ସଭା ହେବା
ଯୁବ୍‌ରାଜ୍ ଗଲେଁ ତାହିଁ ଭାବ୍ ଲେନ୍ ଦେନ୍ ରହେବା । ||୩୫||

ଅଜ ଗଲେ ସ୍ୱୟଂବର୍‌କେ ପାଏଲେ ବରନ୍ ମାଲି
ଇନ୍ଦୁମତୀର୍ ସଙ୍ଗେ ସିନ୍ଧୁର୍ ଝି ବି ଆଏଲେ ଚାଲି । ||୩୬||

ଧନ ଦଉଲତ୍ ଯେତ୍‌କି ଦାନ୍ ଖଏରାତ୍ ତାହୁଁ ଜହ
ପ୍ରୂଓ ପର୍‌ଜାର୍ ପରଶଁସା ହଏ ଅହରହ । ||୩୭||

ଯୁବ୍‌ରାଜ୍‌କର୍ ପାର୍‌ଲା ପନ୍‌କେ ଦେଖି ରଘୁରାଜା
ମର୍‌ତର୍ ସୁଖ୍ ଚିଟା ଲାଗ୍‌ଲା ଚାଖ୍‌ବେ ସର୍ଗର୍ ମଜା । ||୩୮||

ଅଯୋଧିଆର୍ ରାଏଜ୍‌ଭାର୍ ଅଜର୍ ବେକେଁ ଗଲାଲେ
ସାଁପର୍ ଜୋଗ୍ ଛାଡ୍‌ଲା ଲେଖେଁ ଦିହ୍‌କେ ଛାଡ଼ି ପଲାଲେ । ||୩୯||

ଅଜରାଜ୍‌କୁଁ ପାଇ ପୃର୍ଥୀ ଫଲାଏ ଫସଲ୍ ରତନ୍
ରାନୀ ଜାନି ପୁଓ ରତ୍‌ନଟେ ଥୁଇଲେ କରି ଯତନ୍ । ||୪୦||

ରାଏଜର୍ ଶିଘା ଜଉତିଷ୍ ସାଙ୍ଗେଁ ମିଶି ଯୋଗୀ ମୁନି
ଜାତକ୍ କର୍‌ଲେ ଗନା ଗୁପା କରି ହରି ଗୁନି । ||୪୧||

ଜଉତିଷ୍ ମାନେ କହେଲେ ସଥେଁ ଇ ପିଲା ତାର୍ ରଥ୍
ଦଶ୍‌ହି ଦିଗ୍‌କେ ବାହିପାର୍‌ବା ନାଁ ହେଉ ଦଶ୍‌ରଥ୍ । ||୪୨||

ଯୋଗୀ ମୁନିର୍ ମନେ ଇନ୍ଦ୍ରିୟ ମାନେ ରଥ୍ ଆ'ନ୍
ଦଶ୍ ଇନ୍ଦ୍ରିୟ ବଶ୍ ଦେଖେଇ ନାଇଁ ପାରନ୍ ଟାନ୍ । ॥୪୩॥

ସଭେ ବିଚାର୍ କଲେ ପିଲାର୍ ନାଁ ହେଉ ଦଶରଥ୍
କାହିଁ ଦଶ୍‌ଟା ମୁଣ୍ଡେ ପାପ୍ କରେ  କସ୍‌ରତ୍ । ॥୪୪॥

ଦଶ୍ ମୁଣ୍ଡିଆକେ ବଶ୍ କର୍‌ବା ଜନ୍‌ମି ଇଟାର୍ ଅଂଶ୍ରୁ
ଦେବ୍‌ତା କବାର୍ ମୁନୁଷ୍ କର୍‌ବା ସାଙ୍ଗେ ନେଇ ପଶୁ । ॥୪୫॥

ଟାକର୍ ବଲେଁ ମରତ୍ ଠାନୁ ସରଗ୍ ନୁହିବା ଧୂର୍
ଅଯୋଧ୍ୟାର୍ ସେ ହେବେ ରଜା ଶାସନ୍ ଖଣ୍ ମଧୁର୍ । ॥୪୬॥

ଶଚି ନେଇ ଇନ୍ଦ୍ର ବୁଲ୍‌ଲା ଲେଖେଁ ନନ୍ଦନ୍ ବନେ
ଇନ୍ଦୁମତୀ ନେଇ ଅଜ ବୁଲନ୍ ଆନନ୍ଦ ମନେ । ॥୪୭॥

ରାଏଙ୍କେଁ ଟାକର୍ ଅଭାବ୍ ନାଇଁ ସବୁ ଦରବ୍ ପୂରିଛେ
ଋତୁ ଜାନି ରାଜ ବଗ୍‌ଚା ସବୁ ଫୁଲ୍ ଫଲ୍ ଭରିଛେ । ॥୪୮॥

ବଗ୍‌ଚା-ସୁନ୍ଦର୍ ପନେ ଇନ୍ଦୁମତୀ ହଜନ୍ ଘାଏ
ଇନ୍ଦୁମତୀର୍ ରୂପର୍  ମଦେଁ ଅଜ ହଇଛନ୍ ବାଏ । ॥୪୯॥

ଉପରୁଁ ଇନ୍ଦୁମତୀର୍ ଛାତିଁ ଫୁଲ୍‌ମାଲ୍‌ଟେ ପର୍‌ଲା
ପଡ୍‌ତେ ସାଏର୍ ଘଡ୍‌କେଁ ଜୀବନ୍-ଚେଚରେ ପିଞ୍ଜ୍‌ରା ଫାର୍‌ଲା । ॥୫୦॥

ଚେଚରେ ଗଲା ଉଡି ପିଞ୍ଜରି ପର୍‌ଲା ଠାନେ ପରିଛେ
ମୁହଁ କାନ୍ ସବ୍ ଦକ୍ ଦକଉଛେ କିଏ କହେବା ମରିଛେ । ॥୫୧॥

ହେମ୍ କାକର୍ ଦିହ ଟାମ୍‌ଡି ଅଜ ଅଘୋର୍ କାନ୍ଦୁଛନ୍
କେଡ୍ରେ ସୁଧୀର୍ ହଇ ବି କାଏଁ ମନେ ଧୀରଯ୍ ବାନ୍ଧୁଛନ୍ ? ॥୫୨॥

ଦିହ୍‌କେ କରେ ପଥର୍ ପଥର୍ ଫଟାଏ ରଜାର୍ କନ୍ଦନା
କେଡେ କରୁଣ୍ ସୁରେଁ ଦୁଖ୍ ଶୁନ୍‌ଏ ନିଜର୍ ବନ୍ଦନା । ॥୫୩॥

ରାନୀର୍ ଗୁନ୍ ଗୁନି ରଜାର୍ କେତେ କନ୍ଦା ବୁବା
ହେଁକେଇ କାନ୍ଦନ୍ ହଇଁ କେତେ କୁଦ୍‌କୁତା ରୁବ୍ ରୁବା । ॥୫୪॥

ବଶିଷ୍ଠ କର୍ ବୋଧ୍ ବାଧ୍ ବୁଝା ଶୁଝା କଥା
ଜାନ୍‌ବାର୍ ଅଜ ଆଏଜ୍ ଅଜାନ୍‌ବାର୍ ଲେଖେଁ ଅଥା । ॥୫୫॥

"ମରିନାହିଁ ରାନୀ ସରିଗଲା ମରତ୍ ରହନି
ଅମର୍‌ପୁରୁଁ ଆସି ଥିଲେ ଅପ୍‌ସରୀ ନାଁ ହିରନୀ । ॥୫୬॥

ତୃଣବିନ୍ଦୁ ଋଷିର୍ ତପ୍‌କେ ଇନ୍ଦ୍ର ଡ଼ରି ମରି
ତପ୍ ଭାଙ୍ଗ୍‌ବାକେ ପଠାନ୍ ଇନ୍ଦ୍ର ହିର୍‌ନୀ ଅପକ୍ଷରୀ । ॥୫୭॥

ଋଷି ଦେଲେ ଅଭିଶାପ୍ ଅମର୍ ପୁରର୍ ଲାଏକ୍
ନୁହୁ ତୁଇଁ ମରତ୍ ଭୂଇଁ ଥିବୁ ସେ ଦିନ୍ ଯାଏକ୍ । ॥୫୮॥

ଯବତକ୍ ଇ ପୁରର୍ ଫୁଲ୍ ଛିଇ ନାଇଁ ପାର୍‌ବୁ
ଅମର୍ ହଇଁ ବି ମରତ୍ ପୁରେଁ ଦିନ୍ କାଲ୍ ତୋର୍ ସାର୍‌ବୁ । ॥୫୯॥

ସେ ଅପ୍‌ସରୀ ଶାପର୍ ବଲେଁ ହେଲା ତୁମର୍ ରାନୀ
ତମର୍ ବଂଶେଁ ମିଶେଇ ପାର୍‌ଲା ଅମର୍ ରକତ୍ ଆନି । ॥୬୦॥

ନାରଦ୍ ଯାଉଥିଲେ ଇ' ଦେଇଁ ବୀନାର୍ ଫୁଲ୍ ମାଲ୍
ରାନୀର୍ ଦିହେଁ ପରି ଫିଟାଲା ଅପ୍ସରୀର୍ କପାଲ୍ । ॥୬୧॥

ନାଇଁ ଦେଖୁଛ ମାଲାର୍ ଫୁଲ୍ ଦର୍ ଦରଉଛେ ତାଏଲ୍
ଅମର୍ ପୁରର୍ ଫୁଲ୍ ନୁହେ, କହେବା କିଏ ଭାଏଲ୍ ? ॥୬୨॥

ରାନୀ ଗଲେ ତାକର୍ ବାଟେଁ ନିଜର୍ ବାଟେଁ ରହ
ଭବିତବ୍ୟତା ନାଇଁ ବଦ୍‌ଲେ ଭାଲ୍‌ନି କଲେଁ ଜହ । ॥୬୩॥

ପିଲା ତମର୍ ଯୁଆନ୍ ହଇ ସିଆନ୍ ମେତାନ୍ ହେଲେ ନ
ବନ୍‌ଏ ବଲି ଝନ୍‌ଏ ନୁହେ ରାଏଜ୍ ସାରା କହେଲେ ନ । ॥୬୪॥

ରାଜ୍ ଶାସନ୍ ଶିଖେଇ ନିଅ ବିହା ଚୂରା ସାରି
ଗଲା ସଲା କଥେଁ ଆଉର୍ କେତେ ହେବ ଘାରି । ॥୬୫॥

ବଶିଷ୍ଠ କଥା ଶୁନି ରଜା ତୁନ୍ ପରିଁ ରହେଲେ
ବିଧିର୍ ଦେନ୍ ଜାନି ଦୁଖ୍ କଲ୍‌ଠେଇ କରି ସହେଲେ । ॥୬୬॥

ସୂର୍ଯ୍ୟ ବଂଶର୍ ରଜାମାନେ ପୁଓଙ୍କୁ ରାଏଜ୍‌ଭାର୍
ସଁପି ବୁଢ଼ାବେଲେଁ ଯାଏସନ୍ ରାଏଜ୍କୁ ହଇ ପାର୍ । ॥୬୭॥

ଦଶରଥ୍‌କର୍ ଲାଗି କନିଆଁ ଲାଗେ ଖୁଜା ନୁରା
କରନ୍ ବିହା ସର୍‌ଲେଁ ସଁପି ନେବେ ରାଏଜ୍ ପୂରା । ॥୬୮॥

ଲବ କହେ, କହେସ ବାବା, ସୂରୁଯ୍ ବଂଶ ବଲି
ସତେଁ କେବେଁ ସୂରୁଯ୍ ଆଏଲେ ମୁନୁଷ୍ ରୂପ୍ ଧରି ? ॥୬୯॥

ରଜା ହଇଥିଲେ କାଏଁ ଅଯୋଧ୍ୟା ସଂସାରେଁ
ରାଏଜ୍ ଛାଡ଼ି ବାକି ଜଗତ୍ ଥିବା ତ ଅଁଧାରେଁ ? ॥୭୦॥

ଦିଲୀପ୍ ରଘୁ ଅଜ ବାଗିର୍ ଆର୍ କେନ୍ କେନ୍ ରଜା
ସୂରୁଯ୍ ବଂଶ୍‌କେ ଚଖେଇଥିଲେ ଯଶ୍ କୀର୍ତ୍ତିର୍ ମଜା । ॥୭୧॥

ଶୁନ୍‌ବାର୍ ଲାଏକ୍ ଆମେ ଯଦ୍‌ରି କହେତ ବାବା ଘାଏ
ବାଲ୍‌ମୀକି ମୁନି କହେଲେ ବାବୁ ! ନୁକୋ ପ୍ରଶ୍ନ ଆଏ । ॥୭୨॥

ଆଏଜ୍ ଗଲାନ ସମିଆ ସଭେ ଭଜନ୍ ସାର ଯିମା
କାଲ୍‌ହିର ଆଏଲେଁ ଇ କଥାର୍ ପହେଲେ ନେମା ଜିମା । ॥୭୩॥



# ପାଉଚ୍-୬

## ଦୁର୍ବାସା ଅମ୍ବରୀଷ କଥା

କର୍ ଲେହେଁଟାଏ ଦିନ୍, ଜାନି ରାଏତ୍ ଯାଏ ସରି
ବନ୍ଧା ବାଗିର୍ ଅଁଧାର୍ ଯାଏ ଉକିଆ ଆସେ ଝରି । ॥୧॥

ଦିନ୍ ଉଠୁଛେ ଫୁଲି ଫୁଲି ରାଏତ୍ ଯାଉଛେ ଉସ୍‌ରି
ନୀଲ ଆକାଶ୍ ଗର୍ଭୁ ଆସେ ଲାଲିଆ ବେଲ୍ ନିସ୍‌ରି । ॥୨॥

ଚେ଼ରେର୍ କଁଠେ ହରେକ୍ ରକମ୍ ଗୀତ୍ ଶୁଭେ ସୁରୁତ୍
କୁଲିହା ମୁହେଁ କହେ ରାଏତ୍ ହେଲିଁ କୁରୁତ୍ କୁରୁତ୍ । ॥୩॥

ଫୁଲର୍ ଉଠେଁ ମୁଲ୍‌କି ହଁସା ହଁସେ ପୁର୍‌ଥୀ ରାନୀ
ପବନ୍ ବୁହେ ଆଶ୍ରମ୍ ଆକାଶ୍ ଫୁଲ୍ ବାସ୍‌ନା ସାନି । ॥୪॥

ତହିଁର୍ ଭିତ୍‌ରେଁ ଗହୀର୍ ସୁରେଁ ବେଦ୍ ମନ୍ତର୍ ଗୁଁଜ୍‌ରେ
ମୁନି ପିଲାକର୍ ଗଲାର୍ ସୋର୍ ସାରା ଆକାଶ୍ ଘୁମ୍‌ରେ । ॥୫॥

ଉଦ୍‌ଲା ବେଲ୍‌କେ ମୁଦ୍‌ଲା ଆଖିଁ ସଭେ କଲେ ଯୁହାର୍
କୁଶ୍ ଆସ୍‌ନେ ବସି ଋଷି ରାମେନ୍ କଲେ ବାହାର୍ । ॥୬॥

ରାମ୍‌ର୍ ନାମେ ହରିବୋଲ୍ ଦେଇ କର୍‌ଲେ କଥା
ମୁନି ଛୁଆକର୍ ସାଙ୍ଗେ ଶୁନି ବସ୍‌ଲେ ଗଛ୍ ଲତା । ॥୭॥

ସୁରୁଯ୍ ଦେବର୍ ତୁସ୍ତିକରି କହେଲେ ''ଦିବାକର୍ !
ତୋର୍ ବଅଁଶର୍ କଥା କହୁଛେଁ ମତେ ଦୟାକର୍ । ॥୮॥

''ବ୍ରହ୍ମାର୍ ପୁଓ ମରୀଚ୍ ତାକର୍ ପୁଓ କଶ୍ୟପ୍ ଋଷି
ଦିତି ଅଦିତି ଦୁହି ବହେନ୍ ବିହା ହଇଁ ଖୁସି । ॥୯॥

ଦିତିର୍ ଗର୍ଭୁଁ  ଜାତ ହେଲେ ଯେତ୍କି ସବୁ ଦଏତ୍
ଅଦିତିର ପୁଓ ଦେବତା ତାକର୍‌ନେ ଅନାଏତ୍ । ॥୧୦॥

ମାରି ଉଷତ୍ ଦଏତ୍, ହାରି ଦେବ୍‌ତା ଅଧିପରାନ୍
କାନ୍ଦି କାନ୍ଦି ଅଦିତି ମାଁ ହଟ୍‌ହଟା ହଏରାନ୍ । ॥୧୧॥

ଉସ୍ତାଜ୍ ବୁଲାନ୍ ଦଏତ୍ ନିସ୍ତେଜ୍ ଦିଶନ୍·ତାକର୍ ପୁଏ
ଦୁଏଲ୍ ବିନୁଆଁ ଦେବତା ଯେନ୍ତା ମୂଷା ଦେଖଲେଁ ଗୁଏ । ॥୧୨॥

ପୁଓର୍ ଦଶା ଦେଖି ମା କରି ନାଇଁ ପାରେ ସହ
ଅଦିତିର୍ ଅତିଶୟ ଦୁଖ୍ ଆଖିଁ ହର୍ମେଷ୍ ଲହ । ॥୧୩॥

ମୋର୍ ପୁଓକର୍ ଦୁର୍ଦ୍ଦଶା ତ ଦେଖି ହେବାର୍ ନାଇଁ
ସାହା ଭାଏଲ୍ ହେବା କିଏ କାହାକେ କହେସି ଯାଇଁ । ॥୧୪॥

ଓଜର୍ ଘରାଗୁଡାଁ ସୂରୁଯ୍ ତେଜର୍ ସମୁଦର୍
ସତ୍ ଧର୍ମର୍ ମୂରତି  ନାଇଁ ମାନ୍ ଆଡ଼ମ୍ବର । ॥୧୫॥

ବାଟୁଁ ଉବାଟ୍  ଯାଆନ୍ ନାଇଁ ଝୁକେ ନାଇଁ ବେଲା
ହେଁଥିର୍ ଲାଗି ବେଲ୍ ବର୍ଲି କିଏ ନାଆଁ ଦେଲା । ॥୧୬॥

ନିଦକ୍ ନିଡ଼ର୍ ସର୍‌ବଦା ପଖିପାତର୍ ନାଇଁ ଟିଖେ
ବଡ଼ନୁ ସାନ୍ ସମକୁଁ ସମାନ୍ ନଜ୍‌ରେଁ ରଖି ଲିଖେ । ॥୧୭॥

ପୁର୍‌ଥୀ   ରାନୀର୍ ପୀର୍‌ତି ଡୁରେଁ ହଏ ହର୍‌ମେଷ୍ ବନ୍ଧା
ସାରା ଜଗତର୍ ଆଁଖିର୍ ପାରା ନେହେଲେଁ ସଭେ ଅନ୍ଧା । ॥୧୮॥

ସମିୟା ଉପ୍‌ରେଁ ଉଦେ ବୁଢ଼େ ଧରମ୍ ଦେବ୍‌ତା ଆଏ
ତାହାକୁଁ ଡ଼ାକ୍‌ଲେଁ ସାହା ହଇ ପୁଓକୁଁ ରଖିତେ ଘାଏ । ॥୧୯॥

ଏନ୍ତା ଭାବିଁ ଶରଣ୍ ପଶ୍‌ଲେ ସୂରୁଯ୍ ଦେବତାର୍ ନାମେ
ଏକ୍ ମନ୍ ଏକ୍ ଚିତ୍ ମନ୍ ନାଇଁ ନ କେନ୍ କାମେ । ॥୨୦॥

ବିନ୍‌ତି କରି ଦିନ୍‌ପତିନେ ମନ୍‌ର୍ ଦୁଃଖ୍ ଗୁହାରନ୍ ।
ମୋର୍ ପୁଓକୁଁ ରଖ ବଲିଁ ଅନୁଖନୁ ଯୁହାରନ୍ । ॥୨୧॥

ଭଗାରି ହେଲେ ଭାଏ ହେଲେଁ ବି ମୋର୍ ବହନିର୍ ପୁଏ
ସୁଖ୍ ହେଲା ନ ସପନ୍ ମତେ ଦୁଖ୍ ଅଠିପର୍ ଦୁହେ । ॥୨୨॥

ସହସ୍ରାଂଶୁ ତୁମେ ସୂର୍ଯ୍ୟ ! ହଜାରେ ଭାଗୁଁ ଭାଗେ
ହଇ ଆଏଲେଁ ଦୁଖ୍ ରାକ୍ଷସ୍ ବର୍‌ଡ଼ା ବାନ୍ଧିଁ ଭାଗେ । ॥୨୩॥

ହେ ମହାପ୍ରୁ ! ବାଟ୍ ଦେଖୁଛେଁ ଆସ ନି ଯେ ଘାଏ
ନିସାହା ମୋର୍ ଛୁଆକୁଁ ରଖ ମାନି ପିଠିର୍ ଭାଏ । ॥୨୪॥

ଅଦିତିର୍ ଗରଭ୍ ହେବାର୍ ପର୍‌ଲା ଯହୁଁ ଜନା
ଉପାସ୍ ବର୍‌ତେଁ ହଜି ଗଲେ  ହଇ ଉଷଦ୍ ମନା । ॥୨୫॥

କଶ୍ୟପ୍ ଋଷି କହନ୍ ଦେବୀ ! ଗର୍‌ଭେଁ ଅଛେ ଛୁଆ
ମାତିନେବ ନାଇଁ ଖାଇ ପିଇ ଅଚାବୁହା । ॥୨୬॥

ମୁର୍ତ୍ତି ହାତେଁ ସଁପିନେବ ? ଗର୍ଭର୍ ଇ ଅଣ୍ଡ,
ଛୁଆ ଯେଭେଁ ଜନମ୍ ନେଲା ନାଁ ହେଲା ମାର୍ତ୍ତଣ୍ଡ  । ॥୨୭॥

ଅପାର୍ ତେଜ୍ ଧରି ଜନମ୍ ନେଲା ଯେନ୍ ପିଲା
ଅସାର୍ କରିନେଲା ଅସୁର୍ କର୍ ଅନ୍ନିୟେ ଲୀଲା । ॥୨୮॥

ଯାହାର୍ ସେବା କରି ପୁଓ ପାଇଥିଲେ ମାଆଁ
ସେବାର୍ ସୁରେଁ ବେଭାର୍ କରେ ଡ଼ାକି ତା'ର ନାଆଁ । ॥୨୯॥

ଗର୍‌ଭେଁ ଥିଲେଁ ଛୁଆ ମାଁ ଯାହାର୍ ଗୁନ୍-ଗ୍ରାମ୍
ଭାବ୍‌ସି ସେ ସବୁ ଧରି ଆସେ ସେ ସନ୍ତାନ୍ । ॥୩୦॥

ସୂରଯର୍ ତେଜ୍ ସୂରଯର୍ ଗୁନ୍ ଧରିଁ ଆଏଲା ପୁଓ
ସୂର୍‌ଯର୍ ନାଁ ଧରି ଡ଼ାକ୍‌ଲେ ସହଜେଁ କଲା 'ଓ' । ॥୩୧॥

ବିହା ହେଲା ପିଲା ଫେର୍ ତିନ୍ ତିନ୍‌ଟା ରାନୀ
ସୂରଯ୍ ବଂଶ୍ ଯା'ର୍ ନୁ ଜନମ୍ ରାଣ୍ଡୀ ନାଁ ଜାନି । ॥୩୨॥

ପୁଓ ଗୁଟେ ହେଲା ନାଆଁ ବୈବସ୍ୱତ ମନୁ
ମାନବ୍ ବଏଲେ ତାକୁଁ ଯାହା ଜନ୍ମ ନେଲେ ତାର୍‌ନୁ । ॥୩୩॥

ତାକର୍ ଆଗୁଁ ମୁନୁଷ୍ ଜାଏତ୍ କା ନାଆଁ ଥିଁ ଡ଼କା
ହଉଥିଲେ କିଏ ଜାନ୍‌ଏ କହି ନୁହେ ପକ୍କା । ॥୩୪॥

ସୂରୁଯ୍ ବଂଶେଁ ରାଜ୍ କର୍‌ଲେ ରଜା ଶହ ଶହ
ଜନ୍ ଦୁ ଛାଡ଼ି କାଲ୍ -ସମୁଦରେଁ ହଜି ଗଲେ ଜହ । ॥୩୫॥

ବନ୍‌ଏ କାମ୍ କଲେଁ ଜନ୍‌ଏ ଗଲେଁ ବି ସେ ମରି
ମାଏଟ୍ ହେଲେଁ ବି ଦେହେ, ରହେ ଯଶର୍ ଶରୀର୍ ଧରି । ॥୩୬॥

ଜନମ୍ ନେଇ ଜଗତର୍ ନାଇଁ କଲେଁ ଉପକାର୍
ଆଏବା ଯିବାର୍ କେ ପଚାରେ ଇଟା ଆଏ ସଂସାର୍ । ॥୩୭॥

ଭଲ୍ ରଜାର୍ ବଲ୍‌ବଫୁ ବୁଦ୍ଧି ଜ୍ଞାନ୍ ଧରମ୍
ଆଚାର୍ ବିଚାର୍ ସୁକୃତ୍ ଆର୍ ଅର୍ଜିଲା ଶୁଭ କରମ୍ । ॥୩୮॥

ଆସି ମିଶେ ସୂରୁଯ୍ ବଂଶର୍ ରକତ୍-ଗଙ୍ଗାଧାରେଁ
ବୁହେ ଅବ୍‌ତକ୍ ସଭେ ଗଲେଁ ବି ସେ ପାରେଁ । ॥୩୯॥

ସେମାନ୍‌କର୍ ତ ଅଶେଷ୍ କଥା କହି ହେବା ଟିକେ
ଲାଖ୍ ଲାଖ୍ ସେ କଥା ଭିତ୍‌ରୁଁ ଲିଖି ହେବା ଲିଖେ । ॥୪୦॥

ନାଇଁ ଛାଡ଼ି ବଇବସ୍ୱତ୍ ମନୁର୍ କଥା କିହେ
ଦୁଇ ଗୁଡ଼ିଆ ଜୀବ୍‌ଟାକେ ଯେ ମୁନୁଷ୍ ପନ୍ ଦିଏ । ॥୪୧॥

ଇ ମୁନ୍‌ଷର୍ ଆଚାର୍ ବେଭାର୍ ଚାଲ୍ ଚଲନ୍ ନେଇ
ନିୟମ୍ ବାନ୍ଧି ସୁମୃତି ନାଏଁ ସେ ହିଁ ଗଲା ଦେଇ । ॥୪୨॥

ଇକ୍ଷୁ ଭିତରେଁ ଜନମ୍ ରଜା ଇକ୍ଷ୍ୱାକୁ ନାଁ ତାର୍
ଚାଲ୍ ଚ଼ଲନ୍ ସୁଆଦ୍ ସବ୍ କୁଶେର ପର୍‌କାର୍ । ।।୪୩।।

କକୁସ୍ଥ୍ ନାମେ ରଜା ଆକାଭୂତ୍ ତାକର୍ କବାର୍
ସର୍ଗର୍ ରଜା ଅସୁର୍ ମାରେଁ ଥିଲା ଅପାର୍‌ବାର୍ । ।।୪୪।।

ଇ ଦିନ୍‌ତକ୍ ମୁନୁଷ୍ ଆଶ୍‌ରୁ ଥିଲା ଦେବ୍‌ତା ଦୟାକେ
ଦେବ୍‌ତା ଆସି ଆଶ୍‌ରା ମାଗ୍‌ଲେ କକୁସ୍ଥ୍ ବାହାର୍ ଛାୟାକେ । ।।୪୫।।

କକୁସ୍ଥ୍ କହେଲେ ଅସୁର୍ ମାନ୍‌କର୍ ମହାଦେବ୍‌କୁଁ ଡ଼ର୍
ମହାଦେବ୍ ବଶେଁ ଲଢ଼ଲେଁ ଜିତ୍ ହେବା ନ ଆମର୍ । ।।୪୬।।

ଇନ୍ଦ୍ର ହେଲେ ଷଁଢ୍ ବଲଦ୍‌ବେ ତା'ର୍ ଚୂଳେଁ ବସି
ଖିନ୍ ଖିନ୍ଦାଲି ହେବେ ଅସୁର୍ ଲଢ଼େଇ କଲେଁ କଷି । ।।୪୭।।

ଷଁଢ଼ର୍ ଚୂଲ୍‌କେ କକୁଦ୍ ବଲ୍‌ସନ୍ ତାହିଁ ବସ୍‌ଲେ ବଲିଁ
ଇ ରାଜାର୍ କକୁସ୍ଥ୍ ନାଆଁ ଆନ୍ ମହାନ୍ ବଲୀ । ।।୪୮।।

ଇ କୁଲର୍ ବିଷ୍ଣ ଭକତ୍ ରଜା ଅମ୍ବରୀଷ୍
ଦୁର୍ବାସା ଦିନ୍‌ଏ କତ୍‌ରାଲେ ଦୁର୍ଭୀକ୍ଷା ନେଇ ରିଶ୍ । ।।୪୯।।

ଜଟା ହିଟେଇ ରଜାର୍ ଆଡ଼୍‌କେ ପଠାଲେ କରି କାତ୍ୟା
ଜୁଏ ଆକାରେଁ ଗଲା ସିଏ କର୍‌ବାର୍ କେ ହତ୍ୟା । ।।୫୦।।

ଆଚ଼ମ୍ବିତ୍ ଅମ୍ବରୀଷ୍ ସଡ଼କ୍ ଦମ୍ ଠିଆ
ବିଷ୍ଣର୍ ଦମ୍‌ହେଁ ବିଷ୍ଣ ଭକ୍ତର୍ କେନ୍ ହଲ୍‌ସି ହିଆ ? ।।୫୧।।

ବିଷ୍ଣ ଜାନି ଭକ୍ତର୍ ଦଶା ହେଲେ ପର୍‌ସନ୍
ସେ ତୁରତି ପୁହୁଁଚି ଆଏଲା ଚ଼କ୍ର ସୁଦର୍‌ଶନ୍ । ।।୫୨।।

ଚ଼କ୍ର ଆସି ଦୁର୍ବାସାର୍ ପାଶେଁ ହଉନ୍ ଠିଆଦ୍
ହଜାର୍ ଆରାର୍ ଚ଼କ୍ର ଦେଖି ରଷି ଇଆଡ଼୍ ସିଆଡ଼୍ । ।।୫୩।।

ଜୀବନ୍ ଡ଼ରହେ ପବନ୍ ଲେଖେଁ ଋଷି ଯାହିଁ ପଲାନ୍
ତପର୍ ଶକ୍‌ତି ବିଷ୍ଣୁ ଭକ୍‌ତି କେ ବର୍‌କସ୍ ଯୁଲାନ୍ । ॥୫୪॥

ଶିବ୍ ବ୍ରହ୍ମାର୍ ପାଶ୍‌କେ ଗଲେ ଦେଲେ ମୁହୁଁ ମୁରି
କହେଲେ ବିଷ୍ଣୁନିକେ ଯଅ କାହାକେ ନାଇଁ ନୁରି । ॥୫୫॥

ବିଷ୍ଣୁ ନିକେ ପୁହୁଁଚିଲେ କି ବିଷ୍ଣୁ କହେଲେ ମୁନି !
ଭକତ୍ ଉପ୍‌ରେଁ ଶକ୍‌ତି ମୋର୍ ହଇଥିସି ବୁନି । ॥୫୬॥

ମତେ ମୋର୍ କର୍‌ସି ଯେ ହେସିଁ ତାର୍ ଦାସ୍
ଯାହିଁ ଥିଲେଁ ବି ନଜର୍ ମୋର୍ ନାଇଁ ଛାଡ଼େ ତାର୍ ପାଶ୍ । ॥୫୭॥

ଭକ୍ତର୍ ଦୁଖ୍ ମୋର୍ ହେସି, ସୁଖ୍ ମୋହର୍ ତାର୍
ଯେ ଜାନ୍‌ସି ମତେ ହେସି ମୋହରି ପର୍‌କାର୍ । ॥୫୮॥

ରଖି ନାଇଁ ପାରେଁ ତୁମ୍‌କୁଁ ପାର୍‌ବେ ଅମ୍ବରୀଷ୍
ତାକର୍ ଆଶ୍‌ରା କର ଋଷି ଛାଡ଼ି ରାଗ୍ ରିଶ୍ । ॥୫୯॥

ଆଗେଁ ଆଗେଁ ଯାଆନ୍ ଋଷି ପଛେଁ ସୁଦର୍‌ଶନ୍
ଏବେ ଧରେଁ ସେ' ଦେ ମାରେଁ ବାଗିର୍ ଦଉଡ଼୍‌ସନ୍ । ॥୬୦॥

ଜୀବନ୍ ଛଡ଼ା ଦଉଡ଼ି ଋଷି ନିଜର୍ ଜୀବନ୍ ଆଶେଁ
ପଡ଼ି ଉଠି ଯାଇ ପଡ଼୍‌ଲେ ରଜାର ପାଦ୍ ପାଶେଁ । ॥୬୧॥

ଦୋଷ୍ ହେଲା ହୋ ! ଅମ୍ବରୀଷ୍ କ୍ଷେମା କର ଘାଏ
ଜାନ୍‌ଲିଁ ଅଭିମାନ୍ କେଡ଼େ ଦରଦ୍ ଦିଆ ଆଏ । ॥୬୨॥

ଇଛନ୍ ଜାନ୍ ଲିଁ ବିଷ୍ଣୁ ଭକତ୍ ବିଷ୍ଣୁର୍‌ନୁ ବଡ଼୍
କେନ୍ ଭଗାରି ପଶି ପାର୍‌ବା ବିଷ୍ଣୁ-ଭକ୍ତିର୍ ଗଡ୍ ? ॥୬୩॥

ଦୁର୍ବାସାର୍ ଦୁର୍ଦ୍ଦଶା ଦେଖି ରଜା ଦୟାର୍ ମୂର୍‌ତି
ସୁଦର୍ଶନ୍‌କେ ବୁଝାବାର୍‌କେ ବିନ୍‌ତି କଲେ ତୁର୍‌ତି । ॥୬୪॥

କହେଲେ ଚକ୍ର ! ଦୟା ତୁମର୍ ପାଶ୍ରି ହେବାର୍ ନୁହେ
ତୁମେ ପାଏନ୍ ତୁମେ ପବନ୍ ତୁମେ ଖରା ଜୁଏ । ॥୬୫॥

ମାର୍‌ବାର୍ ଅସ୍ତର୍ ଶସ୍ତର୍ ତୁମେ ନୁହ କାହାରି
ମହାପ୍ରୁନେ ଥିସ ସେ ଚାହେଁଲେ ଆଏସ ବାହାରି । ॥୬୬॥

ମୋର୍ ବିନ୍‌ତି ଫିରିଁ ଯ ମହାପ୍ରୁନେ ପୁହୁଁଚ୍ଚି
ମହାପ୍ରୁ ନାମେ ଧରମ୍ ରହୁ ରହୁନ୍ ମୁନି ବଅଁଚି । ॥୬୭॥

ଗଲା ସୁଦର୍ଶନ୍ ଫିରିଁ ଅମ୍ବରୀଷ୍ ରଜା
ରହେଲେ, ରହେଲା କଥା ବଜେଇ ଭକ୍ତିର୍ ଯଶ୍-ବଜା । ॥୬୮॥

ପୂରା ଏକ୍‌ବଗି ଭକ୍ତି ଥିବାର୍ ଲୋକ୍ ଜନ୍‌ମି
ସୂରୁଯ୍ ବଂଶର୍ ରକତ୍ ଧାରେଁ କେଭୁଁ ଯାଉଛନ୍ ଶମି । ॥୬୯॥

ହେନ୍ତା ଜନ୍‌ଏ ରଜା ତାକର୍ ହରିଶ୍ଚନ୍ଦ୍ର ନାମ୍
ସୂରୁଯ୍ ଚନ୍ଦ୍ରର୍ ଥିବାର୍ ତକ୍ ଭୁଲ୍‌ବା କେ ତାର୍ କାମ୍ ? ॥୭୦॥

ରାଜ୍‌ପାଟ୍ ରାଜ୍ କୋଷ ସବ୍ କରି ସାରି ଦାନ୍
ଦକ୍ଷିଣା ଦୁଟା ଦେବାର୍ କାଯେଁ ହେଲେ ହଏରାନ୍ । ॥୭୧॥

ପୁଓ ମାଏପୋ ବିକି ହେଲେ ନିଜେଁ ଶେଷେଁ ବିକା
ଚଣ୍ଡାଲ୍ ନେ ମଶାନ୍‌ପଦା ନେଇଥିଲା ଯେ ଠିକା । ॥୭୨॥

ଗଲାର୍ ମାଲି ମଲା ପୁଓକେ ମାଁ ଆନ୍‌ଲା ପୁଡ଼େଇ
ପଏସା ନାଇଁ ତ ଭଏଁସା ସୁରେଁ ଦେଲେ ତାହାକେ ଫିରେଇ । ॥୭୩॥

ରଜା ହଇଁ ହଇଥିଲେ ଚଣ୍ଡାଲର୍ ସେ ଦାସ୍
ପଏଖ୍ ପାତର୍ କରି କେନ୍ତା କର୍‌ତେ ଧରମ୍ ନାଶ୍ । ॥୭୪॥

ଚିହ୍ନା ଜନା ହେଲେ ଗଲା ପରୀକ୍ଷାର୍ ବେଲା
ଏନ୍ତା ରଜାର୍ ଜନମ୍ ସୂରୁଯ୍ କୁଳେଁ ସମ୍ଭବ୍ ହେଲା । ॥୭୫॥

ଶାନ୍ତିନାଇଁ ମିଲେ ଯେ'ନ୍ତି ହେଲେଁ ବି ଧନ୍ ଦରବ୍
ଆଗେଁ ତିଆଗ୍ କଲେଁ ପଛେଁ ମିଲେ ସୁଖ୍ ସରବ୍ । ॥୭୬॥

ପାଚ୍ଲା ପତର୍ ପର୍ଲେଁ ଯାଇ ନୂଆଁ ପତର୍ ପିକାଏ
ଆଗୋ ପାଏନ୍ ପସ୍ରା ଶୁଖେ ପଛେଁ ମେଘ୍ ରୁକାଏ । ॥୭୭॥

ଯାହା ବଅଁଚୁ ତାହା ଖାଏବ ଦିଆ ଥୁଆ କରି
ଧନ୍ କାହାରିର୍ ନୁହେ କିଏ ଯାଏସି ଧନ୍ ଧରି ? ॥୭୮॥

ଏନ୍ତା ଜୀବନ୍ ଜୀଇଁ ପାର୍ଲେଁ ଜୀବନ୍ ହଏ ସାଫୁଲ୍
ସେ ଜୀବନ୍ ବୀଜ୍ ଧରେ ଧଏନ୍ ରଘୁ କୁଲ୍ । ॥୭୯॥

ସଗର୍ ନାଏଁ ରଜା ତାକର୍ ଜନମ୍ ଆଗର୍ କଥା
ମାସ୍ ପାଁଚେ ଥିଲେ ଗର୍ଭେଁ ବେଲ୍‌କେ ମଲେ ଜନମ୍ କର୍ତ୍ତା । ॥୮୦॥

ଖୁଡ଼ମା ମାନେ ଖାଏଦ୍ ସାଙ୍ଗେଁ ଗର୍ଭିନୀ କେ ଗରଲ୍
ଦେଲେଁ ଭି ମା ପୁଓ ଦୁହେ ବଅଁଚି, ରହେଲେ ସରଲ୍ । ॥୮୧॥

ଗରଲ୍ ସାଙ୍ଗେ ଗର୍ଭୁଁ ଆଏଲେ ବଲିଁ ସଗର୍ ନାମ୍
ରଜାର୍ ଷାଠେ ହଜାର ପୁଓ ଅନାଧୁନ୍ କାମ୍ । ॥୮୨॥

ମାଏଟ୍ କୁଡି ଖାଏଲେ ପୁର୍ଥୀର୍ ଚାଏର୍ ଭାଗୁଁ ତିନ୍‌ଭାଗ୍
ଗାଡ଼୍‌ଖାଲ୍ ଦେଖିଁ ପୁର୍‌ଥୀ ପୁରନ୍ଦର୍ ରାଗ୍ । ॥୮୩॥

ସଗର୍ ରଜାର୍ ଯଜ୍ଞ ଘୁଡ଼ା ସରଗ୍ ରଜା ଚୁରେଇ
ଷାଠେ ହଜାର୍ ସଗର୍ ପୁଓକୁଁ ସୋଜ୍ ମାର୍ଲେ ନୁରେଇ । ॥୮୪॥

ନୁରି ନୁରି ଦେଖ୍‌ଲେ ଦିନ୍‌ଏ ଘୁଡ଼ା ବନ୍ଧା ହଇଛେ
ପାଶେଁ ବସେ ଜନ୍‌ଏ ଦୁହି ଆଏଁଖ୍ ମୁଜି ନେଇଛେ । ॥୮୫॥

କହେଲେ ଦେଖ ବସେ ଭାଇ ! ଧ୍ୟାନୀର୍ ବେଶେଁ ଚୋର୍
ଚୋ଼ର୍ ନୁହେ ସେ ଖାଲି ଛଲା ବଢ଼େ ଜାଲଙ୍କ ଯୋର୍ । ॥୮୬॥

କପିଲ୍ ମୁନି ତପିସା କରନ୍ ଆଏଁଖ୍ କାନ୍‌କେ ମୁଜି
ଧିଆନ୍ ସମ୍‌ଦରେଁ ହଜି ଯାଇଛନ୍ ଗୁରୁ ଗିଆଁନ୍ ଖୁଜି । ॥୮୭॥

ଗୋଲ୍ ମାଲ୍ ଶୁନି ଭୋଲ୍ ଭାଲ୍ ମୁନି ହେଲେ ବିର୍‌କତ୍
ଖୁଲି ଦେଖିଲେ ଲାଲ୍‌ଲାଲ୍ ଆଏଁଖ୍ ଝରେ କାଏଁ ରକତ୍ । ॥୮୮॥

ରିଶ୍‌ମି ଆଖିଁ ଦେଖିଲେ ଷାଠେ ହଜାର୍ ଗଲେ ଜଳି
ଜନ୍‌ଏ ବି ଜାନିନାଇଁ ପାର୍‌ଲେ କେନ୍ତା ମର୍ଲଁ ବଲି । ॥୮୯॥

ଜୀବନ୍ ଗଲା ଆର୍‌ପାର୍ ଦିହ୍‌ମାନ୍ ହେଲା ଖାର୍
ବଅଁଶର୍ ଲୁକେ ନୁର୍‌ଲେ ଉପେକେନ୍ତା ପାଏବେ ପାର୍ । ॥୯୦॥

ତପ୍‌ଖଟି ଭଗିରଥ୍ ଗଙ୍ଗା କରି ସନ୍ତୋଷ୍
ସର୍ଗୁଁ ଡେଗ୍‌ଲେଁ ଛିନ୍‌ବେ ବଲି ମନାଲେ ଆଶୁତୋଷ୍ । ॥୯୧॥

ଜଳୁଥିଲେ ସଗର୍ ପୁଏ ପାଇ ଗଙ୍ଗାର୍ ଧାର୍
ଋଷି ଶାପର୍ ଜଲ୍‌ତା ଜୁଏନୁ ପାଇଗଲେ ପାର୍ । ॥୯୨॥

ଏନ୍ତା ମହାନ୍ ଲୁକର୍ ରକତ୍ ସୁରୁଯ୍ ବଅଁଶ ଗଢ଼େ
ବନ୍‌ଏ ବୀଜର୍ ଗଛ୍ ନୁକୋ ସାର୍ ପାଏନ୍ ପାଇ ବଢେ । ॥୯୩॥

ରାମେନ୍ ଥୁଇ ରାମ୍‌କୁଁ କରି ହୁରୁଦ୍ ଭିତ୍‌ରୁଁ ଯୁହାର୍
କହେଲେ ମୁନି ଉଠ ବଲି ଯିବାକେ ହଇଁ ତିଆର୍ । ॥୯୪॥

ଶିଷ୍ୟ ଭିତରୁଁ ଶିଷ୍ଟ ଲେଖେଁ ଦିଶନ୍ ଚିଦାନନ୍ଦ୍
କହେଲେ ବାବା ! କହୁଛେଁ ପଦେ ନାଇଁ ଭାବିବ ମନ୍ଦ୍ । ॥୯୫॥

ମୁନୁଷ୍ ହଇଁ ମାଏଟ୍ ଖାଏଲେ ସଗର୍ ରଜାର୍ ପୁଏ
ଜାଲ୍‌ବାକେ ବାହାର୍‌ଲା କପିଲ୍ ମୁନି ଆଖିଁ ଜୁଏ । ॥୯୬॥

ଦେବୀ ରୂପେଁ ଥିଲା ଉତ୍‌ରି ଆଏଲା ଗଙ୍ଗା ନଏଦ୍
ଦହଦହ ଦେଖିଁ ଆମେ ପାଏନ୍ ଧାର୍‌ଟେ ସଏଦ୍ । ॥୯୭॥

ବନ୍‌ଏ ହେତା ବାବାଟିକେ ବୁଝେଇ କହିନେଲେଁ
ହଁସି କହେଲେ ଋଷି କହେମା ଆଜିର୍ ବେଲ୍‌ହଉ ବେଲେଁ । ॥୯୮॥



# ପାଉଚ଼-୭

# ସଗର୍ ରଜା ଆର୍ ଗଙ୍ଗା କଥା

ପଛିମ୍ ଦିଗେଁ କଛିମ୍ ଲେଖେଁ ବେଲ ଯାଉଛେ ରଙ୍ଗି
ଏକ୍‌ଲା ଆସେ ଏକ୍‌ଲା ଯାଏ କେ'ନ ନୁର୍‌ସି ସଙ୍ଗୀ । ॥୧॥

ଗଛ୍ ଛଏରାର୍ ରଙ୍ଗ୍ ନେଇ ପୁତ୍‌ଲା ଲେଖେଁ ସୁରୁଯ୍
ଝାର୍ ଉପ୍‌ରେଁ ଝାରିଁ ଝାରେ ଲାଲିଆ ଖଟାର୍ ମୁରୁଯ୍ । ॥୨॥

ଚିଢ୍ ଲଗାଇ ଗୀତ୍ ବାନ୍ଧେ ଚେ଼ରେ ଗାଏବେ ବଲିଁ
ଅବ୍‌ରୋହ୍-ସୋର୍ ସୁରେଁ ସୁରୁଯ୍ ତଲ୍‌କେ ଯାଏ ଢ଼ଲିଁ । ॥୩॥

ହେ ରାମ୍ ହେ ରାମ୍‌ଚନ୍ଦ୍ର ! ରାମ ଭଦ୍ର ଜୟ
ସୁରେଁ ଆଶ୍ରମ୍ ସାରା ହେଲା ରାମଚନ୍ଦ୍ର ମୟ । ॥୪॥

ଧିଆନ ଭିତରୁଁ ଗିଆନୀ ମୁନି ରାମ୍ ରାମ କହି
ବୁଡ୍ ପକାଲେ ରାମ୍‌ର୍ ନାମ୍ -ଗଙ୍ଗା ଆସେ ବୁହି । ॥୫॥

କହେଲେ ପିଲେ । ସୁର୍‌ଷୋ ନୁ ବି ସୁରୁ ବୀଜାର୍ ଭିତର୍
କେନେ ଥିସି ବାଢ଼୍‌ସି କେତେ ଫୁଲ୍ ଫଲ୍ ପତର୍ । ॥୬॥

ଗୁଟେ ବୀଜା ହେସି ତାର୍ ଅରବ୍ ଖରବ୍ ଗୁନ୍
କେନୁ ଆଏସି ଅନୁମାନ୍ ହେସି ଅନାଧୁନ୍ । ॥୭॥

ସେ ସବୁ ତ ମାଏଟ୍ ଆଏ ଖାଏଲେଁ ନାଇଁ ଜାନୁ
ମାଏଟ୍‌ଟାତ ମାଏଟ୍ ଆଏ ମାନୁ ନାଇଁ ମାନୁ । ॥୮॥

ଜନ୍ଏ ଜନ୍‌କର୍ ଷାଠେ ହଜାର୍ ପୁଓ ହେବେ ଯଦ୍‌ରି
ଖାଏବେ କେତେ ହିସାବ୍ କଲେଁ କେ ନାଇଁ ଯାଏ ହଦ୍‌ରି । ॥୯॥

ସେ ସମ୍‌କର୍ ଘର୍ ଦୁଆର୍ ଚାଲ୍ ଚଲନ୍ ଲାଗି
କେତେ ମାଏଟ୍ ସର୍‌ବା ପୁର୍‌ଥୀ କେନୁ ପାଏବା ମାଗି ? ।।୧୦।।

ହେଁ ଥିର୍ ଲାଗି ବଅଁଶ୍ ରଖ୍‌ବାର୍ ଲାଗି ପୁଓ ଜନମ୍
ଗୁଟେ ଲାଗି ନିଅମ୍ ତେହେଉଁ ମନା ସ୍ତ୍ରୀ ସଂଗମ୍ । ।।୧୧।।

କଦେଲ୍ ବୁଟାର୍ ଗୁଟେ ପିଲ୍‌କେ ରଖି ବାକୀ ପୁଆ
ଅଲ୍‌ଗାଲେଁ ଅଏନ୍ ଭିଁଡା ବନ୍‌ଏ କେଁଡା ଥିସି ଥୁଆ । ।।୧୨।।

ସମାଜ୍ ମାଜିଁ ଝଟ୍‌କୁ ଥିବା ନାଇଁ ନଶ୍‌ବା ଜାଦା
ହର୍ ବଏସେଁ ବରମ୍‌ଚାରୀ ଆଚାରର୍ ମର୍ଯ୍ୟାଦା । ।।୧୩।।

ଅଏଧିକା ଅଗନ୍‌ତା ଛୁଆ ଯେତ୍‌କି କର୍‌ବେ ଲୋକ୍
ପୁର୍‌ଥୀ କାହିଁ ପୂରାବା ମାଏଟ୍ ଯେତ୍‌କି ହେବା ଭୋକ୍ । ।।୧୪।।

ହେଁ ଥିର୍ ଲାଗିଁ ପୁର୍‌ଥୀର୍ ତିନ୍ ଭାଗ୍ ଗାଡ୍‌ଖାଲ୍
କେନେ ରହେବେ ମୁନୁଷ୍ କାହିଁ କର୍‌ବେ ବୁଲ୍ ଚାଲ୍ ? ।।୧୫।।

'ରାମଚନ୍ଦ୍ର ଜଏ' ବଲି ସଭେ ତାଲି ମାରି
କହେଲେ ଗଲା ସନ୍ଦେହ୍ ସୋଜ୍ ହେଉଥିଲୁଁ ଘାରି । ।।୧୬।।

"କପିଲ୍ ମୁନି ଦେଖ୍‌ଲେ ବେଲ୍‌କେ କାହୁଁ ଆଏଲା ଜୁଏ ?
ସେଥିଜଲି ଖାର୍ ହେଲେ ସଗର୍ ରଜାର ପୁଏ । ।।୧୭।।

ଚର୍‌ଚା କରି ପର୍‌ଛା କର୍‌ମା ରାମ୍ ମହାପୁର୍ ରାହା"
କହି ଋଷି କହେଲେ ସ ଭେ ରାମ୍‌ର୍ ନାମ ଗାଆ । ।।୧୮।।

ସବୁ ଆଖିଁ ସୁରୁଯ୍ ଥିସନ୍ ନିଜର୍ ତେଜ୍ ଧରିଁ
ଆଏଁଖ୍ ମୁଜ୍‌ଲେଁ ସେ ତେଜ୍‌ଟା ବଢେ, ନାଇଁ ସରି । ।।୧୯।।

ଭଲ୍ ସାଧ୍‌ନାର ଫଲ୍ ସାଧୁର୍ ମିଲେ କର୍‌ଲେଁ ତୋଷ୍
ଅନ୍‌ଭଲ ଯାହା ଥାଏ, ପାଏ ଯେ ବଢାଏ ରୋଷ୍ । ।।୨୦।।

ଝାରି ଜାନ୍‌ଲେଁ ଖାଏବ ଅଏନ୍ ମହୁଘରାର୍ ମହୁ
ନାଇଁ ଜାନ୍‌ଲେଁ ମହୁମାଛିର୍ ଦାଉ ଦେହେ ସହୁ । ॥୨୧॥

କପିଲ୍ ମୁନି କେତ୍‌କି ଦିନୁ ଆଏଁଖ୍ ଥିଲେ ମୁଜି
ରିଶ୍‌ମି ହଇଁ ଆଏଁଖ୍ ଫିଟେଇ ଯେନ୍ତା ଦେଖ୍‌ଲେ ଖୁଜି । ॥୨୨॥

ଅଗନା ଦିନୁ ସୁରୟ୍ ତେଜ୍ ହଇଥିଲା ଜମା
ରିଶ୍‌ମିଥିଁ କାହୁଁ କା'ଣା ହେଲା ଅକଲନା । ॥୨୩॥

ମୁନି ନଜରର୍ ତେଜ୍ ପଡୁଁ ପାଲଟିଁ ଗଲା ଜୁଏ
ଜଲି ବସ୍‌ଲେ କାହିଁ ରହେତେ ସଗର୍ ରଜାର୍ ଛୁଏ । ॥୨୪॥

ଖାଏମି ଖାଏମି ହଇଁ ଜଲୁଥିଲା ଅସନ୍ତୋଷ୍
ଅହଂକାର୍ ନୁରୁଥିସି ନିର୍‌ଦୋଷୀ ନେ ଦୋଷ୍ । ॥୨୫॥

ଦିହେଁ ଜଲ୍‌ଲେଁ ଜୁଏ-ଅସନ୍ତୋଷ୍ ଅହଂକାର୍
ସାଧୁ ସଂଥ୍ ସୁତର୍ ଉପ୍‌ରେ ଉଲ୍‌ଦେ ଦୋଷର୍ ଭାର୍ । ॥୨୬॥

ହେନ୍ତା ଲୋକ୍‌କେ ମାର୍‌ବାକେ ନାଇଁଲାଗେ କାହାକେ
ହରୁ ହର୍‌ଦମ୍ ମରୁଥିସି ଜୀଇଁ ଥିସି ନାଆଁକେ । ॥୨୭॥

ଖରାପ୍ କାମର୍ ବିଷମ୍ ଫଲ୍ ବିଷ୍ ଠାନୁ ବି ବେଶୀ
ଜଲୁଥିସି ଗିଆନ୍ ଗଙ୍ଗା ଆଏଲେଁ ଯାଏସି ମେଣି । ॥୨୮॥

ଏତ୍‌କି ଜାନି ତାକର୍ ବଅଁଶର୍ ରଜା ଅଂଶୁମାନ୍
ପୁହୁଁଚି ଆଏଲେ ମୁନିର୍ ପାଶ୍‌କେ ଛାଡି ଅଭିମାନ୍ । ॥୨୯॥

ହାଏର୍ ଗୁହେର୍ କରି ମୁନିର୍ଂ ମନ୍‌କେ ବୋଧ୍ କଲେ
ମୁନି କହେଲେ ଘୁଡ଼ା ନେଇ ଯଜ୍ଞ ସାର ଭଲେ । ॥୩୦॥

ହବିର୍ ଆଶେଁ ଦେବ୍‌ତାମାନେ ଥିବେ ଟାକି କରି
ତାହାକୁଁ ଆଗୋ ତୋଷ୍‌କରି ଯଜ୍ଞେ ଅଛ ବରି । ॥୩୧॥

ଅଂଶୁମାନ୍ କହନ୍ ଆମର୍ ବଂଶୁଁ ଷାଠେ ହଜାର୍
ଜଲିପୁଡି ମରନ୍ କେନ୍ତା କଲେଁ ପାଏବେ ପାର୍ । ॥୩୨॥

ତୁମେ ସାଂଖ୍ୟ-ଯୋଗର୍ ଯୋଗୀ ବିଷ୍ଣୁ ଅବ୍‌ତାର୍
ଉପେ କହ କେନ୍ ରୂପେଁ ପାଏବେ ସେ ନିସ୍ତାର୍ । ॥୩୩॥

ଯୋଗୀ କହେଲେ ସର୍‌ଗୁଁ ଯଦ୍‌ରି ଆଏତେ ସୁରେଶରୀ
ତାକର୍ ପାନି ସଗର୍ ପୁଓକର୍ ଦଶା ଯାଏତା ସରି । ॥୩୪॥

ମୁନିର୍ କଥା ଶୁନି ତପେଁ ଲାଗ୍‌ଲେ ଅଂଶୁମାନ୍
ଗଙ୍ଗା ଆଏବାର୍ ଆଗୁଁ ନିଜେଁ ହରେଇ ବସ୍‌ଲେ ପ୍ରାଣ୍ । ॥୩୫॥

ତାକର୍ ନାତି ଅବଧ୍ ପତି ରଜା ଭଗୀରଥ୍
ତପ୍ ଖଟ୍‌ଲେ ଗଙ୍ଗା ଉତ୍ରେଇ ଆନ୍‌ବାର୍‌କେ ମରତ୍ । ॥୩୬॥

ତପେଁ ତୋଷ୍ ହଇଁ ଗଙ୍ଗା କହେଲେ ଯିବାର୍ ଯିମି
ସର୍‌ଗୁଁ ଡେଗ୍‌ଲେଁ ମର୍‌ତେଁ କିଏ ରଖ୍‌ବା ମତେ ଛିନି । ॥୩୭॥

ମନେଇ ବୁଝେଇ ପାରଲେଁ ଖାଲି ଶିବ୍ ପାର୍‌ବେ ଛିନି
ଆଶୁତୋଷ୍ ଆ'ନ୍ ଭକ୍‌ତି ନେ ତୁର୍‌ତି ହେସନ୍ ଘିନି । ॥୩୮॥

ଗଙ୍ଗାଧର୍ ଜାନି ପାଏଲେ ଗଙ୍ଗାର୍ ଅଭିମାନ୍
ମୁଡେଁ ଛିନ୍‌ଲେ ଗଙ୍ଗାର୍ ଧାର୍ ମାନର୍ ଅଭିଯାନ୍ । ॥୩୯॥

ଜଟା ଭିତରେଁ ଗୁମେଇ ନେଲେ ଗଙ୍ଗାର୍ ପ୍ରବଲ୍ ଧାର୍
କିଦ୍‌ରି ବୁଲନ୍ ଗଙ୍ଗା, ବାଟ୍ ନାଇଁ ପା'ନ୍ କେନ୍ ପାର୍ । ॥୪୦॥

ତୁସ୍ତି କରି ମହାଦେବ୍‌କୁଁ ଜନାନ୍ ଭଗୀରଥ୍
ଜନ୍‌କର୍ ଦୁଖେଁ ଉନିଆଁ ମାନେ ଶାସ୍ତିଥିଁ ବିବ୍ରତ୍ । ॥୪୧॥

ଦୟା କରି ଶିବ୍ ତେତ୍‌କେଁ ଛାଡ଼ିନେଲେ ଧାରେ
ରଙ୍ଗି ଆଏଲେ ଗଙ୍ଗା କିହେ ଛେଁକି ନାଇଁ ପାରେ । ॥୪୨॥

ଜହ୍ନୁ ମୁନି ଦେଲେ  ପିଇଁ ଗଙ୍ଗାର୍ ଧାର୍ ବନ୍ଦ୍
ଧରା ଛପ୍‌କା ଭଗୀରଥ୍ କହନ୍ କପାଲ୍ ମନ୍ଦ୍ । ।।୪୩।।

ଗୁହାରି ଶୁନି ଜହ୍ନୁ  ମୁନି ଜାନୁ ଦେଲେ ଚ଼ିରି
ନିଝ଼ରିଁ ଆଏଲେ ଜାହ୍ନବୀ ହଇ, ଲହଁକି ବନ୍‌ଗିରି । ।।୪୪।।

ଆଗର୍ ଦୁଷ୍ଟୁଁ ସଗର୍ ପୁଏ ପାଇଗଲେ ନିସ୍ତାର୍
ଖାଲ୍ ପୂରି ପାଏନ୍ ସାଗର୍ ନାମେ ହେଲା ବିସ୍ତାର୍ । ।।୪୫।।

ଚ଼ିଦାନନ୍ଦ ଶୁନି ପଡ଼ିଗଲେ ମୁନିର୍ ପାହେଁ
ଭକ୍ ଭକ୍ ଦେଖି ହୁଅନ୍ କିଛି କହେଁ କି ନାଇଁ କହେଁ । ।।୪୬।।

ହଁ ସି କହେଲେ ରଷି ''ବାବୁ ! କହେମି କହେମି ହଉ
ନାଇଁ କହି, କାଁ କରି ସୋଜ୍ ଅପ୍‌ସରି ରହୁ ? ।।୪୭।।

କହେବାର୍ ମନ୍ ଥାଇ ଯଦ୍‌ରି ଯେ ଭି ନାଇଁ କହେ
ଅକୁହା କଥା ଅସୁହା ରହି ମନ ଗହନ୍ କେ ଦହେ । ।।୪୮।।

ମୁନି ମନର୍ କଥା ଗୁନି କହେଲେ ଚିଦାନନ୍ଦ
ଆଜିର୍ କଥା ଶୁନି ମୋର୍ ମନେ ଉଠେ ଦ୍ୱନ୍ଦ୍ । ।।୪୯।।

ପାଏନ୍ ଧାର୍ କାଏଁ କହେ କଥା ? କେନ୍ତା ହଏ ବୁଝି ?
ନଦୀର୍ ଭାଷା ମୁନୁଷ୍ ବୁଝେ କେଭେଁ କେନ୍ତା କି ବୁଜି‌ହି  ? ।।୫୦।।

ଆମେ ଜାନ୍‌ଲେଁ ନଦୀର୍ ସାଙ୍ଗେଁ କଥାବାର୍ତ୍ତା ହେତୁଁ
ତାର୍ ମେତାଲ୍ ପୁହୁଁଚ଼ିବାର୍ ଠାନ୍ ରହେତା ଆମର୍ ହେତୁ । ।।୫୧।।

ହଁ ସି କହେଲେ ରଷି ମନେ ବନ୍‌ଏ ହଇ ଉଷଦ୍
ଫୁର୍‌ସଦ୍‌ଟେ ଦେଲ କହେମି କଥା ଯାହା ସଦ୍ । ।।୫୨।।

ଗଙ୍ଗାର୍ ଜନମ୍ କଥା ଶୁନ୍‌ଲେଁ ଜାନବ ସବୁକଥା
ସନ୍ଦେହ ଯିବା, ଯିବା ସାଙ୍ଗେଁ ମନର୍ ସବୁ ବଥା । ।।୫୩।।

ଜଡ଼୍ ଚେତନ୍ ସବୁଠାନେ ଅଛନ୍ ପରମ୍ ବ୍ରହ୍ମ
ବ୍ରହ୍ମ ଭାଷା ହଦ୍‌ମଦାସି ବ୍ରହ୍ମ ବାଦୀର୍ ମର୍ମ । ॥୫୪॥

ସବୁନେ ଯେ ବ୍ରହ୍ମ ଦେଖେ ବୁଝେ ବ୍ରହ୍ମର୍ ଭାଷା
ସେ ବାଟେଁ ବି ତୁମେ ଗଲେଁ ବୁଝିବ ମୋର୍ ଆଶା । ॥୫୫॥

ଗଙ୍ଗା ଆଏ ସତେଁ ସତେଁ ବ୍ରହ୍ମାନନ୍ଦର୍ ଧାରା
ବ୍ରହ୍ମ ଦରଶୀ ମହାଦେବ୍‌କର୍ ତିନ୍‌ହି ଆଁଖିର୍ ପାରା । ॥୫୬॥

ବ୍ରହ୍ମର୍ ସବ୍ ସାଧନାର୍ ଫଲ୍ ଜଲ୍‌ଧାର୍ ହଇଁ ବୁହେ
ସରବ୍ ଦାନୀ ହିମାଲଏକେ ହରୁ ହର୍‌ଦମ୍ ଦୁହେ । ॥୫୭॥

ଗଙ୍ଗାର୍ ଜନମ୍ ଜାତ୍ କଥା ଶୁନ୍‌ଲେଁ ପାର୍‌ବ ଜାନି
କହେଲେ ମୁନି ଭାବ୍ ଭକ୍ତି ସେ' ସେ ଥିଁ ସାନି । ॥୫୮॥

ସର୍‌ଗେଁ ହେଲା ସଭା, ଅଲ୍‌ଗା ଶୋଭା ଶିରୀ ତାର୍
ସଜାବାରେଁ ଜାନ୍ ଲାଗିଛେ ସବୁ ଦେବ୍‌ତାର୍ । ॥୫୯॥

ଯକ୍ଷ ଗନ୍ଧର୍ବ୍ ସିଦ୍ଧ୍ କିନର୍ ଅପ୍‌ସରା
ସଭେ ଜମିଛନ୍ ନିଉତା ପାଇ ନାଇଁନ ଅପ୍‌ସରା । ॥୬୦॥

ବିଷ୍ଣୁ ବସନ୍ ଆଏଁଖ୍ ଦିଷ୍ଟୁ ସଜା ତାକର୍ ଆସନ୍
ଡ଼େବ୍‌ରି ବ୍ରହ୍ମା ଭୁଜ୍‌ନି ଶିବ ଆଖି ପାଖି ବସନ୍ । ॥୬୧॥

ବ୍ରହ୍ମର୍ଷି ଦେବର୍ଷି ସବ୍ ଆନନ୍ଦ୍ ରସେଁ ଭାସୁଛନ୍
ତାକର୍ ତାକର୍ ବୁଝ୍‌ଲା ବାଗିର୍ ବ୍ରହ୍ମଜ୍ଞାନ୍ ଭାଷୁଛନ୍ । ॥୬୨॥

ନାରଦ୍ ଆଏଲେ ହାତେଁ ତାକର୍ ବ୍ରହ୍ମସୁରା ବୀନା
ତାରେଁ ତାର୍ ନାଇଁ ଶୁଭେ ବ୍ରହ୍ମର ନାମ୍ ବିନା । ॥୬୩॥

ବିଷ୍ଣ ବସନ୍ ଧରି ସତ୍ ଚିତ୍ ଆନନ୍ଦର୍ ବେଶ୍
ସବୁଆଡେଁ ଦିବ୍ୟ ଭାବ୍ ସାତ୍ତ୍ୱିକ୍ ପରିବେଶ୍ । ॥୬୪॥

ବ୍ରହ୍ମର୍ଷି ନାରଦ୍ ଦେଖିଁ ସବୁ ବ୍ରହ୍ମମଏ
ବହ୍ମଭାବ୍ ଉଦ୍‌ମୁଦାଲା ହଇଁଗଲେ ତନ୍ମଏ । ॥୬୫॥

ବ୍ରହ୍ମରସେଁ ସର୍ ସର୍ ହଇ କଲେ ବିଷ୍ଣୁ ଭଜନ୍
ନିଶବଦ୍ ସଭା ତବଧ୍ ହେଲେ ସଭାଜନ୍ । ॥୬୬॥

ଆନନ୍ଦ ମଏ ବିଷ୍ଣୁ ଶୁନି ପର୍ଛା ଗଲେ ତର୍‌ଲି
ଆନନ୍ଦ୍ ରସ୍ ଶିନ୍ଁ ପାଦ୍‌କେ ସହଜେଁ ଆସେ ସର୍‌ଲି । ॥୬୭॥

'ସେ ହିଁ ଖାଲି ରସ୍ ଆଏ କହେସି ସିନେ ବେଦ୍
ସଏଦ୍ ଆଏଜ୍ ଦେଖ୍‌ଲେ ସଭେ ନାଏଁନ କିଛି ଭେଦ୍ । ॥୬୮॥

ଶିବ ଦେଖ୍‌ଲେ ହାତେଁ ଜାଗା ନାଇଁନ ଇହାଛିନି
ବ୍ରହ୍ମାର୍ ହାତେଁ କମଣ୍ଡଲୁ ତୁର୍‌ତି ନେଲେ ଛିନି । ॥୬୯॥

ବିଷ୍ଣୁ ଯେନ୍ ଦିନ ନେଲେ ବାମନ୍ ଅବ୍‌ତାର୍
ଦାନେ ଦେଇ ଦେଲା ବଲୀ ଯାହା ଥିଲା ତାର୍ । ॥୭୦॥

ତିନି ପାଦ୍ ଭୂଇଁ ମାଗିଥିଲେ ପାଦ୍‌କେଁ ଗଲା ଧର୍‌ତୀ
ଦୁସ୍‌ରା ପାଦେଁ ସରଗ୍ ତିସ୍‌ରା ପାଦ୍ ବାହାରେ ତୁର୍‌ତି । ॥୭୧॥

ନାହି ଠାନୁ ବାହାର୍ କରି ପାହା ଦେଲେ ବଢେଇ
ସେ ପାଦେଁ ଫାଟିଗଲା ଈ ବ୍ରହ୍ମାଣ୍ଡ-କର୍‌ହେଇ । ॥୭୨॥

କା'ଣା ବଲିଁ ଦେଖ୍‌ଲେ ବ୍ରହ୍ମା ଆଶ୍ରିଯ୍ ହଇ ତାହାକେ
ତାମ୍‌ଡି ହାତ୍‌ଲି ଜାନି ପାର୍‌ଲେ ଛିଇଛନ୍ ତାର୍ ପାହାକେ । ॥୭୩॥

କମଣ୍ଡଲୁ ନେ ଥିଲା ଯେନ ଛିନ୍‌ଲା ଆନନ୍ଦ ରସ୍
ଅଁଡଲାଇ କରି ମୂଲା ଆଙ୍ଗଠିଁ ରୁକିଁ କର୍‌ଲେ ହରଷ୍ । ॥୭୪॥

ସେ ରସ୍ ଥିଲା ବିଷ୍ଣୁ ନଖର୍ କନେ ସେ ଦିନୁ
ଭଗୀରଥର ତପେଁ ତୋଷ୍ ଆଏଲା ନର୍‌ଦିନୁ । ॥୭୫॥

ଗଙ୍ଗା ନୁହେ  ଖାଲି ରଙ୍ଗ୍‌ଲା ସରଲ୍ ପାଏନ୍ ଧାର୍
ବିଷ୍ଣୁର୍ ଆନନ୍ଦ-ରସ୍ କରେ ନିରାନନ୍ଦୁଁ ଉଦ୍ଧାର୍ ।    ॥୭୬॥

ପାପ୍ ଆଏ ତ ଦୁଖ୍, ଦୁଖ୍ ଆଏ ଆନନ୍ଦ ଅଭାବ୍
ଗାଇ ଜୀବନ୍ ବାହି ନେବାର୍ ଗଙ୍ଗାର୍ ଆଏ ସ୍ୱଭାବ୍ ।    ॥୭୭॥

ଦୁଖମନା ଭାବ୍ ନାଇଁ କଟ୍‌ଲେଁ ନାଇଁ ନ ନିର୍ବାଣ୍
ପାପ୍ ଦୁଖକେ କାଟ୍‌ବାରକେ ଗଙ୍ଗା ନମୁନା ବାଣ୍ ।    ॥୭୮॥

ଜୀବନ୍ ଗଙ୍ଗା ଗାଇଗାଇ ବୁହି ଯାଏସି ଯାର୍
କାଁ କର୍‌ବା ଦୁଖ୍ ତାହାକେ ଆଏଲେଁ ବି ହଜାର୍ ।    ॥୭୯॥

ପାଏନ୍-ପର୍ବତ୍ ଭୁଏ ଛାଏ ଜନ୍ ବେଲ୍ ପବନ୍
ସବୁନେ ମୂର୍ତ୍ତି କଳ୍ପନା କରି ଅର୍ପା ହେଇଛେ ଜୀବନ୍ ।    ॥୮୦॥

ଆମେ ସଭେ ଶରୀର୍ ଧାରୀ ଶରୀର୍-ଭାଷା ବୁଝୁଁ
ସମ୍‌କୁଁ ଶରୀର୍ ଦେଇ ମୂକ୍‌ଲୁଁ ନାଇଁ ବୁଝ୍‌ବାର-ବୁଝୁଁ ।    ॥୮୧॥

ଗଙ୍ଗା ଠାନେ ଦେବୀ ରୂପ୍‌ଟେ କରା ହଇଛେ ଆରୋପ୍
ତାହା ବଲି କାଏଁ ପାଏନ୍ ଧାର୍‌କ ହଇଁ ଯାଏତା ଲୋପ୍ ।    ॥୮୨॥

କହି କହି ମୁନି ବ୍ରହ୍ମାନନ୍ଦ-ରସେଁ ଭାସନ୍
ପଦ୍ମାସନେ ବସି ବ୍ରହ୍ମ-ରନ୍ଧ୍ରେଁ ରନ୍ଧ୍ରେଁ ପଶନ୍ ।    ॥୮୩॥

ରୁଆଁ ଯାଉଛେ ଟାଁକ୍‌ରି ଆଖୁଁ ଝରି ଆଉଛେ ପାଏନ୍
ନିଶବଦ୍ ତବଦ୍ ସଭା ମୁନିକୁଁ ଦେଇ ମାଏନ୍ ।    ॥୮୪॥

ସଭେ ଗାଆନ୍ ହେ ରାମ୍ ଜୟ ରାମ୍ ସୀତାରାମ୍
ହାତ୍ ପସାରି ଋଷି ଜନାଲେ ସେ ସଭାର୍ ବିରାମ୍ ।    ॥୮୫॥



# ପାଉଚ୍-୮ (ଆଏଦ୍-ଅନୁପ୍ରାସ୍)

# ନାରଦ୍ ମୁନିକର୍ କାମ୍ ଜଏ ଆର୍ ମୋହିନୀ କନ୍ୟା କଥା

ପୂରୁବ୍ ଦିଗ୍‌କେ ସୂରୁଯ୍ ଆଏଲେ, ଆଏଲା ନ ବି ଖରା
ପୂର୍‌ତେଲ୍ ଆସେ ସଭା ଧରି ଶୁନ୍‌ବାର୍ ଲୋକ ସାରା । ॥୧॥

ବସି ଗଲେନ୍ ଆସି ସଭେ ନିଜର୍ ନିଜର୍ ଠାନେ
ବଶୀଭୂତ୍ ଆ'ନ୍ ରାମେନ୍ ପଡ଼୍‌ଲା ଦିନୁ କାନେ । ॥୨॥

ପୁରୁଷ୍ ପିଲେ ପଛେଁ ବସନ୍ ମାଁ ଜାଏତ୍‌ଟା ଆଗେଁ
ଫୁର୍‌ସତ୍ କେ ନୁରେ ରାମେନ୍ ଶୁନ୍‌ଲେ ଲାଗେଁ ଲାଗେଁ । ॥୩॥

ସମର୍ ଛୁଆ ଶମି ଆସନ୍ ମର୍‌ଲୀ ତରାତରା
ସମ୍‌କର୍ ମନ୍ ଉଷତ୍ ଏତେ ନାଇଁ ଦିଏ ମା'ର୍ ଘରା । ॥୪॥

ଗୁଡ଼ା ଛାଡ଼ି ଚେ଼ରେ ଗୁହୁଡ଼ା ଡ଼ାଲେଁ ଡ଼ାଲେଁ ବସନ୍
ଗୁଡ଼ାଦୁ ଅଧେ ଉଡ଼ା ଦେଇ ତାକର୍ ଭାଷି ଭାଷନ୍ । ॥୫॥

ଲହମାନେ ପାଶର୍ ଗଛକେ ଅଙ୍ଗା କରି ଆବ୍‌ରି
ଲହଁପି ଆସନ୍ ମର୍‌ଲୀ ମୁହୁଁକେ ଶୁନ୍‌ବେ ଦହଁପିକରି । ॥୬॥

ମୁଲ୍‌କି ହସନ୍ ଗଛ ଗୁହୁଡା ଫୁଲର୍ ଉଠେଁ ଉଠେଁ
ମୂଲ୍ ହେଲା କି ରାମେନ୍ କିହେ ନାଇଁ କହନ୍ "ଉଠେଁ" । ॥୭॥

ଆସ୍‌ବାର୍ ସଭେ ଆସିଗଲେନ ଋଷି ଆସ୍‌ବାର୍ ନିହେ
ଆଶ୍‌ରିଯ୍ କଥା ଯାହାକେ ପଚାର ନାଇଁ ଜାନ୍‌ବାର୍ କିହେ । ॥୮॥

ଶେଷେଁ ଆସି ସଭା ଆଗେଁ କହେଲେ ସଦାନନ୍ଦ୍
ସେ' ସେ ଥିଁ ପଚ଼ରଉଥିଲେ ଋଷିର୍ ଭଲ୍ ମନ୍ଦ୍ । ॥୯॥

ଅମ୍ରିଁ ଆଏଲେ କାଏଲ୍ ଆଶ୍ରମ୍ ନିକେ ନାରଦ୍ ମୁନି
ଅମ୍ରଦ୍ ସାନି  କଥା ଆନି କହେଲେ ପାର୍ଲୁଁ ଶୁନି ।  ||୧୦||

ପାହା ବଢ଼ାଲେ ଆଜିର୍ ଆଶ୍ରମ୍ ଛାଡ଼୍ବେ ବଢ଼େ ପୁରୁଁ
ପାହାଁତିଆ ନୁ ବଟାବାର୍କେ ଗଲେ ସାଙ୍ଗେଁ ଗୁରୁ ।  ||୧୧||

ସଭାର୍ କାମ୍ କହିଯାଇଛନ୍ ନାଇଁ କର୍ବ ବନ୍ଦ୍
ସଁଭାଲି ନେବା ଗିଆନ୍-ସଉଦାଗର୍ ସଦାନନ୍ଦ୍ ।  ||୧୨||

ଆଏଲେ ସଦାନନ୍ଦ୍ ଗୁରୁର୍ ଆସନ୍ ପାଖ୍କେ ଉଠି
ଆଏଜ୍ ବି ସମ୍କିରିର୍ ମୁହେଁ ଆନନ୍ଦ୍ ଆସେ ଫୁଟି ।  ||୧୩||

ହେ ରାମ୍ ! କହି ଗୁରୁ ଆସନ୍ କେ ଆଗେଁ କରି ଯୁହାର୍
ହେରା ଟେକା ନାଇଁ, ହେଲେ କହେବାକେ ତିଆର୍ ।  ||୧୪||

ସୂରୁଯ୍ ଯାଉଥିଲେ ବୁଡ଼ି ନାରଦ୍ କାଏଲ୍ ଆଏଲେ
ସୁରୁ ନୁହେ ସେ କଥା ଗୁଟେ ଗୁରୁତର୍ କରି କହେଲେ ।  ||୧୫||

'ଆଏଜ୍ ଆଏଲି ଲଙ୍କା ପୁରୁଁ କହେଲେ ମହାଋଷି
ଆଏବୁଁ ପ୍ରାନ୍ତ ରାବଣ୍ ଯାହା କହେଲା କହେଲେ ଖୁସି ।  ||୧୬||

''ବର୍ହ୍ମା କହିଥିଲେ ଦଶ୍ରଥ୍ ଅବଧ୍ ରଜା
ବରର୍ ବେଶେଁ  ଯା'ନ୍ କୋଶଲ୍ ଦେଶ୍କେ ବଜେଇ ବଜା  ।  ||୧୭||

ଜନ୍ମିବା ଯେନ୍ ଛୁଆ ସେ ଦୁହିକର୍ ଅଉରସେଁ
ଜନଉଛେଁ ମୁଇଁ ଜନ୍ଏ ବି ନାଇଁ ରଖେ ତୋର୍ ବଂଶେଁ ।  ||୧୮||

ପାର୍ବୁ ବଏଲେଁ ଇହାଛିନି  କିଛିଂ କଲେଁ କର୍
ପାର୍ ପାଏବୁ ମୁର୍ଦ୍ଧର୍ ମୁହୁଁ କାଏଁ ଡ଼ର୍ ଅଠିପର୍ ।  ||୧୯||

ବର୍ଯାଦ୍ରୀ ସର୍ଯୁ ନଦୀ ଯାଉଥିଲେ ଡଙ୍ଗାଥିଁ
ବର୍କସି ଯାଇ ଭାଙ୍ଗ୍ଲି ଡ଼ଙ୍ଗା ବୁଡ଼ିଥିବେ ନ ଗଙ୍ଗାଥିଁ ।  ||୨୦||

ଯାଇଥିବେ ସେନ୍‌କେ ଯେନ୍ତୁ ନାଇଁ ପାରନ୍ କେ ଫିରି
ଯା'ଇଛା ତାହା ବଢବା ଏତ୍‌କେଁ ଦାନବ୍ ଶାସନ୍ ଶିରୀ । ॥୨୧॥

କଉଶଲ୍ କରି ଆଗୁଁ ଚୁରେଇ ଆନି ଥିଲି ମୁଇଁ
କଉଶଲ୍ୟାକେ ମୁହେଁ ତିମିଙ୍ଗିଲର୍ ଥିଲିଁ ଥୁଇ । ॥୨୨॥

କୋଶଲ୍ ଜେମା ପେରି ଭିତ୍‌ରେଁ ଥିବା ତିମିର୍ ମୁହେଁ
କୋଶ୍ କୋଶ୍ ଗହେର୍ ପାନି ଯମର୍ ଭେଟ୍ ପାଏବେ ଦୁହେଁ । ॥୨୩॥

ହେଁ ବାର୍‌ତା କହି ରାବଣ୍ ହଉଥାଏ ଉଶ୍ୱାସ୍
ହେବାର୍ ଯାହା ହେବା କର ନାଇଁ କର ବିଶ୍ୱାସ୍ । ॥୨୪॥

ନାରଦ୍ କହେଲେ ରାବଣ୍ ଆଶ୍ ମିଶା ଅଭିମାନ୍
ନାର୍‌ବାକେ ପାର୍‌ବାର୍‌କେ ଦୁର୍ଜନର୍ ଥାଏ ଟାନ୍ । ॥୨୫॥

ଜନ୍‌ଏ ଅଛେ ଜନା ନାଇଁ ତାର୍ ତନ୍ ମନ୍
ଜନଉଥାଏ ତାହାକେ ବିହି ଯୁର୍‌ବା କେନ କ୍ଷଣ୍ । ॥୨୬॥

ବାଆରି ଆନ୍‌ଲେଁ ତାହାରି ଯୋଗୁଁ ବାଉରି ହେସିମନ୍
ବାହାରି ବୁଲ୍‌ସି କାହାରି ନୁହି ଘେଁସ୍‌ରା ତେଲ୍ ଇ ତନ୍ । ॥୨୭॥

ଦୁହେ ମିଶି ଜୀବନ୍ ହେସି ମନ୍ ଥାଏସି ଲୁକି
ଦୁହେ ସଂସାର୍ ଗାଏକେ ସିନେ ଫେଫଲ୍ ହେସି ରୁକି । ॥୨୮॥

ଗୁରସ୍ ଲେଖେଁ ହେବା କାଏଁ ଫେଫଲ୍ ପିଇଲେଁ ଯେତେ
ଗୁର୍ ମେତାଲ୍ ଲାଗ୍‌ବା ? କାଦୋମଲି ଖାଏଲେଁ ପେଟେ ? ॥୨୯॥

ମୁଲୁର୍ ମୁଲୁର୍ ହଁସେ ଆତ୍‌ମା ତାକର୍ ଭିତ୍‌ରେଁ ଥାଇ
ମୁଲୁଁ ଶେଷ୍ ଜାନୁ ଥିଲେ ବି ତୁନ୍‌ତାନ୍ ଥାଏ ଚାହିଁ । ॥୩୦॥

ଉଦୁର୍ମାଦ୍ ମନ୍ କରି ନାଇଁ ପାରେ ହଲ୍‌ଚଲ୍
ଉଦୁର୍‌ଧୁମା ଦିହ୍ ଦେଖୁଁ ନୁହେ ବି ମଲ୍ ମଲ୍ । ॥୩୧॥

ଇମାନେ ରହନ୍ ନିଜର୍ ବାଟେଁ ସେ ରହେ ତାର୍ ତାର୍
ଇମାନ୍ ତାର୍ ମାଲିକର୍‌ନୁ ହୁଏ ନାହିଁ ପାର୍ । ॥୩୨॥

ଦେହେ ମନର୍ ଏନ୍ତା ଢୁଡ଼ା କେତେ ଡେଗି ଡ଼େଗି
ଦେହେରୀ ପର୍‌ମାତ୍ମାନିକେ ଯିବାକେ ଉଦ୍‌ବେଗି । ॥୩୩॥

ସୁନାର୍ ଦିହ୍ ଚୂନା କରି ଘର୍ କରେ ସୁନାର୍
ଶୁନାଏ ଅଗ୍‌ବା ଆପ୍‌ନା ବଡ୍‌ତି ଅହେତୁକ୍ ଅହଂକାର୍ । ॥୩୪॥

ମୁର୍‌ତୁକେ ଭାବ୍‌ସି ରାବଣ୍ କର୍‌ବାକେ ଅଧୀନ୍
ମୁରଛି ନୁହେ ଦିହର୍ ମମ୍‌ତା ରହେତା ସବୁଦିନ୍ । ॥୩୫॥

ପଚ୍‌ରାଲିଁ ମୁଇଁ ପାହା ଦୁହିଟା ଛିଇ ଦୁହି ହାତେଁ
ପଁଚ୍‌ମୁଖୀ ଶିବ୍ ଭଗତ୍ ରାବଣ୍ କହୁଥାଏ କାଏଁ ସଥେଁ । ॥୩୬॥

ଅସୁର୍ ରାବଣ୍ କହେଲା କବାର୍ ମୁନି କହେଲେ ସତ୍ ଥାଏ
ଅଶୁଭ୍ କାମର୍ ସବୁ ଶ୍ରମ ଯେନ୍ତା କଲେଁ ଖତ୍ ଆଏ । ॥୩୭॥

ତିମିର୍ ମୁହେଁ ଥିବା ପେରି ଟାପୁ ଟାକେଁ ଥୁଇ
ତିମିରିତ୍ କେନ୍ ତାମସ୍ ରଣେ ତିମି ହେଲା ବାଇ । ॥୩୮॥

ଦଶ୍‌ରଥ୍ ସର୍‌ଯୂନେ ଭାସି ସେ ଟାପୁନେ ଲାଗ୍‌ଲେ
ଦଶନାଭାଗୀ କଉଶଲ୍ୟାକେ କୋଶଲ୍ ନେଇ ଭାଗ୍‌ଲେ । ॥୩୯॥

ନୀତି ନିଅମେ ବିହା ହଇ ଅବଧ୍ ଆଏଲେ ଘୁଚି
ନିତି ଦିନ୍ ପୂଜା ପାଠ୍ ମହାପୁନେ ରୁଚି । ॥୪୦॥

ବଏସ୍ ହେଲେଁ ବିହା ହେସନ୍ ସଂସାରୀର୍ କଥା
ବଏସରା ମନ୍ଦ୍ ଧରି କେତେ ଠୁଲେଇ ବସନ୍ ବଥା । ॥୪୧॥

ବୁହିବାର୍ ନାଁ ବିହା ଆଏ ବୁଝି ନାଇଁ ପାରନ୍
ବୁହି ଯାଏସି ଦିହର ଭୋକ୍ ଦିହ୍ ଦିହ୍ ହଇ ମରନ୍ । ॥୪୨॥

ଦଶ୍‌ରଥଙ୍କୁ ବିପଦ୍ କେନ୍ତା ଦେଲେ ଭଗବାନ୍ ?
ଦଶ୍ ଇନ୍ଦ୍ରୟ୍ ଜିତା ଆନ୍ତ ମନେଂ ବଲବାନ୍ । ।।୪୩।।

ବିପରୀତ୍ କଥା ମେତାଲ୍ ଲାଗ୍‌ସି ସବୁଶୁନି
ବିପଦ୍‌ନେ ସେ ପଡ଼୍‌ଲେ କହେଲ କହ ମହାମୁନି ।'' ।।୪୪।।

ନାରଦ୍ କହେଲେ ''ପଚ୍‌ରାଲୁ ତ ମହାନ୍ ଗିଆନ୍ କଥା
'ନାଁ ରଖ୍‌ବୁ ଅଛେ ତୋର୍ ତତ୍ତେଁ ଗଭୀରତାଁ । ।।୪୫।।

ଦଶ୍ ଇନ୍ଦ୍ରିୟୁଁ ଗୁଟେ କର୍ ବି ହଇଁଗଲେଁ ବଶ୍
ଦଶ୍‌ରଥ୍ କା'ଣା ମହାଯୋଗୀ ବି ହଇଁଯାଏ ବିବଶ୍ । ।।୪୬।।

ମନ୍‌ଟା ରଜାର୍ ମନ୍‌ମୋହନ୍‌ନେ ଅନୁଖନୁରହୁ
ମନ୍‌ମଥ୍‌ଥିଁ ଥଥୋ ଥମୋ ଦଶ୍‌ରଥ୍ ନାଇଁ ହଉ । ।।୪୭।।

ବିପଦ୍ ସିନେ ଆନ୍‌ସି ମନ୍‌କେ ଠିକ୍ ବାଟ୍‌କେ ଫିରେଇ
ବିପଦ୍ ମୁନୁଷ୍ ରିଶା ହେସି ନାଇଁ ପାରେ ସହରେଇ । ।।୪୮।।

ମନର୍ ମୁନୁଷ୍ ମନ୍ ମୋହନ୍‌କେ ପାଶ୍‌ରି ନେଲେଁ ଘାଏ
ମନ୍ ରମ୍‌ସି ନିମିଷ୍‌ଟାକେଁ ଦୁସ୍‌ରି ଠାନେ ହାଏ । ।।୪୯।।

ପାଶ୍‌ରିଁ ଥରେ ମନୁ ମୁଇଁ ଖସ୍‌ରେଇ ଭଗବାନ୍
ପାଶ୍ ବଲିଁ ଆଶ୍‌ରି ଗଲି ବନ୍‌ଏ ଦୂରିଆ ଠାନ୍ । ।।୫୦।।

ହେଲା ଯାହା କହେବାର୍ କେ ଲାଗ୍‌ସି ମହା ଲାଜ୍
ହେଲା କଲେଁ ମହାପୁରୁକେ ମନେ ସଏତାନ୍ ରାଜ୍ । ।।୫୧।।

ବୀନାଧାରୀକୁଁ କହେଲିଁ ଆମର୍ ଶୁନ୍‌ବାର ଲାଏକ୍ ଯଦ୍‌ରି
ବିନା ସଂକୋଚେଁ କହ ମୁନି ଟିକେ ନାଇଁ ହଦ୍‌ରି । ।।୫୨।।

ତପ୍-ସଂପଦ୍-ଧନୀ ମୁନି ମୁଲ୍‌କି ମୁଲ୍‌କି ହସି
ତପଦ୍ ଦିନର ଚନ୍ଦନ୍ ଲେଖେଁ କଥା ଗଲେ ବର୍‌ଷିଁ । ।।୫୩।।

''ଥରେ ମୁଇଁ ବୁଲୁନ୍ ବୁଲୁନ୍ ପୁହଁଚ୍‌ଲି ଗୁଟେ ଠାନ୍
ଥରେ ଦିହ୍‌, ପୁଲକୁ ଥାଏ ଭକ୍ତି ରସେଁ ପ୍ରାନ୍ । ।।୫୪।।

ମହାପୁରୁ ସେ ଠାନେ ବସା ବାନ୍ଧ୍‌ଲା ଲେଖେଁ ଥାଇ
ମହା ବ୍ରହ୍ମଜ୍ଞାନ୍-ରସେଁ କଲେ ଇଥିଁ ତାହିଁ । ।।୫୫।।

ତାର୍ ତିଆରି ଜଗତ୍ ସତେଁ କେଡ଼େ ସୁନ୍ଦର୍ ଆଏ
ତାର୍‌ତମ୍ ତାର୍‌ଠାନୁ ନିଜର୍ ଭଲୁଁ ଭଲା ଥାଏ । ।।୫୬।।

ସେ ଭାବ୍‌ନା ଭିତ୍‌ରେଁ ପଶି ସବୁ ଗଲିଁ ଭୁଲି
ସେ ବାବ୍‌ଦେଁ ଭାବି ବ୍ରହ୍ମ ରନ୍ଧ୍ରେଁ ରହେଲି ବୁଲି । ।।୫୭।।

ଭର୍‌ଲିଁ ଆଏଲା ଭାବ୍-ସମୁଦର୍ ଭାସ୍‌ଲିଁ ବୁଲିବୁଲି
ଭର୍‌ପୁର-ବ୍ରହ୍ମାନନ୍ଦ୍ ଘରର୍ ଦୁଆର୍ ଗଲା ଖୁଲି । ।।୫୮।।

ସେ ରସ୍‌କେ ପିଇ ପିଇ ହେଲି ପୂରା ବାଏ
ସେ ରହନି ସୋର୍ ଅଛେ ପାଶ୍‌ରି ନୂହେ ଘାଏ । ।।୫୯।।

ସରଗ୍ ରଜା ଜାନି ମୋର୍ ତପେଁ ହେବାର୍ ଭୋଲ୍
ସର୍‌ଶୁଖ୍‌ଲା ତାର୍ ସବୁଦିନର୍ ତପ୍‌ଚୋର୍ । ।।୬୦।।

ଦିହର୍ ଭୋକ୍‌କେ ମେଟାବାର୍ କେ ଧରି ସବୁ ଖାଜା
ଦିହ୍-ହୀନ୍ କାମ୍-ରଜା ଆଏଲା ଦେଖ୍‌ବାକେ ମୋର୍ ମଜା । ।।୬୧।।

କାମର୍ ବୁଆର୍ ଗଡେଁ ଥିଲିଁ କାମ୍ କାହିଁ ପାଏତା ?
କାମ୍‌ନା ହୀନ୍ ମତି ଥିଲା ବ୍ରହ୍ମ ରହେଲା ସାଏତା । ।।୬୨।।

କାମ୍‌ନା ଥିଲା ବ୍ରହ୍ମ ରସେଁ କାଁ କର୍‌ତା କାମ୍ ?
କାମ୍ କଲା ନାଇଁ ଇନ୍ଦ୍ରର୍ କାମ୍ ଧଏନ୍ ରାମ୍ ! ।।୬୩।।

କାମ୍-ରଜା ତ ଲଜେଇଁ ଗଲା ହଜେଇ ବସ୍‌ଲା ମାନ୍
କାଁ ମର୍‌ତା ? ମାଫ୍ କଲିଁ ପଲାଲା ପାଇ ପ୍ରାଣ୍ । ।।୬୪।।

ବଡ଼େ କାମ୍‌ଟେ କଲିଁ ବଲିଁ ଉଷତ୍ ହେଲିଁ ଯେତେ
ବଡ଼େ ବୃଷାଲ୍ ହଏଁ 'ମୁଁକାର୍' ବୁଟା ମାରେ ସେତେ । ॥୬୫॥

ସଁଭ୍ରି ଆଏଲା ଅହଂକାର୍ ଉଭି ଗଲା ଓଁକାର୍
ସଁଭ୍‌ଲେଇ ନାଇଁ ହେଲା ଗର୍ବ୍ ଅତି ଭୟାଙ୍କାର୍ । ॥୬୬॥

ଫୁଲ୍‌ଶର୍‌କେ ଜିତ୍‌ଲି ବଲିଁ ଫୁଲି ଉଠ୍‌ଲା ମନ୍
ଫୁଲ୍ ପୁଲା କଲା ଅଭିମାନ୍ ପୁଲ୍‌କି ମର୍‌ଲା ତନ୍ । ॥୬୭॥

ମହାଦେବ୍ ପରେ କେଭେଁ ଦିନ୍‌ଏ ଜିତିଥିଲେ କାମ୍‌କେ
ମହାନ୍ ଢ଼ଙ୍ଗେଁ ସଭେ କହେସନ୍ କେ ପାରେ ସେ କାମ୍‌କେ ? ॥୬୮॥

ପହେଲା କରି ତାହାକୁଁ କହେମି କହେଲା ଅଭିମାନ୍
ପହ୍‌ଦିଲା ବାଟ୍ ଆଏତ ପୁହୁଁଚିଁ କଲିଁ ତାକର୍ କାନ୍ । ॥୬୯॥

ପାର୍‌ବତୀ-ପତି ନିଜର୍ ମନେ ନିଜର୍ ପାର୍‌ଲା ପନ୍
ପାର୍‌ଲି କହି ବଲିଁ ତାକର୍ ଇପାର୍ ସେପାର୍ ମନ । ॥୭୦॥

ପରର୍ ଦୋଷ୍ ନିଜର୍ ଗୁନ୍ କହେବାକୁଁ ନାଇଁ ପାପ୍
ପର୍‌କ୍ରୁତି ବଶୁଁ କହେସୁଁ ସିନା ସିଧା ହେଁସୁ ସାଫ୍ । ॥୭୧॥

ଉଦାର୍ ଆ'ନ୍ ତ ସୁଧାର୍ ଭାବେଁ ହଁସି କହେଲେ ଶିବ୍
ଉଦ୍ଧାର୍ ପାଏ କାମ୍ ଦାଉନୁ ତୁମର୍ ନାମେ ଜୀବ୍ । ॥୭୨॥

ତମର୍ ଲାଗି ଇଟା କେନ ଆଏ ବଡ଼େ କବାର୍
ତମ୍ ଗୁଣାଧୀନ୍ ମାନ୍‌କୁଁ ସିନା ଡରାଏ କାମ୍ ଲବାର୍ । ॥୭୩॥

ମତେ କହେଲ ବନ୍‌ଏ କଲ କହେବ ନାଇଁ କାହାକୁଁ
ମତେଁ ମତେଁ ଥିବ ନାଇଁ ଶୁନାବ ଚକ୍ରବାହାକୁଁ । ॥୭୪॥

ଜନ୍‌ଏ ଏକ୍‌ଲା ଥିଲେ ନିଜେଁ କାମ୍-ସଂଗ୍ରାମେ ଜିତା
ଜନାଇ ନେଲେଁ ବିଷ୍ଣୁକୁଁ କାଏଁ ତାକର୍ ନାଁ ଆର୍ ଥିତା ? ॥୭୫॥

ଶୁନାବାକେ ତାହାକୁଁ ହେଁଥିର୍ ଲାଗିଁ କରନ୍ ମନା
ସୁନାକେ ପୁଡ଼େଇ କୁଇଲା ଯେନ୍ତା ହେସି ଉନ୍‌ମନା । ॥୭୬॥

ମହାଦେବ୍ ସୁନା ହଇଁ ରହେଲେ କୁଇଲା ମୁଇଁ ଖାର୍
ମହାନ୍ ଗର୍ବେ ପାହା ବଢ଼େଇ ଗଲି ବଏକୁଁ ଠ ପାର୍ । ॥୭୭॥

ବଏକୁଁଠ ପତି ବାଏ ହେତେ କାଏଁ ମୋର୍ କଥାକେ ଶୁନି
ବଏଲେ ଉଲ୍‌ଟା ମଙ୍ଗଲ୍ ତମର୍ ହେଉ ମହାମୁନି ! ॥୭୮॥

ଆଶୀର୍ବାଦ୍ ଇ କଥାର୍ କେତେ ପରେଁ ଜାନ୍‌ଲି ତାକର୍
ଆସି ଦେଖ୍‌ଲିଁ ଦେଶ୍‌ଟେ, ନୁର୍‌ଲେଁ ନାଇଁ ଜଗତ୍ ଯାକର୍ । ॥୭୯॥

ଶିଲ୍‌ନିଧି ସେ ଦେଶ୍‌ର୍ ରଜା ବିଶ୍ୱ ମୋହିନୀ ଝି'
ଶୀଲ୍ ଗୁନ୍ ରୂପେଁ ଘିନି ରଖିଲା ମୋର୍ ଧୀ । ॥୮୦॥

ବର୍ ବର୍‌ବା ନିଜର୍ ମନେ ହଏ ସ୍ୱୟଂବର୍
ବର୍‌କଷି ମୋର୍‌ମନ୍ ଭିତ୍‌ରେଁ କାମ୍ ହଏ ବର୍‌ବର୍ । ॥୮୧॥

ନାକ୍ ରଶି ଦିଆ ବଲଦ୍ ବାଗିର୍ ଯେନ୍ତା ଚ଼ଲାଏ ଚାଲେଁ
ନାକ୍‌ରା ବୁତା କଲିଁ ଏଭେଁ ସୋର୍ କର୍‌ଲେଁ ଭାଲେଁ । ॥୮୨॥

କାଏଲ୍ କହୁଥିଲା କାମ୍‌କେ ଜିତ୍‌ଲିଁ ବଲିଁ ଯେନ୍ ନାରଦ୍
କାଏଲା ଆଜିର୍ ବିହା ହେବାକେ ବୁହି ଅବାରିତ୍ ଦରଦ୍ । ॥୮୩॥

ଚ଼ହଁରା ଦିଏ ମୋହିନୀ ଜେମାର୍ ରୂପ ଗୁନ୍ ମୋର ଆଗେଁ
ଚେ଼ହେରା ମୋର୍ ନାଏଁନ ନୁକୋ କାହାର୍ ଠାନୁ ମାଁଗେଁ ? ॥୮୪॥

ଧିଆନେ ଦେଖେଁ ବିଷ୍ଣୁର୍ ରୂପ ଲାଗେ କେଡେ ଅଏନ୍
ଧୀ-ଆନ୍ ହେବା ଦେଖିଲେଁ ଜେମାର୍ ବର୍‌ବା କରି'ମାଏନ୍ । ॥୮୫॥

ଭଗବାନ୍ ଆଗେଁ କହେଲିଁ ଲାଜେଁ ଲାଜେଁ ଶିରୀମାନ୍ !
ଭଗତ୍‌କେ ଘାଏ କର୍‌ତ କାଏଁ ତୁମ୍‌ର୍ ରୂପ୍‌ଦାନ୍ ? ॥୮୬॥

ଦେବ ବଏଲେଁ ସ୍ୱୟଂବର୍‌କେ ଯାଏତିଁ ହେତିଁ ବିହା
ଦେବ୍ ସମ୍ରାଟ୍ କହେଲେ ଦେମି ଯାହା ମଙ୍ଗଲ୍ ଦିଆ । ॥୮୭॥

ଆଡ଼ମ୍ବରେଁ ସ୍ୱୟଂବର୍ ସଭା ଚାଲିଛେ ଧୂମ୍
ଆଡ଼ ଆଖିଁ ବି ଦେଖିଲେଁ ଜନ୍‌ଏ ଖାଇଁଯିବା ଗୁମ୍ । ॥୮୮॥

ସରଗ୍ ସଭା କାହିଁ ପାର୍‌ବା ଯେନ୍ତା ହଇଛେ ସଜା
ସର୍‌ଲଗ୍ ସବ୍ ଦିଗେଁ ଉକିଆ କେତେ ରକ୍‌ମେ ଖଁଜା । ॥୮୯॥

ଦୁଆରେଁ ଦୁଆରେଁ ଝୁଁଟି ଆମ୍ ତରନ୍ ଡ଼ାଡେଁ ଡ଼ାଡେଁ
ଦୁହାରି ହୁଅନ୍ ଦେଖନ୍ ହାରୀ ଠିଆଦ୍ ଆଡେଁ ଠାଡେଁ । ॥୯୦॥

ଜହର୍ ମାନେ ଲହର୍ ମାରନ୍ ଆମ୍ ତର୍‌ନେ ଉହୁଲି
ଜହ ହେଲେଁ ରତନର୍ ବି ଦାମ୍ ଯାଏ ସି ଉହୁରି । ॥୯୧॥

ନାଚ ଗୀତର୍ ସୀମା ନାଇଁ କିସମ୍ କିସମ୍ ବଜା
ନାଁ ଚର୍ଚ୍ଚା ନାହିଁ କାହିଁ କମ୍ ଥିବାର ଖଁଜା । ॥୯୨॥

ହଜାର୍ ହଜାର୍ ରଜା ଆସନ୍ କେ ପଟାରେ ବଏସ୍
ହଜାଇ ନିଏ ବୁଧି ବିଚାର୍ ବିହା ହେବାର୍ ଅଏସ୍ । ॥୯୩॥

ଆଶର୍ ବଶେଁ ବସେଁ ମନେ ବିଷର୍ ଅଏନ୍ ବେଶ୍
ଆସକ୍ତ୍ ଆଏଁ ଡ଼ର୍ ନାଏଁନ ନାରେଁ ପର୍‌ବାର୍ ଲେଶ୍ । ॥୯୪॥

ଆଶୁତୋଷ୍ ଆହୁଁ ଦୁଇ ରୁଦ୍ରଗଣୁ ବାଛି
ଆସୁନ୍ ଆସନ୍ ନେଲେ ମୋର୍ ଦୁହେ ଆଖି ପାଖି ।

ଜଗ୍‌ମୋହିନୀ ଆସୁନ୍ ଆସୁନ୍ ସରଗ୍ ସୁନ୍ଦର୍ ସଭାକେ
ଜଗ୍‌ଜାହିରି ଦୁହେ ହଁସନ୍ କିହେ ନାହିଁ କହେବାକେ । ॥୯୬॥

ବିଶ୍ୱମୋହିନୀ ସଭାକେ ଆଏବାର୍ ସଭେ ଥିଲେ ଟାକି
ବିଷ୍ ମିତାଲ୍ ଅସ୍‌କଟାଲା ସେ ମତେ ଦେଖି ତାକି । ॥୯୭॥

ପାଶ୍‌କେ ମୋର୍ ନାଇଁ ଆଏଲା, ମୋର୍ ବସ୍‌ଲା ଧାଡି
ପାଶ୍‌ରି କରି ଦୁସ୍‌ରା ଧାଡି ମାନ୍‌କୁଁ ଯାଏ ମାଡି । ॥୯୮॥

ଆର୍ ମୁଡସେଁ ହରି, ଦେଲା ତାକର୍ ବେକେଁ ହାର୍
ଆଲ୍‌ତି ଦେଲା ଭକ୍‌ତି ଥିଁ ମୁଡ୍ ଲୁହିଁ ବାର୍‌ବାର୍ । ॥୯୯॥

ଖୁସାଲା ମୁହୁଁକେ ଦେଖି ମୋର୍ ଦୁହିଁ ରୁଦ୍ର ହସନ୍
ଖୁର୍ସା ଖାଏଲା ଲେଖେଁ ଦୁହେ ଉଷଡ୍ ନଦୀଁ ଭାସନ୍ । ॥୧୦୦॥

ମତେ କହେଲେ ଜାନ୍‌ବ ସବୁ ଦେଖିଲେଁ ଦରପନ୍
ସତେଁ ମତେ ପାନି ଦେଖିଲିଁ ମୋର୍ ସୁନ୍ଦର ପନ୍ । ॥୧୦୧॥

ସର୍‌କିଁ ଗଲିଁ ସୁରତା କରି ହରିବ୍ କଥା ଘାଏ
ସର୍‌ମି ମଲିଁ ମାକର୍ ମୁହଁଟେ ମତେ ମିଲ୍‌ଲା ହାଏ ! ॥୧୦୨॥

ଆଏଲା ବେଲ୍‌କେ ବିଷ୍ଣୁ ସାଙ୍ଗେ ମୋହିନୀ ଆର୍ ଲଖିମୀ
ଆଏଁଖିକେ ଆସୁଁ ମନକେ ଲାଗ୍‌ଲା ବନିହାଁ ଦିନର୍ ଜଖିମୀ । ॥୧୦୩॥

ଅଭିଶାପ୍ ସାଁଗେଁ ଉଦ୍‌ଗାର୍‌ଲିଁ ମନର୍ ଦୁଖ୍
ଅଭିଳାଷ୍ ପୂରାଲ ହରି ! ଦେଇ ମାକର୍ ମୁଖ୍ । ॥୧୦୪॥

ହସିଁ ଉଡାଲ ସଭା ଭିତ୍‌ରେଁ ବୋଧ୍ ହେଲାତ ମନ୍ ?
ହସିଁଆ ଧାରେଁ କର୍‌ତିଲ ମୋର୍ ରଂକଡ୍ ମାଉଁସ୍ ତନ୍ । ॥୧୦୫॥

ଭାବ୍‌ଲ ମାକର୍ ଛାର୍ ଛିକର୍ ହଁସ୍‌ବାର୍ ଜୀବ୍ ଆଏ
ଭାବ୍-ଲୁଭିଆ ନୁର୍‌ବ ଦିନ୍‌ଏ ମାକର୍ ସାହାଯେ ଘାଏ । ॥୧୦୬॥

ନିଶାଖୋର୍ ଲେଖେଁ ହଁସୁଥିବାର୍ ରୁଦ୍ରଗଣ୍
ନିଶାଚର୍ ହଇଁ ଚାଖିବେ ହଁସ୍‌ବାର ଫଲ୍-ଖଣ୍ । ॥୧୦୭॥

ଉଦାର୍ ଆଁନ୍ ତ ଗଦାଧର୍ ଶାପ୍ ନେଲେ ମୋର ଛିନି
ଉଦ୍ଧାର୍ କଲେ ସୁଧାର୍ ଭାବେଁ ଅଜ୍ଞାନତା ଚିହ୍ନି । ॥୧୦୮॥

ଭଗବାନ୍ କେତେ ନିର୍ମଲ୍ ମୁଇଁ କେତେ ବନ୍ଦ୍ ପାଧୀ
ଭଗଦ୍ ଭୁଲେଇଁ ଜଗଦ୍ ବୁଲେଁ ତପୀ ନୁହେଁ ମୁଇଁ ତାପୀ ।		||୧୦୯||

ଅଭିମାନ୍ ମିଶା ଅଭିଲାଷ୍ ନିଶା ଘାରଲା
ଅବିନାଶ୍ ବଲିଁ ବିନାଶ୍ ବାଟୁଁ ଘିଚି ପାର୍ଲା ।		||୧୧୦||

ଗୁରସ୍ ରୁକା ତୁଲି ଥିଁ ତାର୍ ଲଟା ହେବାର୍ ଜାନି
ଗୁର୍ଦୁ ବିରସ୍ ଚାଷୀ ଯେନ୍ତା ହେସି ଘାଁଟି ସାନି ।		||୧୧୧||

ଭଗଦ୍ ଖେତେଁ ମୁଁକାର ଲଟା ବୁଟା ମାର୍ବାର୍ ଜାନି
ଭଗବାନ୍ ଉସ୍କାଇ ନେସନ୍ କିଛି ନାଇଁ ମାନି ।		||୧୧୨||

କର୍ବାକେ ଯେ ଶକ୍ତି ଦେଇ ଦେସି ଅଧିକାର
କର୍ତା ସେ ବଲି ଟିକେ ନାଇଁ କଲେଁ ବିଚାର୍ ।		||୧୧୩||

ଫଲର୍ ବେଲ୍‌କେ ମଲର୍ ମଲର୍ ଭଲ୍ ହେଲେଁ ନିଜେଁ
ଫଲ୍‌କେଇ ନେସି ମହାପ୍ରୁ ଆଡ୍‌କେ ଖରାପ୍ ହେଲା ଚିଜେଁ ।		||୧୧୪||

ପରମ୍ ପୁରୁଷ୍ ଦୁରୁଶ୍ ହେସି ଜାନ୍‌ଲେ ସିନା ଦେଖି
ପର୍ତଖ୍ ରୂପ୍ ଉଡାଲ୍ କର୍ସି ମୁଁକାର୍ ହଇଁ ଟେକି ।		||୧୧୫||

କବାର୍ କମ୍ ଭିତ୍‌ରେଁ ଖାଲି ମୁର୍ଛି ପାର୍ଲେ ମୁଁ-କାର୍
କବାଟ ପଡେ ଉବାଟ୍ ପାର୍ ସଦ୍ ହେସି ସାଉକାର୍ ।		||୧୧୬||

ବଢି ଆଏଲା ରାଏଦ୍ ଜାନି ନାଇଁ ବଢେ ଚର୍ଚା
ବଢିଆ ଆ'ନ୍ ଋଷି ତାକର୍ ଭାବ୍ ବନ୍ଏ ପର୍ଛା ।		||୧୧୭||

ପରମ୍ ବ୍ରହ୍ମଜ୍ଞାନୀ ଗଲେ ନିଦର୍ ସୁଖର୍ କୋଡ୍‌କେ
ପରତଖ୍ କରି ଜାନନ୍ ସେ ଆତ୍ମାର ସବୁ ମୋଡ୍‌କେ ।		||୧୧୮||

ସାର୍ଲେ କହି ସଦାନନ୍ଦ୍ ସଭାଗଲା ଉଖ୍‌ଲି
ସାର୍ କଥା ମାନ୍ ଶୁନି ସଭେ ସୁଖେଁ ଗଲେ ଉପ୍‌ଲିଁ ।		||୧୧୯||



# ପାଉଚ୍-୯

# (ବାଲ୍ମୀକି ଚରିତ)

ଆର୍ କେନ୍ ପାର୍ ଯିବାର୍ ଲାଗି ଉତେଲ୍ ହୁଏ ବେଲ୍
ସାରି ଆଏଲା ବାଗିର୍ ସତେଁ ଆଜିର୍ ଇନିର୍ ଖେଲ୍ । ।।୧।।

ଆଖିରି ଜାନି ସାଁଖିଲି ବସେ ବିଖିରା ତେଜ୍ ସାରା
ଆଶ୍ରା ନୁରେ ଆଶ୍ରମ୍‌ନେ ଗଛ୍ ତଲ୍ ତଲ୍ ଖରା । ।।୨।।

ଦିନ୍‌ପତି ଗଲେଁ ମୋର୍ ପତି ଆଏବେ କହେ ଛାଏ
ରଖି ହେବା କାଏଁ ? ଗୋଡ୍ ତଲ୍ ତଲ୍ ହେଲେଁ ଯେତେ ଘାଏ । ।।୩।।

ବାଲକ୍ ଆନ୍ ମନେ ବାହାରେଁ ବେଢ଼ଲେଁ ବି ଜରା
ଋଷି ବସି ସମର୍ ଛାଲେଁ ଦିଶନ୍ ଆତମ୍ ହରା । ।।୪।।

ପାଚ୍‌ଲା ମୁଡେଁ ଖୋବ୍ ସୁନ୍ଦର୍ ଧୋବ୍ ମେଛା ଡାଢ଼ି
ପରମାୟୁ କାଏଁ କାପ୍‌ଲି କରି ଫେଫଲ୍ ଦିଏ ଛାଡ଼ି । ।।୫।।

ଧିଆନେ ଅଛନ୍ ଋଷି ବାହାର୍ ଗିଆଁନ୍ ଅଛେ ହଜି
ସୀତାରାମ୍ ଶବ୍‌ଦେଁ ସଭା ତୁର୍‌ତି ଗଲା ମଜି । ।।୬।।

ତୁମ୍ବୁରୁ ସୋର୍ ଘୁମ୍‌ରି ଉଠେ ବୀନାର୍ ଲହର୍ ଝଁକ୍‌ରେ
ହରିବୋଲ୍‌ନେ ପୁଲ୍‌କେ ଶରୀର୍ ରୁଆଁ ସମ୍‌କର୍ ଟାଁକ୍‌ରେ । ।।୭।।

ସଭା ଆଡ଼୍‌କେ ଦେଖିଲେ ଋଷି ଧ୍ୟାନ୍ ସମ୍‌ଦରୁଁ ଉପ୍‌କି
ଶୁନ୍‌ବାର୍‌କେ ସଭା ସାରାର୍ ମନ୍ ଉଠ୍‌ଲା ଉଦ୍‌କି । ।।୮।।

ହେ ରାମ୍ କହି ମୁଡ୍ ଲୁହେଇ କହେଲେ ମହାରଷି
ସକାଲେଁ ନାଇଁ ଆସି ପାରି ମନ୍ ନୁହେ ମୋର୍ ଖୁସି । ।।୯।।

କାଁ କର୍‌ତି ? ନାରଦ୍ ଆଏଲେ ସହଜେଁ ମୋର୍ ଗୁରୁ
ବ୍ରହ୍ମ ଜ୍ଞାନୀ ମୋହର୍ ମନେ ସଏଦ୍ ମହାପୁରୁ । ॥୧୦॥

ମୋର୍ ଲାଗି ଯାହା କରିଛନ୍ କାହାରି ଲାଗି କିହେ
ମୋର୍ ଜାନ୍‌ତକେଁ ଇ ଦିନ୍‌ତକ୍ କେଭେଁ କରନ୍ ନିହେ । ॥୧୧॥

ଯେ ଯଦ୍‌ରି କାହାରି ଲାଗି କେଭେଁ କରିଛେ କିଛି
ସେ କଥାକେ ପାଶ୍‌ରି ନେଲେ ସଭେ କର୍‌ସନ୍ ଛି'ଛି' । ॥୧୨॥

ଉପକାର୍ କଲା ଲୋକ୍‌କେ ଯେ ଯାଏସି ଭୁଲି
ଦୁର୍ଗୁନିଆଁ ବଲି ଦୁନିଆଁ ସାରା ହେସି ଗୁଲି । ॥୧୩॥

କୁଶ କହେଲା ଶୁନ୍‌ତ ବାବା ! ନାରଦ୍ କଲା କାମ୍
ଆମର୍ ଶୁନ୍‌ବାର୍ ଲାଏକ୍ ଆଏତ, ପୂରାତ ମନସ୍କାମ୍ । ॥୧୪॥

ମୁନି କହେଲେ କହି ଶୁନି ପାର୍‌ଲେଁ ଭକ୍ତର୍ ଗୁନ୍
ଭଗବାନ୍ ହେସନ୍ ଉଷତ୍ ତାକର୍ କଥାନୁ ଦୁଗୁନ୍ । ॥୧୫॥

ନାରଦ୍ ବ୍ରହ୍ମ ଦର୍‌ଶୀ ଆନ୍ ବ୍ରହ୍ମ ସାଙ୍ଗେଁ ସମାନ୍
ଭଗବଦ୍‌କଥା ଲେଖେଁ ଆଏ ଭକଦ୍ କଥା ମାନ୍ । ॥୧୬॥

ତାକର୍ କଥା ଶୁନ୍‌ବାର୍ ଲାଏକ୍ ଆଏ ସମ୍‌କର୍ କାଯେଁ
କଥା କିନ୍ଦ୍ରାବାର୍ ନୁହେ କେନ୍‌ସି ମିଦ୍‌ରେଁ ଆଯେ ବାଜେ । ॥୧୭॥

ନାରଦ୍ କଥା କହୁଁ ହେବା ନିଜର୍ କଥା ହାଜର୍
ହେବା, ସହଜେଁ ହେଁଥିରୁ କେନ୍ କଥା ହେବା ଲାଜର୍ । ॥୧୮॥

ହେଁ କାରନୁ କହେବାର୍‌କେ ଘୁଚୁର୍ ପୁଚୁର୍ ହଏଁ
ଆଗ୍ରହ୍ ଟାଲି ନାଇଁ ହେବାର୍ ଶୁନ୍‌ଅ ହେଲେଁ କହେଁ । ॥୧୯॥

ଯେନ୍ ବାଲ୍‌ମୀକି ଆଜିର୍ ତୁମର୍ ସାମ୍‌ନେ ଅଛେ ବସି
ନାଇଁ ଥାଇଁ ଯୋଗୀ ମୁନି ରଷି, କହନ୍ ହସି । ॥୨୦॥

ଆଚ଼ାର୍ ବେଭାର୍ ବୁଦ୍ଧି ବିଚ଼ାରେଁ ଥିଲା ଅନାଏତ୍
ପେଷା ନେ ସେ ଥିଲା ହରୁମେଷା ଡକାଏତ୍ । ||୨୧||

ନାଆଁ ରତ୍‌ନାକର୍ ଡର୍ ଥିଲା ସେ ନାମେ
ଗାଆଁ ଛାଡ଼ି ନାଇଁ ଯାଁନ୍ କିହେ କେନ୍ ସି କାମେ । ||୨୨||

ଚ଼ଲାବାଟେଁ ଗଲା କାଟି କରେ ଲୁଟ୍‌ପାଟ୍
ଠେଁଠିଆଗିରି ବୁର୍ଣ୍ଣା ଥିଲା ଝାର୍ ଘର୍ ଘାଟ୍ । ||୨୩||

ମହାପ୍ରୁ ହଇଁ ଆଏଲେ ନାରଦ୍ ନିୟତିର୍ ନିର୍ଦ୍ଦେଶେଁ
ଅମ୍‌ରିଁ ଗଲା ରତ୍‌ନା ଡର୍‌ଡ଼ରାନି ଡ଼କେତ୍ ବେଶେଁ । ||୨୪||

ନାଇଁ ଭାବ୍‌ଲା ବାବାଜୀ ଆଏ ଟାବ୍‌ଲି ଥୁଇଁ ବେକେଁ
କହେଲା ଫୁଁଫ୍‌ଲା ବାବା ! ବଅଁଚୁତ୍ ନାଇଁ ମୋର୍ ଦେଖେଁ । ||୨୫||

ବାବା କହେଲେ ମୋର୍‌ନେ ଯେନ୍ ଧନ୍ ଅଛେ ଭାଇ !
ଦେମି, ହେଲେଁ କାଁ କରମ୍ ତୋର୍ ମୁନୁଷ୍ ଜନମ୍ ପାଇ । ||୨୬||

ବାଘ୍ ଭାଲୁକେ ଦେଖ୍ ଲୁକେ ନାଇଁ ଡର୍‌ବାର୍ ପଛେ
ତୋର୍ ନାଁ ଶୁନି ଜୀବନ୍ ଆଶ୍ ନାଇଁ ରଖ୍‌ବାର୍ ରଁଚେ । ||୨୭||

ରତ୍‌ନା କହେ ବାବା ! ତୁଇଁ କାଏଁ ଜାନ୍‌ଭ ସଂସାର୍
ହଜାରେ ଦୁଖର୍ ବଜାର୍ ପଛେଁ ଅରନ୍ ଗରସାର୍ । ||୨୮||

ଗୁଟେ ପେଟ୍ ଥିଲେ ମୁଟେଁ ନାଇଁ ଥିତା ଭାଲ୍‌ନି
ପାଁଚ୍ ପରାନୀ ଆଶ୍ରିତ୍ ଆ'ନ୍ ଧରି ଭୁଖର୍ ଚ଼ାଲ୍‌ନି । ||୨୯||

ନାରଦ୍ କହେଲେ ଯେ ଦେଇଛେ ଜନମ୍ ସାଙ୍ଗେ ପେଟ୍
ନାଇଁ କରାବା ପେଟର୍ ସାଙ୍ଗେ ଖାଏଦର୍ କାଏଁ ଭେଟ୍ ? ||୩୦||

ରତ୍ନାକର କହେ ସେ ଦେନେବାଲା କେ ଘାଏ
ପାଏଲେଁ ଖରନ୍ ଛଡ଼େଇ ନେତିଁ ବଜେଇ ଠାଏ ଠାଏ । ||୩୧||

ମୁହଁକେତାର୍ ଦେଖ୍‌ତି କେନ୍ତା ଦିଶ୍‌ସି ତାର୍ ଚେହେରା
ସାର୍ ଜନମ୍ ଦେଇ ଦେସି ଅସାର୍ ପେଶାର୍ ଚ଼ହରା । ।।୩୨।।

ନାରଦ୍ କହେଲେ ତୁନ୍ ପର୍ ବୋ ! କର୍‌ମେ ଅଧିକାର୍
କାହାରିଠାନୁ ବହରାଏ ନାଇଁ, କର୍‌ସି ସୀଉକାର୍ । ।।୩୩।।

ଯେନ୍ତା କାମ୍‌କେ ସେନ୍ତା ଦାମ୍ ଗୁଂଜି ବୁନ୍‌ଲେଁ ଧାନ୍
ଦାଏବା କିଏ ? କାନ୍ଦି ବୁବେଇ ହେଲେଁ ନାନାଖାନ୍ । ।।୩୪।।

ଚୁରି ହାରି ଠେଁଠିଆଗିରି ଜନ୍‌ମାଏ ସବୁ ପାପ୍
ତାର୍ ଫଲ୍ ତ ପର୍ଚ୍ଛା ମହରା କାହିଁ ମିଲ୍‌ବା ମାଫ୍ । ।।୩୫।।

ଯାହା କରୁଛୁ ଧନ୍ ନୁହେ ପାପ୍ କମାନି ଆଏ
ତୁଇଁ କରୁଛୁ ତୁଇଁ ଭୁଗ୍‌ବୁ କାହାର ଆସେ ଯାଏ । ।।୩୬।।

ତୋର୍ କମାନି ପାଁଚ୍ ପରାନୀ ଖାଇ ଜୀଇଁବାର୍ କହୁ
ପଚ୍‌ରେଇ ଆ ଜାନ୍‌ବୁ ଏକଲା ନିଜେଁ ବୁହି ରହୁ । ।।୩୭।।

ଡର୍‌ରେଇ କରି ରତ୍‌ନା କହେଲା ମତେ ବନାସୁ ବେଡ଼ା
ଘର୍‌କେ ଗଲେଁ ଟର୍‌କି ନେତୁ, ନାଇଁ ଦେଖୁ ଇ ଗେଡ଼ା ? ।।୩୮।।

ବାବାଜୀ ବେଶର୍ ଚାଲବାଜି ଛାଡ୍ ଯାହା ଅଛେ ଦେ
ନାଇଁ ଦଉତ ଜୀବନର୍ ଆଶ୍ ପାଏନ୍ ଛଡ଼େଇ ନେ । ।।୩୯।।

'ନାଇଁ ପଲାଏଁ' ନାରଦ୍ କହେଲେ ମୁହେଁ ଦରଦର୍ ହଁସି
ଘିବ୍‌ଲେଁ ଯାଏକ୍ ଯିମି, ଅଛୁ ଦଲ୍‌ଦଲି ଥିଁ ଫସି । ।।୪୦।।

''ହେନ୍ତା ହେଲେଁ ନାଇଁ ପଲାବୁ ଫିର୍‌ବାର୍ ତକ୍ ଥିବୁ''
ନାଇଁ ଥିଲେଁ ହେଲେଁ ତୁଇଁ କେନେ ବର୍‌ତିବୁ । ।।୪୧।।

ଡର୍‌ଡର୍ ହଇଁ ରତ୍‌ନାକର୍ ଏକ୍‌ମୁହାଁ ଗଲା ଘର୍
ଜନ୍ ଜନ୍ କରି ପଚ୍‌ରେଇ ନେଲା ଦୁହ୍‌ରେଇ ଥର୍ ଥର୍ । ।।୪୨।।

ମୋର୍ କମାନି ଖାଉଛ ତାହିଁ ପାପ୍ ହଉଛେ ଯେତେ
ସତ୍ କରି କହ ତାହିର୍ ଭାଗ୍ କେ ନେଉଛ କେତେ ? ।।୪୩।।

ସଭେ କହେଲେ "ଆଶ୍ରିୟ୍ କଥା ଆଶ୍ରିତ ତ ଆମେ
ଆମର୍ ଭରନ୍ ପୋଷନ୍ ହେବା ତୁମର୍ କଲା କାମେ । ।।୪୪।।

କୁଟୁମ୍‌ଟାକର୍ ବାପ୍ ତୁମର୍ ପାପ୍ ତ ତୁମର୍ ନେ
ରୋଜ୍‌କଲା ପାପେଁ ଈଖାର୍ ଦେବା କିଏ ଯମର୍‌ନେ । ।।୪୫।।

ଏତ୍‌କି ଶୁନୁ କିର୍‌କିରାନୁ ରତ୍‌ନା ଝାର୍‌କେ ଫିର୍‌ଲା
ନାରଦ୍ ପାଦେଁ ପରି ଆଏଜ୍ ହଜ୍‌ଲା ଜିନିଷ୍ ନୁର୍‌ଲା । ।।୪୬।।

ଧାଇଁ ଧାଇଁ ଧଁସଁ ହଇଁ କିଛି ନାଇଁ କହିଁ ହେଁକଉଛେ
କହେଲା କଥାର୍ ଧାର୍‌କେ ବହେଲା ଲୁହର୍ ଧାରେଁ ଛେଁକ୍‌ଉଛେ । ।।୪୭।।

କହେଲା ମହାପୁରୁ ! ତମର୍ କଥା ସବୁ ସତ୍ ଆଏ
ଜାନି ନାଇଁ ପାର୍‌ଲି ମୋର୍ ବିତ୍‌ଲା ଜୀବନ୍ ଖତ୍ ଆଏ । ।।୪୮।।

ଗୁଲ୍‌ଗୁଲା ମୋର୍ ଦେଖ୍ ମହାପ୍ରୁ ! ଦଲ୍ ଦଲି ଥି ପରିଛେଁ
ବାହାର୍ ହେମି କେନ୍ତାକରି ବଲ୍ ସବୁ ସାରିଛେଁ । ।।୪୯।।

ଛୁଟିଆ ସଂସାରୀ ଧନ୍ ଆଦର୍ କଲିଁ ଆବ୍‌ରି
ମହାଧନ୍‌କେ ମହା ମୂରୁଖ୍ ମୂଲୁଁ ଦେଲିଁ ପାଶ୍‌ରି । ।।୫୦।।

ମହାତମା ! ସେ ମହାଧନ୍ ଅଛେ ତମର୍ ଠାନେ
ତମେ କହିଛ ଦେବ ବଲିଁ ପାଏମି ନିଶ୍ଚେ ଜାନେ । ।।୫୧।।

ଉଛୁର୍ ସହି ନୁହେ ଆଉର, ଦୟା କର ତୁର୍‌ତି
ତୁମେ ଯେ ହ' ନାଇଁ ଜାନି, ମତେ ମହାପ୍ରୁ ମୂର୍‌ତି । ।।୫୨।।

ରତ୍ନାକରର୍ ଦରଦ୍‌ମଖା କଥା ନାରଦର୍ ମନ୍
ଛିଇଁ କଲା ଖନ୍ଦ୍ ଖନ୍ଦାଲି ଥନ୍ ଥନ୍ ଅକଥନ୍ । ।।୫୩।।

ବଏଲେ ମୋର୍ ମହାନ୍ ଧନ୍ ମହାପ୍ରୁର୍ ନାଁ ଆଏ
ଦଉଛେଁ ଭାଇ ! ଛିନି ନେଇ 'ରାମ୍ ' ବଲ୍ ନ ଘାଏ । ||୫୪||

ପାପ୍ ନାଇଁ ଯାହା ରାମ୍‌ନାମେ ନାଇଁ ଯାଏ
ଧରି ଜାନ୍‌ଲେଁ ତରି ଯିବୁ, ଧର୍ ଧର୍ ମୋର୍ ଭାଏ ! ||୫୫||

ଅଁଧାର୍ ନାଇଁନ ବେଲର୍ ଉକିଆ ଦେଖି ନାଇଁ ଭାଗେ
ନାଏଁନ ମଏଲା ମନ୍ ମୋହନ୍ ଥିଲେଁ ମନେ ଲାଗେ । ||୫୬||

ତିଆରି କହି ଗିଁଆନୀ ମୁନି ଧିଆନ୍ କରି ବସ୍‌ଲେ
ତନ୍‌ମନ୍ ସବ୍ ସାଆଁଟି ଆନି ପଦ୍ମାସନେ କଷ୍‌ଲେ । ||୫୭||

ନୂଆଁ ଦୁବ୍‌ସା ଗଜା ଲେଖେଁ ରୁଆଁ ଗଲେ ଟାଁକ୍‌ରି
ଅନାଧୁନିଆଁ ଭାବ୍‌ନା ମାନେ ମନ୍‌କେ ଗଲେ ସାଁକ୍‌ରି । ||୫୮||

ନାହି ଭିତ୍‌ରୁଁ କହି ଉଠ୍‌ଲେ ଓଁ ରାମ୍ ଓଁ ରାମ୍
ସବ୍ ଜୀବ୍‌ନେ ପବନ୍ ପର୍‌ଶି ଆନ୍‌ଲା ନୂଆଁ ପ୍ରାଣ୍ । ||୫୯||

ଗଛ୍ ଅଗିର୍ ଗୁଭାମାନ୍‌କୁଁ ଉଦ୍‌କି ଆଏଲେ ଫୁଲ୍
ଫୁଲେଁ ଫୁଲେଁ ରଙ୍ଗ୍‌ମାନେ ରଙ୍ଗ୍‌ବାର୍ କଲେ ମୂଲ୍ । ||୬୦||

ଦିଗର୍ ମୂଳେଁ ସୁନାର୍ ଗୁଁଡ୍ ଖରାର୍ ସାଙ୍ଗେଁ ରୂପା
ଛଏରା ଦେଖିଁ ହୀରାର୍ କନି ପତ୍‌ରେଁ ନୀଲା ଗୁପା । ||୬୧||

ଶୁଖା ଗଛ ବି ପାଆଁଲିଁ ଗଲା ଚେ଼ରେର୍ କଁଠେଁ ଗୀତ୍
ସବୁ ଆଡ଼େଁ ସୁନ୍ଦର୍ ଦିଶ୍‌ଲା ସୁତର୍ ସବୁ ଚିତ୍ । ||୬୨||

ରାମ୍ କହେବା ନିଜେଁ ବଲି ରତ୍ନାର୍ ମନ୍ ଲଲାଲା
ରାମ୍‌ର ନାମ୍ କହେଲା ମାତ୍‌ରେଁ ଟୁଁଡ୍ ତାର ବେବ୍‌ଲାଲା । ||୬୩||

ଜିଭେଁ ନାଇଁ ବସେ ରାମ୍ କରୁଥିଲେଁ ବି ଲୋଭ୍
ବଏସର୍ ଦିନେ ବଏସରା ନାଇଁ ଆଏଜ୍ କାଁ କରି କ୍ଷୋଭ୍ ? ||୬୪||

ଭାବ୍‌ସି ରାମ୍ କହେମି ବଲି ହାପ୍‌ସି କବ୍‌ରେଇ ହେଉଛେ
ସୋର୍ କର୍‌ଲେଁ କବ୍‌ରା କବ୍‌ରି ଫେର୍ ପାଶ୍‌ରି ନଉଛେ । ।।୬୫।।

ଯୋର୍ କଲେଁ ଫେର୍ ସୋର୍ ହଇଁ ତୁର୍‌ତି ଯାଏ ପାଶ୍‌ରି
ଅଗି କିଭେଁ ଅଛେ ବଲିଁ ଲାଗୁନ୍ ଭାଗେ ଖସ୍‌ରି । ।।୬୬।।

ରାମ୍‌ନାମ୍‌କେ ରମି ମୁନି ଆରାମ୍‌ନେ ସେ କପୁଛନ୍
ରତ୍ନାର୍ ମନ୍ ମୁନୁଷ୍ ଆଏବା ବଲିଁ ସେନେ ଟାକୁଛନ୍ । ।।୬୭।।

ସମାଧି-ସାଗ୍‌ରେଁ ମୁନି ନାମ୍ ଡଙ୍ଗାନେ ବସେଇ
ଆନନ୍ଦର୍ ମହା ସୁନ୍ଦର୍ ଧାରେଁ ନେତେ ଭସେଇ । ।।୬୮।।

ହେଲେଁ ରତ୍ନାର ଜୀବନ୍ ଧାର୍ କେଭୁଁ ଗଲାନ ଟୁଟ୍‌କି
ଯେନ୍ ବୁନ୍ଦେ ଗଁଟେ ଥିଲା ଆଏକ୍ ରହୁଛେ ସଟ୍‌କି । ।।୬୯।।

ରାମ୍ ଆଏଲେଁ ମୁହେଁ ଲମି ଆଏତା ଝୁମି ଯିବାର୍‌କେ
ପାରୁ ନାଇଁ ପାରୁ ଅପାର୍ ସୁଖର୍ ପାରାବାର୍‌କେ । ।।୭୦।।

ରତ୍ନା ନାଇଁ ପାରବାର୍ ଜାନି ନାରଦ୍ ଆଏଲେ ଫିରି
ଦେଖଲେ ରାମ୍ ନାଇଁ ଆସ୍‌ବାର୍ ମୁହେଁ ନାଇଁ ଶିରୀ । ।।୭୧।।

ସିଧା ନାଇଁ ପାର୍‌ବାର୍ ହେଲେଁ ଉଲ୍‌ଟା କହ ! ମରା'
କହ ଇ ଛନ୍‌କ ଗଲେଁ ଜୀବନ୍ ଗଲା ମାରା । ।।୭୨।।

ବାଜ୍‌ନିର ଆଗ୍ ଝିଦ୍‌ରୁ ପଛ୍‌ଟା ସାଁକୁର୍ ସୁନ୍ଦର ଆଏ
ଆଗ୍ ଛାଡ଼ିଁ ପଛ୍ ଧଏଲେଁ ହାତ୍‌କେ ଅଏନ୍ ଯାଏ । ।।୭୩।।

ମନ୍-ମଏଲା ବର୍ନ୍‌ହାବାକେ ରାମ୍-ନାମ୍ ବାଜ୍‌ନି
ମନ୍‌ର ଅଏରି ଖେଦ୍‌ବାର୍‌କେ ଆଏ ଅଏନ୍ ମାର୍‌ନି । ।।୭୪।।

ଏତ୍‌କି ବେଲ୍ ତକ୍ ଶୁନ୍‌ଏ ରତ୍ନାକର ରାମ୍ ରାମ୍
ନାଇଁ ପାର୍‌ଲେଁ ବି ଧରି ଶୁନ୍‌ଏ ସର୍ଲଗ ଗୁଟେ ନାମ୍ । ।।୭୫।।

ସେ ସୁରେଁ ତାର ସୋର୍‌କେ ପଶେ 'ମରା' ବଲିଁ
ଆଗ୍ ପଛ୍ ନାଇଁ ବାଆରିଁ ସେ ନାମେ ଗଲା ଗଲିଁ । ॥୭୬॥

ତାର୍ ମୁହେଁ ବି ଅନବରତ୍ 'ମରା ମରା' ଫୁଟୁଛେ
ଦିହେଁ ଥିବାର୍ ଗିଆନ୍ ଗୁଚର୍ ଅଗୋଚରେଁ ଲୁଟୁଛେ । ॥୭୭॥

ଅଲଗ୍ ନୁହନ୍ 'ରା' 'ମ' ସର୍ଲଗେଁ ହନ୍ ରାମ୍
ମୁହେଁ ମୁହୁର୍ମୁହୁ ରାମ୍ ହରେ ଦେହ୍ ଗ୍ଯାନ୍ । ॥୭୮॥

ବୁଡି ରହେଲା ରତ୍ନାକର ରାମ୍-ରସର୍-ପାନି
ନାରଦ୍ ଗଲେ ଦୁସ୍‌ରା ପାର୍‌ତାର୍ ଥିତି ଜାନି । ॥୭୯॥

ଆତ୍‌ମା କହେ ରାମ୍ ରାମ୍ ଦି'ହ୍‌କେ ଖାଏ ଡିଆଁ
ଖାନା ପିନା ନାଇଁ, ଲିଭିଁଯାଏ ଜଠର୍-ନିଆଁ । ॥୮୦॥

ବଚ୍ଛର୍ ଗୁଟାଦୁକେଁ ବିନୁଆଁ ବନି ଗଲେ ମୁନି
ଛନ୍ଦ୍ ହରଦମ୍ ରାମ କହିଁ ତାହିଁ ହେଲେ ଗୁନି । ॥୮୧॥

ଜଗ୍ ଜକାନୁ ଆଏଁଖ୍ ଦୁହିଟା ବିନୁଆଁ ନୁ ଦିଶୁଛେ
ଭିତର୍ ଗୁସିଆଁ ଆହୁରି ଆହୁରି ଭିତ୍‌ରୁଁ ଭିତର୍ ପଶୁଛେ । ॥୮୨॥

ବାଲ୍‌ମୀକି ହେଲେ ବିନୁଆଁ ଭିତ୍‌ରୁଁ ବାହାରି ରତ୍ନାକର
ନାରଦର୍ ଦୟା-ଦରଦ୍ ଦେଲା ରାମ୍-ରତ୍ନାକର୍ । ॥୮୩॥

ରତ୍ନାକର ବୁଡି ଉପ୍‌କି ନାଇଁ ପାଏବାର୍ ଥାବ୍
ମୁନୁଷ୍ ଖୁଜ୍‌ଲେଁ ମୁନ୍‌ଷେଁ ମିଲେ ମହାମୁନ୍‌ଷର ଭାବ୍ । ॥୮୪॥

ଭାବ୍‌ଗ୍ରାହୀକେ ସେ ଭାବେଁ ଭାବୁକ୍ ଭକ୍ତ ବାନ୍ଧନ୍
କହିଁ ଆଖୁଁ ପାଏନ୍ ଗରାଇଁ ମହାନ୍ ମୁନି କାନ୍ଦନ୍ । ॥୮୫॥

ଦିନ୍ କାନ୍ଦୁଛେ ସେ ଭାବ୍ ଥିଁ ମୁହୁଁ ହେଲା ନ ଲାଲ୍
ହରେକ୍ ସୁରେଁ ଟେରେ କାନ୍ଦିଁ କହେ ଗୁଡାକେ ଚାଲ୍ । ॥୮୬॥

ରାଏତ୍ କାନ୍ଦୁଛେ ଡବ୍‌ଡବାଇ ଯାଏ ଆଖିର୍ ତାରା
ଭାବର୍ ରସେଁ କାନ୍ଦି ପାର୍‌ଲେ ବୁହେ ଆନନ୍ଦ୍ ଧାରା । ॥୮୭॥

ଭାବେଁ ଶୁଭେ ସଭାଲୁକର୍ ହରେ ରାମ୍ ଶବଦ୍
ଆଶ୍ରମ୍ ନିଏ ବିଶ୍ରାମ୍ ପରେ ସଭା ପର୍‌ଲା ତବଧ୍ । ॥୮୮॥



# ପାଉଚ୍-୧୦

# ଦଶରଥ୍ ବିହା

ଗଲା ଦିନ୍ କଲା କାମର୍ ଅଗ୍‌ଲା ଭାବ୍ ମାନେ
ହରିଗୁନି ଘାଁଟି ସାନି ମନ୍ ନାଇଁବି ମାନେ । ॥୧॥

ଗପିନେଲେଁ ପାପ୍ ନିଜର୍ ଖପିଯାଏସି ଦୁଖ୍
ଫଟ୍‌କାଲେଁ ମେଘ୍ ଫଟିକ୍ ଦିଶେ ସାରା ଆକାଶର୍ ମୁଖ୍ । ॥୨॥

ତର୍ ତରାନୁ ବେଲ୍ ଉଦୁଛେ ତରା ସବୁ ଖେଦି
ମୁନି ମନେ ଉକିଆ ବଗ୍‌ରେ ଅଁଧାର୍-ଧାର୍ ଛେଦି । ॥୩॥

ପୂରୁବ୍ ଦିଗେଁ ସୂରୁଯ୍ ଉଦେ କେଡ଼େ ଉଭାଗର୍
ମୁନିର୍ ମୁହେଁ ଝଁକି ପରୁଛେ ଚେ଼ହେରା ସରାଗର୍ । ॥୪॥

ରାମ୍‌ରସେଁ ସର୍ ସର୍ କରି କଥା ପରଷନ୍ ମୁନି
କୁରୁଦ୍ କୁରୁଦ୍ ଶୁନ୍‌ଲା ଲୁକେ ସୁରୁଦ୍ କଥା ଶୁନି । ॥୫॥

କହେଲା ଲବ ଗୁରୁର୍ ପାହାତଲେଁ ଗୁରେଇ ହଇଁ
ସୂରୁଯ୍ ବଂଶର୍ କଥା ଦଶରଥ୍ ତକ୍ ଥିଲ କହି । ॥୬॥

ଅଜରାଜା ପାଦ୍‌ରୀ କରୁଥିଲେ ଖୁଜାନୁରା
କେନ୍ ରଜାର୍ ଝିକେ ଦଶ୍‌ରଥ୍ ହେଲେ ବିହାତୁରା । ॥୭॥

ବିହା ହଇଥିବେ ମହାରାଜା ଦଶରଥ୍
ଦଶ୍ ଇନ୍ଦ୍ରିୟ ଥିଲେ ପରେ ତାକର୍‌ନେ ସଂଯତ୍ । ॥୮॥

ରାଜ୍‌ପନ୍ ସାଙ୍ଗେ ଧନ୍ କ୍ଷେମ୍‌ତା ଗଦାଗଦା ପାଇ
ଇନ୍ଦ୍ରିୟକର୍‌ଠାନୁ କେତା ମନ୍ ପାଏଲା ତ୍ରାହି । ॥୯॥

ଶୁନି ଶୁନି ରାମର୍ ନାମେ ଦେଇ ହରିବୋଲ୍
ମନ୍-କରିଆନେ ରାମ୍-ନାମ୍-ରଙ୍ଗ୍ ଦେଲେ ବୋଲ୍ ବୋଲ୍ । ॥୧୦॥

ଶାଗ୍‌ରସିଆ ଗଛ୍ ଲହନେ ରାମ୍ ରସିଆ ମୁନି
ଦେଖନ୍ ରାମ୍-ଶାମଲ୍‌ବରନ୍ ବେଉଡେଁ ହଇଛେ ବୁନି । ॥୧୧॥

'ରାମ୍ ରାମ୍' ଶୁଭେ ଧୁକାର୍ ଶବଦ୍ ସାଏଁ ସାଏଁ
ରାମର୍ ଭଜନ୍ ବାଗିର୍ ଶୁଭେ ମିଟୁର୍ ଟାଏଁ ଟାଏଁ । ॥୧୨॥

ମୁନି କହେଲେ ଶୁନ୍‌ଅ ତିନେ ଦଶ୍‌ରଥର୍ ବିଷଏ
ଆଠ୍ ବଛରୁଁ ମାଁ ଛଣ୍ ବର୍ଲିଁ ଅଜର୍ ଅଘୋର୍ ସଂଶ୍‌ଏ । ॥୧୩॥

ଭର୍‌ଲେଁ ବି ବଏସ୍ କେନ୍‌ସି ଅଏସର୍ ବଏସରା
ନାଏଁନ ତ ସୁଧାର୍ ସୁଧୀର୍ କହନ୍ ରାଏଜ୍ ସାରା । ॥୧୪॥

ମା ଜାଏତ୍‌କୁଁ ଦେଖ୍‌ଲେଁ ମନେ ମାଁ ମେତାଲ୍ ମାଏନ୍
ଦୁଖୀ ରୁଗୀ ଦେଖ୍‌ଲେଁ ଆଖିଁ ରୁକେଇ ହେସି ପାଏନ୍ । ॥୧୫॥

ଭାଏ ବହେନ୍ ଲେଖେଁ ସେନ୍‌ହେ ପାଆନ୍ ଛୁଆପିଲା
ସାଙ୍ଗ ସର୍‌ସିଆ ମିଲାମିଶା ସମିଆ ପାଏଲେଁ ଭିଲା । ॥୧୬॥

ଦେଖି ବୁଢ଼ାବୁଢ଼ୀ ଆଗୁଁ ହାତ୍ ହେସି ଟେକି
କବି କୋବିଦ୍ କେତେ ମାଏନ୍ ପାଆନ୍ ନୁହେ ଲେଖି । ॥୧୭॥

ରାଜା ସାଙ୍ଗେ ରାଏଜ୍ ସାରାର୍ ହଇକରି ବି ଗେଲ୍‌ହିଆ
ଖାନା ପିନା ଦେଖାଶୁନାକେ ନୁହନ୍ ଟିଖେ ଲଲ୍‌ହିଆ । ॥୧୮॥

ମନ୍-ରାଏଜେଁ ଆନନ୍ଦ୍ ରଜା ଦୁଖ୍‌ର ନାଆଁ ନାଇଁ
ସତ୍ ପଛାପଛ୍ ବୁଲେ, ମତ୍ ନୁହେ ଯାହିଁ ତାହିଁ । ॥୧୯॥

ଇ ପିଲାକେ ଝି ଦେବାକେ ସବ୍ ରାଜାକର୍ ଶଧ୍
କୋଶଲ୍ ରଜାର୍ ଆଖିଁ ଝୁଲେ ବନ୍ଧୁ ହେତା ଅବଧ୍ । ॥୨୦॥

ଗୁପତ୍ ଖବର୍-ଖୁଜା ମାନେ କୋଶଲ୍ ରାଏଜ୍ ବୁଲି
ଅଜ ମହାରାଜ୍ ଆଗେଁ ଖବର୍ ଦେଲେ ଖୁଲି । ||୨୧||

ଭାରତ୍ ବର୍ଷର୍ ମଝା ମଝି ଅବଧ୍ ଦେଶର୍ ଥିତି
ଡଙ୍ଗର୍ ପାହାଡ଼ ଦେଶ୍ କୋଶଲ୍ ଝାର୍ ଝର୍ନାର୍ କ୍ଷିତି । ||୨୨||

ବୁହେ ମହାନଏଦ୍ ମହାନ୍ ନାଦେଁ ସୁଧାର୍ ଧାର୍
ଗୁଟେ ପାଖେଁ ଗନ୍ଧ ମାର୍ଦ୍ଦନ୍ ବିନ୍ଧ୍ୟ ଆର ପାର୍ । ||୨୩||

ମାଏଟ୍ ମାଆଁର୍ ମାୟା ମମ୍‌ତା ଛୁଆକୁଁ ଥାଏ ଆବ୍‌ରି
ମାଏନ୍ ମନ୍‌ସା ଫସଲ୍ ଫଲେଇ ସମ୍‌କୁଁ ରଖେ ଆଦ୍‌ରି । ||୨୪||

କେତେ ଯୁଗୁଁ ଯୋଗ୍ ବିଦ୍ୟାର୍ ଧାର୍ ଇନେ ବୁହେ ।
ଭୁଖେଁ ମର୍‌ବାର୍ ଦୁଖେଁ ମର୍‌ବାର କଥା ଜନା ନୁହେ । ||୨୫||

ଧିଆନୀ ଗିଆନୀ ଛାଡ଼ ସୋଜ୍ ଲୋକ୍ ସାଧନ୍ ଯୋଗ
ତିଆଗର୍ ଆଗେଁ ଆଗ୍‌ଭର୍ ଆନ୍ ଭାଗନ୍ ଦେଖୁଁ ଭୋଗ୍ । ||୨୬||

ତେଲୀ, ମାଲି, କେଉଁଟ୍ କୁମ୍ଭାର୍ ଲୁହୁରା ସହଁରା ଶବର୍
ଘର ମାନ୍‌କେଁ ତନ୍ତର୍ ମନ୍ତର୍ ଯନ୍ତର୍ ବିଦ୍ୟା ଜବର୍ । ||୨୭||

ଯଦ୍‌ରି ଆଏ ଯୋଗ୍, କାମ୍ କର୍‌ବାର୍ ଠିକ୍ ମାରଗ୍
କାହାକେ ନୁହେ ବାଆନି ସେଥିଁ ସଭେ ଆ'ନ୍ ପାରଗ୍ । ||୨୮||

ଆଗମ୍ ନିଗମ୍ ପାରଙ୍ଗମ୍ କୋଶଲ୍ ରାଜାର ଝି'
ଭାରତ୍ ବରଷ୍-ଗୁରସ୍ ହାଁଡି କୋଶଲ୍ ଜେମା ଘି' । ||୨୯||

ଜୀବ୍‌କେ ଦେଖନ୍ ଜେମା, ପିଲ୍ ପର୍‌ମାତମା ଲେଖେଁ
ସୋଲ୍ ମୁନୁଷ୍ ମହାପ୍ରୁ ପାଲ୍‌ଟି ଯାଏ ତାକର୍ ଦେଖେଁ । ||୩୦||

କେଡ଼େ ସୁନ୍ଦର୍ ଜେମା, ଦେଖି ହେସି କହି ନୁହେ
ଧିମ୍ ଧଡ଼କା କ୍ରିଡ଼ିଁଯିବେ ଆଏଁଖ୍ କାନ୍ ଦୁନେ । ||୩୧||

ଅଜ କହେଲେ ଯୁବ୍‌ରାଜ୍ ଘାଏ ଆସୁନ୍ କୋଶଲ୍ ପୁରୁଁ
ପଚ୍‌ରେଇ ଦେଖ୍‌ମା କାଁ ବଲ୍‌ବେ ବଶିଷ୍ଠ୍ କୁଲ୍‌ଗୁରୁ । ।।୩୨।।

ଇ କହେବାର୍ ବେଲେଁ ଆଏଲେ ବ୍ରହ୍ମର୍ଷି ବଶିଷ୍ଠ
ଅଛନ୍ ତାକର୍ ସାଙ୍ଗେ କୋଶଲ୍ ରାଜଗୁରୁ ଆର୍ ଶିଷ୍ଟ । ।।୩୩।।

କୋଶଲ୍ ରାଜାର୍ ଚିଠି ସାଙ୍ଗେଁ ଜେମାର୍ ଚିତ୍ରପଟ୍
ଦେଇ କହେଲେ ଦେଖ ରାଜା ଦେଖୁନ୍ ଦଶରଥ୍ । ।।୩୪।।

ଶିଷ୍ଟ୍ ଭାବେଁ ବଶିଷ୍ଠ୍ କହେଲେ ଦଏବୀର୍ କାଟ୍‌ବାଛ୍
ଇ ଆଡ୍ ସେଆଡ୍ ନୁହେ ସୋଜ୍ କରସୁ ପୁଛ୍ ତାଛ୍ । ।।୩୫।।

ପତି ପତ୍‌ନୀ ହେବାର୍‌ବେଲ୍ ଲାଗ୍‌ସି କେନ ବେଶି
କେତେ ଜନ୍‌ମର୍ ଲେଖା ଯୁଖା ଥିଲେଁ ଯାଇ ହେସି । ।।୩୬।।

ବିହା ସର୍‌ଲା ଜାକ୍ ଯମ୍‌କେଁ ରଜାଘରର୍ ଲାଏକ୍
ବିହାର୍ କଥା ତାକ୍ ପରୁଛେ ଏତ୍‌କି ଦିନ୍ ଯାଏକ୍ । ।।୩୭।।

ବ୍ରହ୍ମଚାରୀ ଭିଲିଁ ବିହା ବର୍ଣ୍ଣନା ବନ୍‌ଏ ନୁହେ
ଶୁନ୍‌ଲା କଥା ନେଇ ମନେ ଭାବ୍ ତିଆରି ହୁଏ । ।।୩୮।।

ଭାବ୍‌ନା ନେଇ ମନର୍ ଗଠନ୍ ମନ୍ ନେଇ ମୁନୁଷ୍
ତାହାକେ ନେଇ ଥିତି ଗତି ନାରୀ ହଉ କି ପୁରୁଷ୍ । ।।୩୯।।

ଦଶରଥ୍ ହାତ୍‌କେ ରାଏଜ୍ ଗଲା ଅଜ ଗଲେ ସରଗ୍
ଇ କବାରେଁ ସୂରୁଯ୍ ବଂଶେଁ ପର୍‌ଶଂସା ସର୍‌ଲଗ୍ । ।।୪୦।।

ଝିଅର୍ ବାପ୍ ସବୁ ରଜାର୍ ମନ୍ ହର୍‌ମେଷ୍ ଚାହେଁ
ଦଶ୍‌ରଥ୍ ମେତାଲ୍ ଜୁଏଁ, ପାଏଲେଁ ନାଇଁ ବର୍‌ବା କାଏଁ ? ।।୪୧।।

ଅଯୋଧ୍ୟାର ପଶ୍ଚିମେ ଅଛେ ବନ୍‌ଏ ଟିକେ ଦୂର
କଇକେୟ ରଜାର୍ ରାଏଜ୍ ଗିରିବରଜ୍ ପୁର । ।।୪୨।।

କଇକେୟ ରଜାର୍ ଜେମା ସୁନ୍ଦର୍ ଚଲାକ୍ ଚତୁର୍
ଲଢ଼େଇ ନୁ ବି ଅଡେଇ ନୁହେ କମ୍ ନୁହେ ବପୁର୍ । ।।୪୩।।

ରଥ୍ ବାହେବାରେଁ ମହାନ୍ ପାରଗ୍ ଅଁକୁଶ୍ ଧଏଲେଁ ହାତୀର୍
ଚେଷ୍ଟାଯାଏ ହଜି ନାରୀ ଅଏନ୍ ଲଏଖନ୍ ଜାତିର୍ । ।।୪୪।।

କଇକେୟ ରଜା କଲେ ଝି'ର୍ ସୟମ୍ବର୍
କେତେ ରାଜା ଆଏଲେ କରି କେତେ ଆଡ଼ମ୍ବର୍ । ।।୪୫।।

ଦିହ୍ ମୁଡେଁ କେ ହୀରାନୀଲା ମୁଡ଼ା ମୁଡ଼ା ଉଲେଇଛେ
ଅଲଙ୍କାର୍ ନାଏଁ ଅହଂକାର ଖାଲି ଝୁଲେଇଛେ । ।।୪୬।।

ପାଟ୍ ପୀତାମ୍ବର ମଠା କେ ପିନ୍ଧିଛେ ଠାଟେଁ
ହାଡ଼ଗୋଡ୍ ଫିକି ଏନ୍ତା ଚାଲେ ନାଇଁ ଧରାଏ ବାଟେଁ । ।।୪୭।।

ଅଠା ଦେଇଁ କେ ମେଛା ସାଜେ ତାହିଁ ଥାଏ ହାତ୍
ଲାଲ୍ ଆଏଁଖ୍ କାର୍ ଜନାଇ ନିଏ ଧନ୍ ଯଉବନ୍ ମାତ୍ । ।।୪୮।।

ଅଧେର୍ ବଏସିଆ କିଏ ପାଗ୍ କେ କରେ ଧନ୍
କାନ୍ ତରାର୍ ପାଚ୍ଲା ବାଲ୍ ଢାପି ଲୁକାବାର୍ ମନ୍ । ।।୪୯।।

ରଜାଛୁଆ କେ ଆସେ ବିହାର ବଏସ୍ ହୁଏ ନୁହେ
ଆଏବାର୍ ସୁରେଁ ଆସିଯାଇଛେ ଇ ପାର୍ ସେ ପାର୍ ହୁଏ । ।।୫୦।।

କିଏ ଧରେ ସିଙ୍ଗର୍ ଛଡ଼ି ହାତେଁ ବର୍କଷ୍ କରି
ଚାଲ୍‌ବାକେ କଡ଼ା, ବାଡି ନାଇଁ ଥିଲେଁ ଧରି । ।।୫୧।।

ଅବଧ୍ ରାଜ୍ ଆଏଲେ କି ସଭାର୍ ସଭେ ତବଧ୍
ବାଘ୍ ଆଏଲେଁ ଅସ୍ତାବଲ୍ ଯେନ୍ତା ନିଶବଦ୍ । ।।୫୨।।

ଅଁଧାର୍ ଥିବାର୍ ତକ୍ ତରା ଜୁଗୁର୍ ଜାଗୁର୍ ଥିଲାନ
ବେଲ୍ ଉଦିଁଆଏଲା ପହଟିଆ ଉଦା ବେଲା ନ । ।।୫୩।।

ପାଏନ୍ ଭିତ୍ରେଁ ତରେଁ ତରେଁ ତଗର୍ ଥିଲେଁ ଫୁଟି
ସେନ୍ତା ହେଲେ ଯେନ୍ତା ହେସନ୍ କଇଁ ଆଏଲେଁ ଉଠି । ॥୫୪॥

ବର୍‌ବର୍‌ନୀ ବରନ୍‌ମାଲା ଦଶ୍‌ରଥ୍‌କେ ଦେଲା
ବର୍‌କେ ଜାନି କନିଆଁ ଆନି ଦଏବୀ ଜୁଟେଇ ନେଲା । ॥୫୫॥

ଦିନାକେତେ ନୁହେ ଯାଏ ନୁହେ ମେଟେ ହଲ୍‌ଦି
ମଗଧ୍ ରାଜର୍ ଖବର୍ ଅବଧ୍ ରାଜ୍ ଆସୁନ୍ ଜଲ୍‌ଦି । ॥୫୬॥

ମଗଧ୍ ରାଜର୍ ଝି' ସୁମିତ୍ରା ତାକର୍ ସୁନ୍ଦର ପନ୍
କିଏ ଜାନ୍‌ବା କହି ? ଜାନ୍‌ଏ ଜେମାର ଦର୍‌ପନ୍ । ॥୫୭॥

ସୁମିତ୍ରାର ସୁନ୍ଦର୍ ପନ୍ ଦଶ୍‌ରଥ୍ ଶୁନ୍‌ବେ ଯେତେ
ସୁମିତ୍ରା ତାହୁଁ ଜହ ଶୁନନ୍ ଦଶ୍‌ରଥ୍ ସୁନ୍ଦର୍ କେତେ । ॥୫୮॥

ଦଶ୍‌ରଥ୍ ବିନା ଆର୍ କାହାକେ ନାଇଁ ହୁଅନ୍ ବିହା
ନେହେଲେଁ ଜୀବନ୍ ହାରି କରିନେବେ ମାହାଲିଆ । ॥୫୯॥

ବାର୍‌ତା ପାଇ ତୁର୍‌ତି ଗଲେ ଦଶ୍‌ରଥ୍ ମହାରାଜ୍
ସୁମିତ୍ରାକୁଁ ବିହା ହଇ ଫିର୍‌ଲେ ନିଜର୍ ରାଜ୍ । ॥୬୦॥

ତାର୍ ପରେଁ ସାତ୍‌ଶ ପଚାଶ୍ ରାନୀ ହେଲେ ବିହା
ଗଜ୍ ଗଜାଲା ରାନୀ ମହଲ୍ ବିନ୍ ଛୁଏଁ ମାହାଲିଆ । ॥୬୧॥

ସଂସାରୀ ଲୋକ୍ ବିହା ହେସନ୍ ପିଲା ଛୁଆର୍ କାଯେଁ
ବିନ୍ ସଂତାନେଁ କାଏଁ ସଂସାର୍; ଘୌଁଟି ହେବାର୍ ଲାଜେଁ । ॥୬୨॥

ଦେହେର୍ ଭୋକ୍ ମେଟାବାକେ ନୁହେ ବିହା ଚୂରା
ଅଦେହର୍ ଲାଗିଁ ନୁହେ, ବର୍ କନିଆଁ ଯୁରା । ॥୬୩॥

ସମାନ୍ କୁଲ୍ ସମ୍ମାନ-ମୂଲ୍ ଥିବାର୍ ଟୁକେଲ୍ ପିଲା
ଗୁଟେ ଜୀବନ୍ ହଇ ଯଦ୍‌ରି ସନ୍ତାନ୍ ଜନ୍‌ମିଲା । ॥୬୪॥

ସେ ସନ୍ତାନ୍ ପାଲି ପୁଷି ମହାପ୍ରୁ ମେତାଲ୍ କରି
ଲୋକ୍ ସମାଲ୍‌କେ ଦେଇ ପିତୃଋଣ୍ରୁ ହେବା ପାରି । ॥୬୫॥

ଭୋଗ୍ ବିଲାସ୍ ନୁହେ କେବେଁ ନାରୀ-ସହବାସ୍
ଯେ କର୍‌ସି ମହୀ ହେସି ଅହି ନରକ୍ ବାସ୍ । ॥୬୬॥

ବନ୍‌ଏ ରୂପ ଗୁନ୍ ବୁଦ୍ଧି ସାଙ୍ଗେ ମୁନୁଷ୍ ପନ୍
ବାପ୍ ଅଜାନୁ ପୁଓ ପାଏସି ସେଟା କାଞ୍ଚନ ଧନ୍ । ॥୬୭॥

ମୁନୁଷ୍ ପନ୍ ବଢ଼ି ବଢ଼ି ଘଷିଁ ମାଜିଁ ହଇ
ଦେବ୍‌ତା-ପନେ ଈ ମୁନୁଷ୍ ସରଗ୍ କର୍‌ସି ମହୀ । ॥୬୮॥

ସାତ୍‌ଶ ତେପନ୍ ରାନୀ ଭିତ୍‌ରୁଁ ପହେଲା ତିନ୍ ରାନୀ
ପାଟ୍‌ରାନୀ ବଲିଁ ରାଜ୍ ପାଟ୍ ଅଛନ୍ ଜାନି । ॥୬୯॥

ବଛର୍ ବଛର୍ ବାହାରିଗଲା ନାଇଁହେଲା ସନ୍ତାନ୍
ସମ୍‌କର୍ ମନ୍ ସମାନ୍ ଖାଁଟ୍, ଦୁଖର୍ ଦୁହୁରି ଟାନ୍ । ॥୭୦॥

ମୁଡ୍ ଉପରୁଁ ବେଲ୍ ଟଳୁଛେ ଯିମା ଚାଲ ଏତ୍‌କେଁ
ମୁନି କହେଲେ ଯେତେ କହ ରାମେନ୍ ସରେ କେତ୍‌କେଁ । ॥୭୧॥

ରାମର୍ ନାମେ ହରିବୋଲ୍ ଦେଇ ଛାଡ଼୍‌ଲେ ସଭା
ବଲନ୍ ବେଲ୍‌ହଉ ବେଲରୁ ସଭା ଅଏନ୍ ଯମକ୍ ଧର୍‌ବା । ॥୭୨॥



# ପାଉଚ୍-୧୧

# ଦଶରଥ୍ ରଜା ହାତେଁ ଋଷିପୁତ୍ର ମର୍‌ବାର

ଭଜନ୍ ପୂଜନ୍ ସାରି ଋଷି ରାମେନ୍ ଆରଂଭ କରୁଛନ୍
ଶୁନ୍‌ଲା ଲୁକର୍ ମନ୍‌କେ ମୁନି ନୂଆଁ ଢଙ୍ଗେଁ ହରୁଛନ୍ । ||୧||

କେ ବଲୁଛେ ମୁନିର୍ କଥା ଛାଡ଼ି ହଏ ନାଇଁ
ଅଟ୍‌କି ରହି ମନ୍ ଲଟ୍‌କି ରହେ ଯିବା କାହିଁ ? ||୨||

ମୁନି କହନ୍ ରାମର୍ ବିଷେ ଆପେଁ ଗୁଟେ ମହ୍‌ନି
ମନ୍ ଘିନ୍‌ବାର୍ କାଯେଁ ଆଏ ସବୁକାଲ୍‌କେ ବହନି । ||୩||

ଫଟା ମନ୍ ଯୁର୍‌ବାର୍‌କେ ରାମ୍‌ନାମ୍-ଅଠା
କାମର୍ ଫଲ୍ ରାମର୍ ନାମେ ପାଟ୍‌ସି ହଇଁ ଲଠା । ||୪||

ଉଷତ୍ ମନେ କୁଶ ଆସି ଋଷିର୍ ପାହେଁ ପରି
କହେଲେ ରଜା ରହେଲେ ନିସନ୍ତାନ୍ ହଇକରି ? ||୫||

ରଘୁବଂଶ୍ କେନ୍ତା ରହେଲା ତାକର୍ ପରେଁ କହ
କା'ର୍ ପରେଁ କେ ରଜା ହେଲେ ଜାନ୍‌ବାର୍ ମନ୍ ଜହ । ||୬||

ସେ ସବୁ ଚରିତ୍ କହ ବାବା ! ଦୟା କରି
ତୁମର୍ ଭାଷା ହରୁମେଷା ରସ୍ ରଖିଛେ ଭରି । ||୭||

ରାମର୍ ଜଏ ଗାଇ ଋଷି କୁଶର୍ ମୁଣ୍ଡ୍ ସୁଆଁଲି
କହେଲେ ମୁନି ସୂରୁଯ୍ ବଅଁଶ୍ ତୁରୁତ୍ ଯାଏ ପାଆଁଲି । ||୮||

ସେବେବେଲେଁ ବି ଦଶ୍‌ରଥ୍ ନାଇଁ ଥାଇ ନିସନ୍ତାନ
ଝି ଗୁଟେ ଜନ୍‌ମିଥିଲା ଶାନ୍ତା ତାର୍ ନାମ୍ । ||୯||

ଲୋମ ପାଦ୍ ରାଜା ଅଙ୍ଗ୍‌ଦେଶର୍ ଅଧିପତି
ମଏତର୍ ବସିଥିଲେ ଦଶରଥ୍ ମହାମତି । ॥୧୦॥

ସତ୍ କରାକରି ହଇଥିଲେ କେନ୍‌ସି କାଲେଁ ଦୁହେ
ତାହାକୁଁ ଦେବେ ପୁଓ କି ଝି ଯଦ୍‌ରି ଜନମ୍ ହୁଏ । ॥୧୧॥

ସେଥିର୍ କାଯେଁ ଶାନ୍ତା ବଢ଼୍‌ଲେ ଲୋମ ପାଦର୍ ପୁରେଁ
ନିସନ୍ତାନ୍ ଲେଖେଁ ରହେଲେ ରାଜା ଅନେକ୍ ଦୂରେଁ । ॥୧୨॥

ସବ୍ ଥାଇ ପୁଓ ନାଏଁନ କିଛି ନାଇଁ ଥିଲା ମିତାଲ୍
ଲାଗେ ବିଷ୍‌ପିତା ବାଗିର୍ ସରଗ୍ ମରତ୍ ପାତାଲ୍ । ॥୧୩॥

ରାଜ କାଯ୍ ବୁଝି ଉସ୍ତାର ଦେଖି ଝାର୍‌ପଦ୍‌ରା ବୁଲନ୍
କେନ ବନ୍ଏ ଲାଗ୍‌ବା କେବଲ୍ ମନ୍ ଭିତରେ ଗୁଲନ୍ । ॥୧୪॥

ସର୍‌ଯୂ ନଦୀର୍ ଖଁଡିଁ ଅଛେ ଗହନ୍ ଘୋର୍ ଝାର୍
ଡାଲ୍‌ଟେ ପର୍‌ଲେଁ ଫାଲ୍‌ଟେ ଗର୍‌ଜେ ଶବଦ୍ ଯୋର୍‌ଯାର୍ । ॥୧୫॥

ଫଗୁନ-ଯାଇଛେ, ଦେଖୁନ୍ ଦେଖୁନ୍ ଦୁଗୁନ୍ ହଇଛେ ଖରା
ଗଛ ଝୁରୁଛନ୍ ପଛର୍ କଥା ହଇଁ ପତର୍ ଝରା । ॥୧୬॥

ବଉଲ୍‌ମାନେ କଁଷି ହେଲେନ ମହୁଲ୍ ହେଲେ ଟୋଲ୍
ଗଛ ଟିପିନେ ଝୁପା ଝୁପା ଝୁପିଁ ହଇଛନ୍ ଠୋଲ୍ । ॥୧୭॥

ଆଗୁଆ ହଇଁ ସର୍‌ଗି ଗଛ୍ ପାଆଁଲି ହେଲା ଶାଗୁଆ
ଡି ଡି ହଇଁ ଝାର୍‌କେ ଦେଖେ ଆଏ ବାଗିର୍ ଜୁଗୁଆ । ॥୧୮॥

ପତର୍ ନାଏଁନ ଶେମେଲ୍ ଗଛେଁ ବଦ୍‌ରେଁ ଫୁଟେ ଫୁଲ୍
ଶାଗୁଆ ଭିତ୍‌ରେଁ ଆଗୁଆ ଦିଶେ ଲାଲ୍ ଗୁଲ୍ ଗୁଲ୍ । ॥୧୯॥

ତାର୍ ପଛା ପଛ୍ ମନ୍ ଉଲ୍‌ସା ପଲ୍‌ଶା ଧରେ ପାଲିଆ
ଫୁଲ୍ ସର୍ ସର୍ ଅଶୋକ୍, ସଉକ୍ କରେ ହେବା ଲାଲିଆ । ॥୨୦॥

କର୍‌ଲା ଫଲର୍ ସର୍‌ଲା ଦିନ୍ ଗୋଟ୍ ଗୋଟ୍ କରି ଝରୁଛେ
ମାଁକେ ଛାଡ଼ି ନାଇଁଯାଏ ବଲି ଗଛ ତଲେ ସିନା ଗରୁଛେ ॥୨୧॥

ହଏର୍ଡ଼ା ବେହେରା ଅଏଁଲା ଫଲ୍ ଏକାସଙ୍ଗେ ପାଚନ୍
ସାଙ୍ଗ୍ ସାଙ୍ଗ୍ ହଇ ଆଏବେ ଯିବେ ତିର୍ଫଲା ନାଁ ବାଛନ୍ । ॥୨୨॥

କୁରେ ଫୁଟିଛେ କେରା କେରା ସୁନାରି ଫୁଟେ ଝୁପା
ମର୍‌କତ୍ ଗଛେଁ କିଏ ଝୁଲାଏ କେରାକେରା ରୁପା । ॥୨୩॥

ଲଟି ବୁରୋ ସୁରୁ ସୁରୁ ପଚା ଫଲ୍ ଲୁକୋଉଛେ
କିଏ ନେଇଁଯିବା କାଏଁ କଁଟା ବାଟେଁ ଛେଁକୋଉଛେ । ॥୨୪॥

କେଁ'ନ କେନ୍ତା ଦାଆଁ ଧରିଛେ ଆଁ କରିଛେ ଜୁଏ
ଜଁତ୍ ଜାନ୍‌ବାର୍ ପଲାଲେଁ ଫାବେ ନେହେଲେଁ ଝଁପଇେ ହୁଏ । ॥୨୫॥

ଦଲ୍ ଦଲ୍ ହଇଁ ହାତୀ ଯାଉଛନ୍ ହେର୍ଣ୍ଣା ହୁଦା ହୁଦା
ଖର୍‌ହା ବର୍‌ହା ଦରାଁଡି ନୁରନ୍ କାହିଁ ଝୁର୍କୁଣ୍ଣୁ ବୁଦା । ॥୨୬॥

ଗଛ୍ ଗହଲେଁ ମାକର୍ ହନୁ ଡାହି ମାକ୍‌ରି ଖେଲୁଛନ୍
ଡାଲେଁ ଡାଲେଁ ଲେଞ୍ଜ୍ ଗୁରେଇ ତଲ୍‌ମୁହାଁ ହଇ ଝୁଲୁଛନ୍ । ॥୨୭॥

ଗୁଏ ନେଉଲା ଦୁଏଲ୍ ନୁରିଁ ଆଗର୍ ଗୁଡେଁ ଠିଆଡ୍
ଅଁଏନ୍ ଆଶ୍‌ରା ଆଶେଁ ଆହା ! ସଭେ ଇଆଡ୍ ସେଆଡ୍ । ॥୨୮॥

ସରଯୂ ନଏଦ୍ ଧାର୍ ଏବେ ଟୁଟ୍‌କି ଟୁଟ୍‌କି ଆଏଲା ନ
ଦର୍‌ହା ଦେଖି ବର୍‌ହା ପରେ ଦିହ୍ ବୁଥେ ମଏଲାନ । ॥୨୯॥

ସଲ୍‌ବଲଉଛନ୍ ଜଁକ୍ ସକ୍‌ସକ୍ ପାଏନ୍ ଦେଖି ଅଲ୍‌ପେଁ
ସାଁପ୍ ଡୁଙ୍ଗେ ଉର୍‌ଙ୍ଗି ରହି ପାଏନ୍ ତରା ତରା ଝଲ୍‌ପେଁ । ॥୩୦॥

କୁଦ୍‌ହା ଚାଲିନେ ଢୁଡ଼ା ବେଙ୍ଗ୍ ଡେଗେ ଘାଏ ଘାଏ
ଉଡ଼ିଁ ଆଏଲା ପୋକ୍ ଜୋକ୍ ଧରି ପାର୍‌ଲେଁ ଖାଏ । ॥୩୧॥

ପାଏନ୍ ପିଉଛନ୍ ହେର୍ଣ୍ଣା ହୁଦା ସମର୍ ଚିଥଲ୍ ଗଏଲ୍
ବନ୍‌ପୋଢ୍ ତାହିଁ ଝଁପେଇଁ କରନ୍ ଅଏନ୍ ପାଏନ୍ ମଏଲ୍ । ।।୩୨।।

ସୁରୁ ସୁରୁ ଝୁରି ଫଡ୍‌କନ୍ ବଡ୍ ମାରନ୍ ହୁଲ୍‌କା
ସୋଭ୍ କଥା ଥିଁ ଉପ୍‌ଲି ପରେ ବୁଦ୍ଧି ଯା'ର୍ ହଲ୍‌କା । ।।୩୩।।

ମୁଡ୍ ଉପ୍‌ରୁଁ ବେଲ୍ ଖସ୍‌ରେ ଦଶ୍‌ରଥ୍ ବୁଲେ ଏକଲା
ଛାଏ ଦେଖି ଘାଏ ରଜା ହାଏ କରି ଥାକ୍‌ଲା । ।।୩୪।।

ପାଏନ୍ ଘବ୍ ଘବ୍ ଶୁଭେ ଶବଦ୍ ନଏଦ୍ ଭିତ୍‌ରୁଁ କାହୁଁ
ରଜାର୍ କାନ୍‌କେ ଡାବିଁ ଆଏଲା ଛନ୍‌କେଁ ଚାହୁଁ ଚାହୁଁ । ।।୩୫।।

ରଜାର୍ ଆଏଁଖି କେ ନାଇଁ ଦିଶେ ପତ୍‌ରା କରେ ଉତାଲ୍ ।
ହାତୀ ପାଏନ୍ ପିଇଁ କରେ କାଏଁ ଅଏନ୍ ପାଏନ୍ ଗୁନ୍ଦାଲ । ।।୩୬।।

ହାତୀ ଅବ୍‌ଦିଁ ଶବଦ୍‌ଭେଦୀ ଶର୍‌ଟେ ରଜା କାଢ଼ି
ସେ ଶରେଁ ସଂସାର୍ ଗୁଟେ, ସଂସାର୍ ଗଲା ଛାଡ଼ି । ।।୩୭।।

ଶର୍ ପୁହୁଁଚୁଁ ପୁହୁଁଚି ଆଏଲା ମୁନୁଷ ପିଲାର୍ ସ୍ୱର୍
ଏ ବୁଆ ! ଏ ମାଗୋ ! ମଲିଁ କାହୁଁ ଆଏଲା ଶର୍ ? ।।୩୮।।

ନର୍‌ଦିଁ ଗଲେ ଦର୍‌ଦୀ ରଜା ମୁନୁଷ୍ ଟୁଁଡ୍ ଜାନି
ଦେଖ୍‌ଲେ ସଡ୍‌କେ ସଡ୍ ମୁନୁଷ୍ ଛୁଆ ପରିଛେ ପାନି । ।।୩୯।।

ପାନିର୍ ଉପ୍‌ରୁଁ ଛାନି ଆନି ଭଠେଁ ରଖ୍‌ଲେ ଯହୁଁ
ଆଁଖ୍ଁ ଲମିଛେ ଲହର୍ ଧାର୍ ଛାତି ଭିତ୍‌ରୁଁ ଲହୁ । ।।୪୦।।

ରଜା କହନ୍ ଅଜାନ୍‌ତକେଁ ପେଶ୍‌ଲିଁ ବାବା ! ଶର୍
ଋଷି ଛୁଆ ଦର୍‌ଦର୍ କାନ୍ଦି କହେ ତର୍‌ସର୍ । ।।୪୧।।

ଶେଁଖୁଆଁ ଫୁଲେଁ କେନ୍‌ଦୋଷ୍‌ନେ ବର୍‌ଷେ ବଜର୍‌ମାର୍
କାହିଁ ବୁଝ୍‌ବୁ ଦୁର୍‌ଦଶା ମୋର୍ ଅନ୍ଧ ବାପ୍ ମାଁ'ର୍ । ।।୪୨।।

ରଷି ପିଲାକେ କହେଲେ ରଜା ପୁଛିଁ ଆଖିର୍ ଲହ୍
ନାଇଁ ଦେଖିଁ ପେଶ୍‌ଲିଁ ଶର୍ କାଁ କର୍‌ମି କହ ? ।।୪୩।।

ଶବଦ୍ ଶୁନି ଭାବିଥିଲିଁ ହାତୀ ପିଉଛେ ପାଏନ୍
ଆଏଁଖ୍‌କେ ଛାଡି କାନ୍‌କେ ପର୍‌ତେ କରି ବୁଡ଼ାଲିଁ ମାଏନ୍ । ।।୪୪।।

ହାତୀ ହୁର୍‌ତାବାର୍ କାଯେଁ ଶବଦ୍-ଭେଦୀ ଶର୍
ପେଶିଁ ଯାହା ହେଲା ଦେଖିଁ ଶୁଖି ଯାଉଛେ ସର୍ । ।।୪୫।।

କିଏ ବାବା ! ନାଇଁ ଜାନି ଛାଡ଼ି ରାଗ୍ ରୋଷ୍
ଡାଣ୍ଡ ତ ଡାଁଡ, ଅଜାନତ୍ କେଁ କରିଛେ ଦୋଷ୍ । ।।୪୬।।

କହେମି କହେମି ହଇଁ ରଷି କହି ନାଇଁ ପାରନ୍
ହାଏ ମା ! ହାଏ ବା ! ବଲି ଛାତିଁ ହାତ୍ ମାରନ୍ । ।।୪୭।।

ମୋର୍ ପର୍‌ଚେ ଦେମି କାଣା ? ନର୍ ସମ୍‌ଦରେଁ ବିନ୍ଦୁ
ଅନ୍ଧକ୍ ରଷିର୍ ପୁଓ ମାଁ ବାପ୍ ଡାକନ୍ ସିନ୍ଧୁ । ।।୪୮।।

ମାଁ ବାପର୍ ଘର୍ ନାଇଁ ନାଏଁନ ଆଏଁଖ୍ ତାକର୍
ଭାରେଁ ବୁହି ଝାରେଁ ମୁଇଁ ବୁଲେଁ ରାଇଜ୍ ଯାକର୍ । ।।୪୯।।

କରମ୍ ଜାନି ଫଲ୍ ଭୁଗୁଛେଁ କାହାକେ କର୍‌ମି ରୋଷ
କାଏଁ ଦଣ୍ଡ଼ଦେମି ତୁମର୍ ନାଇଁ ନ କିଛି ଦୋଷ୍ । ।।୫୦।।

ସୋର୍ ହଉଛେ "ପୂରୁବ୍ ଜନ୍‌ମେ ଥିଲି ରଜାପିଲା
ଗେଲ୍‌ହିଆ ଥିଲି ମାଁ ବାପର୍ ବେଭାର୍ ଥିଲା ଢିଲା । ।।୫୧।।

ବିନା ଦୁଷେଁ ଧୁନ୍‌ଶର୍ ଧରି ମାରେଁ ପଣ୍ଡ଼କାପାରା
ଆଏଜ୍ ହେନ୍ତା ବିନା ଦୁଷେଁ ସୋଜ୍ ଯାଉଛେଁ ମାରା । ।।୫୨।।

ନଏଦ୍ ଖଁଡିନେ ମାଆ ବାପା ବେଲ୍ ଭନାନେ ଥାକିଛନ୍
ପାଏନ୍ ନେଲେଁ ପିଇବାକେ ମୋର୍ ଯିବାକେ ଟାକିଛନ୍ । ।।୫୩।।

ବାପ୍ ମାଁକେ ମଲା କାଲ୍‌କେ ପାଏନ୍ ତୁକେ ଦେବାକେ
ଭାଏଗେଁ ନାଇଁ, ଲାଏକ୍ ନୁହେ କେନ୍‌ସି ଭି ସେବାକେ । ॥୫୪॥

ଠିଆ ନାଇଁ ହ, ମଠିଆ ଅଛେ ପାଏନ୍ ଟିକେ ନିଅ
ଶୁଖେଁ ଥିବେ ଆକୁଲ୍ ବିକୁଲ୍ ପିଇବେ ତୁର୍‌ତି ଦିଅ । ॥୫୫॥

କହେବ ମୋର୍ ମେତାଲ୍ ପୁଓ ନାଇଁ ନୁର୍‌ବେ ନ ଆଉ
ତାକର୍ ବାଗିର୍ ମାଆଁ ବାପ୍ ଭାଏଗେଁ ମୋର୍ ଥାଉ । ॥୫୬॥

ଖର୍ ନିଶାସ୍ ବୁହେ ଥର୍‌କେ ଥର୍ ଯାଉଛେ ଅଟ୍‌କି
କଥା କହେଲେଁ ଅଥା ହଇ ଘାଏକେଁ ଯାଏଁ ସଟ୍‌କି । ॥୫୭॥

ଉଡ଼ି ଯିବାକେ ଜୀବନ୍-ଚେରେ ଭିଡ଼ି ହେଲାନ ହର୍‌ବର୍
ଦେହ୍ ପିଞ୍ଜରିର୍ ବାଟ୍ ଛେଁକିଛେ ତୁମର୍ ପେଶ୍‌ଲା ଶର୍ । ॥୫୮॥

ଶର୍ କାଢ଼ି ନିଅ ହଉ ପିଂଜ୍‌ରି ହୁର୍‌ଗୁଲା
ଯେନ୍‌କେ ଯିବାର୍ ଯାଉ ଜୀବ୍ ନାଇଁ ହଉ ଗୁଲ୍‌ଗୁଲା । ॥୫୯॥

ରଷି ଛୁଆର୍ କହେଁ ରଜା ଶର୍ ନେଲେ କାଢ଼ି
ନିଉଡ଼ି ହେଲା ଲହୁ ହୁଲ୍‌କେ ଜୀବନ୍ ଗଲା ଛାଡ଼ି । ॥୬୦॥

ମଲା ଦିହ୍‌କେ ଖଁଦେଁ ବୁହି ପାଏନ୍ ମଠିଆ ହାତେଁ
ବୁଢ଼ି ହଜା ରଜା ଚାଲ୍‌ଲେ ଛୁଆ ବତାଲା ବାଟେଁ । ॥୬୧॥

ବେଲ୍ ବୁରେଇର୍ ତଲେଁ ଅନ୍ଧକ୍ ରଷି ଏତ୍‌କି ବେଲ୍
ଛୁଆ ନାଇଁ ଆଏଲା ବଲି ମନ୍ ହୁଏ ଉତେଲ୍ । ॥୬୨॥

"ସିନ୍ଧୁର୍ ମାଆ ! କାଁ କରି ଗା ! ଭକ୍ ଭକାସି ମନ୍
ଛୁଆ ଆଏବାର୍ ବିଲମ୍ ଜାନି ହିଆ ହୁଏ ଛନ୍‌ଛନ୍ ।" ॥୬୩॥

ସିନ୍ଧୁର୍ ମା ବଲନ୍ "ଆମର୍ ଆଏଁଖ୍ ଥିଲେଁ କାଏଁନ
ଆଉଛେ କି ନି ଦେଖିଆଏତାଁ ଅଧା ବାଟୁଁ ସାଏଁନ । ॥୬୪॥

ପୁଓଟା ଆମର୍ ଆଁଖିର୍ ପାରା ସେ ଯାଇଛେ ପାଏନ୍
ଛୁଁଛା କାଏଁ ଉବେଲ୍ କର୍‌ତା ଛୁଆର୍ କେତେ ମାଏନ୍ । ।।୬୫।।

କମ୍ ବେଲ୍‌ତ ହଏ ନୁହେଁ ତଥାପି ଦମ୍ ଧରୁଁ
ଆସୁଥିବା ଶୁଭେ କାହାର୍ ପାହାର୍ ଶବଦ୍ ଧୂରୁଁ । ।।୬୬।।

ଝର୍‌ଲା ପତ୍‌ରେଁ ପାହା ପର୍‌ଲା ମେତାଲ୍ ଲାଗେ ମତେ
ଆ-ରେ ମୋର୍ ଜୀବର୍ ଧନ୍ ଟାକି ମରିଛୁଁ ତତେ । ।।୬୭।।

ପାଏନ୍ ନାଇଁ ପାଶେଁ କାଏଁ ଏତ୍‌କି ବେଲ ହେଲା
ବାଟେଁ ଥିଲା କାଏଁ ପିତା ଜନ୍ତୁ ସେଥିଁ ସମିୟା ନେଲା । ।।୬୮।।

ନାଇଁ ଆସୁଥାଇଁ ଡରେଁ ମରେଁ ଅଧ୍‌ପରାନ୍
ଶୁଷେଁ ଶୁଖେ ଟିଁ ଟି ପୁଓରେ ! ପାଏନ୍ ଡୁକେ ଆ'ନ୍ । ।।୬୯।।

ରଜା କହେଲେ ଦୁଖେଁ ମଜାଇ ହଇ ଜହ ଜହ
ପାଏନ୍ ଆନିଛେଁ ମାଏନ୍‌ତା ମୁନି ଦେମି ଟିକେ ରହ । ।।୭୦।।

ତୁମର ପୁଓ ନାଇଁ ଫିରେ ନ ଯାଇଛେ ଯେନ୍ ଠାନ୍
ଅଜାନ୍‌ତକେଁ ଅଦେଖା ଶର୍‌ପେଷ୍‌ଲିଁ ନେଲା ପ୍ରାନ୍ । ।।୭୧।।

ଅବଧ୍ ରାଜ୍ ଦଶ୍‌ରଥ୍ ମୁଇଁ ପାହେଁ ପରୁଛେଁ ମୁନି
ଗର୍‌ଜି ଉଠ୍‌ଲେ ମୁନି  ରଜାର୍ କଥା ଏତ୍‌କି ଶୁନି । ।।୭୨।।

ରଜା ହଇଁ ପର୍‌ଜା ମାରୁ କେ'ନୁ ଶିଖ୍‌ଲୁ ଧରମ୍
ଆଏଁଖ୍ ଥାଇ ବି ଦେଖ୍‌ଲୁ ନାଇଁ କଲୁ ଏଡ଼େ କରମ୍ । ।।୭୩।।

ଆମର୍ ସିନେ ଆଏଁଖ ନାଇଁ କାନେ ଚାଲୁଁ ବାଟ୍
କାନ୍-କେଭେଁ ବନ୍‌ଏ ବିଚାର୍ ଦେସି ଅବଧ୍ ରାଟ୍ ! ।।୭୪।।

ଆମର୍ ହାତ୍ ଗୋଡ଼୍ ଆଏଁଖ୍ କାନ୍ ଥିଲା ସିଏ
ସେ ଗଲା ତ ସବୁ ଗଲା ଜୀବନ୍ ଆର୍ କାଏଁ ଜୀଁଏ । ।।୭୫।।

ମଲା କାଳେଁ ଦେଲା ଦରଦ୍ ପିଲାର୍ ଏ ବିଚ୍ଛେଦ୍
କେ ଗନ୍‌ବା ହୁରୁଦ୍ ଭିତ୍‌ରେଁ ହେଲା କେତେ ଛେଦ୍ । ||୭୬||

ଅନ୍‌ଭବ୍‌ନେ ଜାନି ହେସି ଅନ୍‌ମାନ୍ ନୁହେ କରି
ସେ ଅନ୍‌ଭବ୍ ହେବା ତୋର୍ ଯିବାର୍ ଆଗୁଁ ମରି । ||୭୭||

ହଦ୍‌ରି ନେସି ଭାଷା ଯଦ୍‌ରି ସେ ଦରଦ୍ କେ କହେବା ?
ବୁଝ୍‌ବୁ ମୋର୍ କହେଁ ତୋର୍ ସେ ଅନ୍‌ଭବ୍ ହେବା । ||୭୮||

ବାହ୍ମନ୍ ମୁଇଁ ନାଇଁ ହେଲେଁ ବି ନାଇଁ କହେଁ ମୁଇଁ ଅସତ୍
ଈଆଡ୍ ସେ ଆଡ୍ ନୁହେ ଆଦୁଁ ଜାନ୍‌ବୁ ଦଶ୍‌ରଥ୍ । ||୭୯||

ବଏଶ୍ ବାପ୍ ଶୂଦ୍ରୁର୍ ମା'ର୍ ଅଉର୍‌ସନୁ ଜନମ୍
ସତ୍ କହିଛେଁ ସତ୍ ଭାବିଛେଁ କରିଛେ ସତ୍ କରମ୍ । ||୮୦||

ମୁହୁଁ ମୋର ସତ୍ ବାହାରିବା ସତ୍ ବଏସରା ଅଛେ
ଅସତ୍ ନାଇଁ ବାହାରେ ପୁର୍‌ଥୀ ପର୍‌ଲେ ହେବା ପଛେ । ||୮୧||

ହେନ୍ତା ଗୁଟେ ସତ୍ ଦର୍‌ଶୀ ମୁନି-ମୁହଁର୍ କଥା
ଆଏଁଖ୍ ହରାଇ ହେଲୁ ଆମେ ଦୁହି ପରାନୀ ଅଥା । ||୮୨||

ସେ କଥା ମୁଇଁ କହି ନଉଛେଁ ଶୁନ୍‌ବୁ ହେଲେ ଶୁନ୍
ଗୁଦର୍ ଗୁଡିଆ ତିର୍ଜଟା ଋଷି ସତ୍‌କହେବାର୍ ଗୁନ୍ । ||୮୩||

ଆଏଲେ ଦିନ୍‌ଏ ବାପା ମୋର୍ ଅର୍ଚ୍ଚା ଚର୍ଚ୍ଚା ପରେଁ
କହେଲେ ମତେ ପାହାଧୂଏଲ୍ ନେ ଯୁହାରି ପାହାତଳେଁ । ||୮୪||

ଗୋଦର୍ ଗୋଡ୍‌କେ ବିକାର୍ କଲିଁ ଦେଲିଁ ଆଏଁଖ୍ ମୁଜି
ମୋର୍ ସ୍ତିରୀ ବି ସେନ୍ତା କଲେ ଭଲ୍‌ମନ୍ଦ୍ ନାଇଁ ବୁଝି । ||୮୫||

ଏବମସ୍ତୁ କହେଲେ ଋଷି ଆଏଁଖ୍ ମୁଜିଛୁଁ ତାଏଲ୍
ଅବ୍‌ତକ୍ ଆଏଁଖ୍ ସେନ୍ତା ଅଛେ ବୁନ୍ଦେ ଦିଶ୍‌ତା ଭାଏଲ୍ ? ||୮୬||

ସତ୍ ଆଶ୍ରୀର୍ କଥା ସତ୍ ଟିଖେ ଟଲେ ନାଇଁ
ହଅନି ଯାହା ତାହା ହିଁ ହେବା ନେହେଲେଁ ଚଲ୍‌ବା କାହିଁ ? ॥୮୭॥

ପୁଓ ପଲାବା ଛାଡ଼ି ତୋର୍ ଜୀବନ୍ ଯିବା ଛାଡ଼ି
ଆଏଜ୍ ଯେନ୍ତା ଛଡ଼େଇ ନେଲୁ ଅନ୍ଧର୍ ହାତୁଁ ବାଡ଼ି । ॥୮୮॥

ରଜା କହେଲେ ପୁଓ ହେବା ତ ଜୀବନ୍ ଗଲେଁ ଯାଉ
ଧଏନ୍ ଧଏନ୍ ମୁନି ମହାତ୍ମା ! ତୋର୍ ଦୟା ଥାଉ । ॥୮୯॥

ଅଭିଶାପ୍ ଯେନ୍ ଦେଲୁ ମତେ ହେଲା ଆଶୀର୍ବାଦ୍
ତୁମ୍‌କୁଁ ମୁନି ସୂରୁୟ୍ ବଂଶର୍ ଶ'ଶ' ଧଏନ୍‌ବାଦ୍ । ॥୯୦॥

ଅଭିଶାପ୍ ମୋର୍ ଅଭିଲାଷ୍ ପୂରାବା ନେଲିଁ ଛିନି
ସୁଜନ୍ ସଙ୍ଗର୍ ଉଜନ୍ କେତେ ବୁଝ୍‌ଲିଁ ଇହାଛିନି । ॥୯୧॥

ଗଛ୍‌କାଟୁକେ ଦେସି ଯେନ୍ତା ଉଦାର୍ ଗଛ୍ ଛାଏ
ତୁମର୍ ଦୟା ମୋର୍ ଉପ୍‌ରେଁ ଠିକ୍ ସେନ୍ତା ଆଏ । ॥୯୨॥

ସୁଜନ୍ ଆଏ ଯେ ରିଶ୍‌ମିଥିଁ ବି କାହାରି ଅନ୍‌ଭଲ୍
କରେ ନାଇଁ ଧରେଇ ନେସି ବାଛିଁ ବନ୍‌ଏ ଫଲ୍ । ॥୯୩॥

ପିଲାର୍ ମଲା ଦେହ୍ ତ ଥିଲା ତାକର୍ ଆଗେଁ ପଡ଼ି
ଅନ୍ଧକ୍ ରଷି ତାମ୍‌ଡ଼ି ତାର୍ ଉପ୍‌ରେଁ ଗଲେ ଗଡ଼ି ॥୯୪॥

କହେଲେ ପୁଓ ବନ୍‌ଏ କଲୁ ପଲେଇଁ ଗଲୁ ଯାହା
ଭାଙ୍ଗି ନେଲୁ ଆମର୍ ଦୁହି ଲୁକର୍ ଜାଙ୍ଗଲ୍ ବାହା । ॥୯୫॥

ଦୁଦି ଝନ୍‌କୁଁ ଜୀବନ୍ ଯାକ କେତେ ବୁହିତୁ ଭାରେଁ
ଅନ୍ଧା ବୁହିଁ ବୁଲ୍‌ତୁ କେତେ ଅନ୍ଧାର୍ ସଂସାର୍-ଝାରେଁ । ॥୯୬॥

ଆରଫାଲେଁ ନାଇଁ ଟାକ୍‌ବୁ ବାଟ୍ କହ୍ଲାମି ବଲିଁ
କହି ମୁନି ପୁଅର୍ ଉପ୍‌ରେଁ ସେନେ ପର୍‌ଲେ ଢଲିଁ । ॥୯୭॥

ମୁନି-ସିଆନୀ କହେଲେ ସିନ୍ଧୁର୍ ବାପା ! ଟିକେ ଟାକ
ଏକ୍‌ଲା କରି ଯିବ ସାଙ୍ଗେ ରଖି ଜୀବନ୍ ଯାକ ? ॥୯୮॥

ସେ ବି ଗଲେ ଢ଼ଳିଁ ସରିଁ ଗଲା ଗୁଟେ ସଂସାର୍
ଅଜାନ୍‌ତକେଁ କେନ୍ତା କରାମତି ହେଲା ହିଂସାର୍ । ॥୯୯॥

ଦୁଖ୍ ସୁଖ୍‌ର୍ ମିଶା ମିଶିଭାବେଁ ଭାସି ଭାସି
ଭାବନ୍ ରଜା କା'ଣା ପାଏଲେ କାହିଁ ଥିଲେ ଆସି । ॥୧୦୦॥

କେନ୍‌କେ ଯିବେ କା'ଣା କର୍‌ବେ ନାଇଁ କର୍‌ବାର୍ ଠିକ୍
ତିନ୍ ତିନ୍‌ଟା ଜୀବନ୍ ଗଲା ତାକର୍ ଲାଗି ଧିକ୍ । ॥୧୦୧॥

ରକତ୍ ମାଉଁସ-ଦିହ୍ ରଜାର ପାଲ୍‌ଟି ଯାଇଛେ କାଠ୍
ମନର୍ ମୁନୁଷ୍ ଭାବନା ଭିତ୍‌ରେଁ ପାଶ୍‌ରି ନେଇଛେ ବାଟ୍ । ॥୧୦୨॥

ଆଏଁଖି ନାଇଁ ଥିବାର୍ ମୁହୁଁ ଆଖିଁ ଆଖିଁ ଝୁଲୁଛେ
ଛାତିଟାକ କାଟି କାଟି ଖଣ୍ ଖଣ୍ କରି ଖୁଲୁଛେ । ॥୧୦୩॥

ଅକାରନେ ପରିବାର୍‌ଟେ ନିମିଷ୍‌ଟାକେଁ ଶେଷ୍
କଲାବଲିଁ ରଜା, ବଜା ବାଜ୍‌ବା ଦେଶ୍ ଦେଶ୍ । ॥୧୦୪॥

ମରନ୍ ଠାନୁ ଜିତିଁଯିବା ସେ ମହା ବଦ୍‌ନାମ୍
କେନ୍ ପରାଚିତ୍ ଏଡ଼େ ପାପ୍ କର୍‌ବା ଥୁମ୍‌ଥାମ୍ । ॥୧୦୫॥

ଭାବି ଭାବି ପୁହୁଁଚିଗଲେ ବଶିଷ୍ଠ ଋଷି ଆଶ୍ରମ୍
ଗୁରୁ ନାଏଁନ ତାକର୍ ପୁଓକେ କହେଲେ ନିଜର୍ ଭ୍ରମ୍ । ॥୧୦୬॥

ଯାହା ହେଲା କହେଲେ ହେଲା କେଡ଼େ ବଡ଼୍ ପାପ୍
କେନ୍ ପରାଚିତ୍ କଲେଁ ମୁନି ପାପ୍ ହେବା ସାଫ୍ । ॥୧୦୭॥

ବାମ୍‌ଦେବ୍ କହନ୍ ରାମ୍ ନାମ୍ ଜପ ତିନ୍ ଥର୍
ରାମର୍ ନାମେ ପାପ୍ ପଲାଏ କଁପି ଥର୍‌ଥର୍ । ॥୧୦୮॥

ରଜା ଫିର୍‌ଲେ ରାଜ୍‌ଧାନୀକେ ବଶିଷ୍ଠ୍ ନିଜର୍ ଆଶ୍ରମ୍
ପୁଓନୁ ଶୁନି ସବୁଜାନି କହେଲେ ହେଲା ବିଭ୍ରମ୍ । ॥୧୦୯॥

କହେଲେ ଥରେ ରାମ୍ ଜପ୍‌ଲେଁ ପାପ୍ ନାଇଁ ରହେ, ଯାଏ
ତିନ୍‌ତିନ୍ ଥର୍ ରାମ୍ ଜପାବାର୍ ମୁରୁଖ୍ ପନ୍ ଆଏ । ॥୧୧୦॥

ରାମର୍ ଗୁରୁର୍ ପୁଓ ରାମର୍ ଗୁନ୍ ଜାନୁ ନାଇଁ
ମୂରୁଖ କୁଲେଁ ଜନମ୍ ନେବୁ ମୂରୁଖ୍ ପନ୍ ପାଇ । ॥୧୧୧॥

ରାମ୍ ଦର୍ଶନ୍ ପାଏଲେଁ ଯାଇ ନାମୀ ନାମର୍ ଭେଟ୍
ହେଲେଁ ମେଟ୍‌ବା ମୂର୍‌ଖାମି ତୋର୍ ମିଲ୍‌ବା ଗିଆନ୍ ଶ୍ରେଷ୍ଠ୍ । ॥୧୧୨॥

ଚେରେ ଗୁହୁଡ଼ା ଗଛ୍‌ମାନ୍‌କୁଁ ଆଏଲେ ଉଡ଼ି ଉଡ଼ି
ଋଷି ଜାନ୍‌ଲେ ସୂରୁଯ୍ ଦେବ୍‌ତା ଯିବେ ଏତ୍‌କେଁ ବୁଡ଼ି । ॥୧୧୩॥

କହେଲେ ଯିମା ଚାଲ ସଂଧିଆ ଶଉଚ ସମିଆ ହେଲା
ଇତାର୍ ପରେଁ ଯାହା ହେବା ସକାଲ୍ ସଭାକେ ରହେଲା । ॥୧୧୪॥



# ପାଉଚ୍-୧୨

## ପୁତ୍ରେଷ୍ଟି ଯଜ୍ଞ ଆର୍ ଋଷିଶୃଙ୍ଗ ମୁନି

ଲାଲ୍ ଗଲ୍ ଗଲ୍ ବେଲ୍ ଉଦେ ବାଲ୍‌ମିକୀ ହନ୍ ଉଷତ୍
ସଭାର୍ ଠାନେ ଉଭା ହଇ ଯୁହାରନ୍ ଶତ୍‌ଶତ୍ । ।।୧।।

ଶୁନ୍‌ବାର୍ ଲୋକ୍ ସଭେ ସେ'ନ ହଇଁଗଲେ ନ ଠୋଲ୍
ଭଜନ୍ ସୁରେଁ ଭକ୍‌ତି ଭରେଁ ଥିଲେ ପୂରା ଭୋଲ୍ । ।।୨।।

ରାମ ଗୁନ୍ ଗୁନି ମୁନି ଆସ୍‌ନେ ବସ୍‌ଲେ ଯାଇ
କହରିଲା ଫୁଲ୍ ହାର୍ ଲବ ବେକେଁ ଦେଲେ ଲମେଇ । ।।୩।।

ପାହା ଧୂଏଲ୍ ମାଖି କହେଲେ କହ ବାବା ! ଆଏଜ୍
ଦଶ୍‌ରଥ୍ ପରେ କିଏ ଦେଖା ଚାହାଁ କଲେ ରାଏଜ୍ । ।।୪।।

ମୁନି କହେଲେ ଶୁନି ଲବର୍ କଥା, ରାମର୍ ନାମେ
ହରିବୋଲ୍ ଦେଇ ବସ ଏକ୍ ଚିତ୍ ଏକ୍ ଧ୍ୟାନେ । ।।୫।।

ଦଶରଥର୍ ମନ୍-ଆକାଶେଁ ବସା ବାନ୍ଧେ ଆଶା
ଘାଏକେଁ ଛନ୍‌କେଁ କାନ୍‌କେ ଶୁଭେ ପୁଓର୍ ହେବାର୍ ଭାଷା । ।।୬।।

ପୁଓ ନାଇଁ ହଏ ନିକେଁ ହୁଅନ୍ ପଛେ ବୁଢା
ନିଅଁଶୀ ହଇ ବଏସ୍ ସର୍‌ବା, ମର୍‌ବେ ବଂଶ୍‌ବୁଡା ? ।।୭।।

ବଶିଷ୍ଠ୍ ଋଷିର୍ ଆଗେଁ ଯାଇ ଶିଷ୍ଟ୍ ଭାବେଁ କହେଲେ
ଗୁରୁ ଯାହା କହେବେ କର୍‌ବେ ଶୁନ୍‌ବାର୍‌କେ ରହେଲେ । ।।୮।।

ଗୁରୁ କର୍‌ଲେ କଥା ସୁରୁ କାକର୍ ଛାନ୍ କାଁ କରି
ହଉଛ ରାଜା ! କଲ୍‌ପନାକେ ଅଲ୍‌ପକେଁ ନୁହେ ଧରି । ।।୯।।

କଲ୍ପନା ହେଲେଁ ବର୍‌କସ୍ ଆର୍ ଶୁଦ୍ଧ୍ ଉପେ'ଚକର୍
ତୁର୍‌ତି ପୂର୍‌ତି ହଏ ନାଇଁ ରହେ ବାକି ବକର୍ । ॥୧୦॥

ଆମ୍ ଗଛ୍ ସାରା ଆଏସି ବଉଲ୍ କେତେ ହେସି ଫଲ୍ ?
ଆକାଶ୍ ଯାକ ମେଘ୍ ଥିଲେଁ ବି ବର୍‌ଷେ କେତେ ଜଲ୍ ? ॥୧୧॥

ଯାହିର୍ ତାହିର୍ ପୁଓଝି କେନ୍ କାମର୍ ହେବା ?
ପୁଓ ଝି'ର କାମେ ବାପ୍ ମାଁର୍ ବି ନାମ୍ ରହେବା । ॥୧୨॥

କାମ୍‌ନା ଜାନି କାମ୍ ତାର୍ ସାଙ୍ଗେଁ ଇଚ୍ଛା ଶକ୍‌ତି
ବିଶ୍ୱକେ ଈଶ୍ୱର୍ ମାନି ମାନ୍ ଛାଡ଼ିଁ ଥିବା ଭକ୍‌ତି । ॥୧୩॥

ମହାପ୍ରୁ ନିକେ ମନ୍ ମୁହାଁଲେଁ ଏକ୍ ଧରିଆ କରି
ମହାପ୍ରୁ ମେତାଲ୍ ମିଲ୍‌ବା ପୁଓ ଆଖେଁ ପାର୍‌ମା ଧରି । ॥୧୪॥

ଯଜ୍ଞ ଆରମ୍ଭ୍ କର୍ ରଜା ପୁଓ ଭାବି ଇଷ୍ଟ୍
ଋଷି ଶୃଙ୍ଗଁକୁ ବରି ଆନ୍‌ମା କହେଲେ ବଶିଷ୍ଟ୍ । ॥୧୫॥

ଅହିଂସ୍ ଭାବେଁ କଲେଁ କାମ୍ ସହଜେଁ ଯଜ୍ଞ ଅଏ
ପଶୁପନ୍ ନାଇଁ ପଶ୍‌ଲେଁ ଯଜ୍ଞ କର୍‌ତା ସୁଜ୍ଞ ଆଏ । ॥୧୬॥

ରଜା କହେଲେ କହେଲ ଗୁରୁ ! ଉଲ୍‌ଟିଆ ଦୁହି କଥା
ଋଷି ଶୃଙ୍ଗ, ଆଏଲେଁ ଆଏବା ନିଶ୍ଚେ ପଶୁସତ୍ତା । ॥୧୭॥

ଋଷି ଶୃଙ୍ଗ ପଶୁର୍ ଗର୍‌ଭେଁ ନେଇଛନ୍ ତ ଜନମ୍
ସେ ଆଏବେ ପଶୁପନ୍ ନାଇଁ ପଶେ ଇଟା ଭରମ୍ । ॥୧୮॥

ସେ ଋଷିର୍ କଥା ଗୁରୁ ! କହ ବନ୍‌ଏ କରି
ସେ ଆଏଲେଁ ଯାଇ ହେବା ଯଜ୍ଞ ନୀତି ଧରି ? ॥୧୯॥

ଶୁନ୍‌ଅ ତିନେ ମନ୍ ତନ୍ ଦେଇ ଅବଧ୍ ମହାରାଜ୍
ଜନ୍‌ମୁଁ ସଭେ ପଶୁଆନ୍ ଇ ପଶୁ ସମାଜ୍ । ॥୨୦॥

ଗୋଟ୍ ଗୋଟ୍ କରି ରଷି ଶୃଙ୍ଗ୍ ରଷିର୍ କଥା ହେଜ୍‌ଲେଁ
ସବୁ ଜାନ୍‌ବ ପାଏବ ବନ୍‌ଏ ତତ୍ତ୍ୱକଥା ଖୁଲ୍‌ଲେଁ । ॥୨୧॥

ବ୍ରହ୍ମାର୍ ମନୁ, ମରୁଦ୍ ଜନମ୍, ମରୀଚ ପୁଓ ତାକର୍
ମରୀଚର ପୁଓ କଶ୍ୟପନୁ ଜନମ୍ ବିଭାଣ୍ଡକର୍ । ॥୨୨॥

କରୁଥିଲେ ସେ ତପ୍, ଥିଲେ ପୂରା ବ୍ରହ୍ମଚାରୀ
ତପ ଭାଙ୍ଗବାର୍ ଲାଗି ଇନ୍ଦ୍ର ତଦ୍‌ପର୍ ମନ୍ ଭାରୀ । ॥୨୩॥

ନର୍ମ୍ମଦା ଖଁଡି ରଷି ନିସ୍କାମ୍ ତପେଁ ବସିଅଛନ୍
ଉର୍ବଶୀ ଯାଆନ୍ ଆକାଶ୍ ମାର୍ଗେ ପିଁଧନ୍ ଉଢ଼ନ୍ ଖସିଛନ୍ । ॥୨୪॥

ଦେଖିକରି ବ୍ରହ୍ମଚାରୀ ରଷିର୍ ବ୍ରହ୍ମ ଖସ୍‌ଲା
ପାଣ୍ ପାଞ୍ଚରର୍ ଘାସ୍ଁ ପତ୍‌ରେଁ ସହଜେଁ ଯାଇ ମେଶ୍‌ଲା । ॥୨୫॥

ଇନ୍ଦ୍ରର୍ ଶାପେଁ ମଦ୍‌ନିକା ନାଏଁ ଗୁଟେ ଅପ୍‌ସରୀ
ହରିନ୍ ହଇଁଥିଲା ଖାଏଲା ସେ ଘାଁସ ଖାସ୍ କରି । ॥୨୬॥

ତାହାର୍ ହେଲା ଗରଭ୍ ସେନୁ ଜନମ୍ ମୁନୁଷ୍ ପିଲା
ହରିନ୍ ଲେଖେଁ ଜନମୁଁ ତାର୍ ସିଙ୍ଗ ଦୁଇଟା ଥିଲା । ॥୨୭॥

ଅଧା ପଶୁ ଅଧା ମୁନୁଷ୍ ଜନ୍‌ମିଲା ସେ ଛୁଆ
ଝାରେଁ ପରି ନିର୍‌ଆଶ୍ରୀ କାନ୍ଦେ କୁଆଁ କୁଆଁ । ॥୨୮॥

ବିଭାଣ୍ଡକ୍ ଜାନି ପୁଓ ପାଲ୍‌ଲେ ପୁଷ୍‌ଲେ ଆନି
ମୁନୁଷର୍ ସବୁ କ୍ରିୟା କଲାପ୍ ଶିଖେଇ କଲେ ଜ୍ଞାନୀ । ॥୨୯॥

ମନନ୍ କରି ମହାପ୍ରଭୁକୁଁ ତପ୍ ଖଟନ୍ ଝାରେଁ
ନିଜର୍ ଭଲ୍ ଭୁଲି କହନ୍ ସୁଖ୍ ଭରୁ ସଂସାରେଁ । ॥୩୦॥

ମତେ ପଛେ ଦୁଖ୍ ମିଳୁ ଜଗତ୍ ରହୁ ସୁଖେଁ
ସବୁ ପରାନୀର୍ ପେଟ୍‌ପୁରୁ ମୁଇଁ ମଲେଁ ବି ଭୁଖେଁ । ॥୩୧॥

ଏନ୍ତା କର୍‌ବାର କବାର୍ ସିନେ ସତ୍ ତପିସା ହୁଏ
ଇଟା ଛାଡ଼ି ଯାହା କଲେଁ ମହାପୁରୁ ତୋଷ୍ ନୁହେ । ॥୩୨॥

ସନ୍ତୋଷ ହଇ ଇନ୍ଦର୍ ରୂପେଁ ଆଏଲେ ଭଗବାନ୍
କହେଲେ ବାବା ! କେନ୍ତା କଲେଁ ପୂର୍‌ବା ମନସ୍କାମ୍ । ॥୩୩॥

ଶୃଙ୍ଗୀ କହେଲେ "ବର୍‌ଷା ରଜା ! ଅଭାବ ହେଲେଁ ବର୍‌ଷାର୍
ମୁନୁଷ୍ ଅଥା ଗଛ୍ ଲତା ପଶୁପକ୍ଷୀର୍ ସଂସାର୍ । ॥୩୪॥

ଯେନ୍ ଗୁଲ୍‌ଗୁଲା କହ ନାଏଁନ ବର୍ଷାର୍ ଧାର୍ ଯେତେ
ଅଏନ୍ ଲାଗ୍‌ସି ଅନୁଖନୁ ସତେଁ କେଦ୍‌ନି କେତେ । ॥୩୫॥

ମୋର୍ ମନ୍ କାମ୍‌ନା ମୁଇଁ ଚାହେଁଲେଁ ହେତା ବର୍‌ଷା
ଇନ୍ଦର୍ କହେଲେ ହେବା ତାହା ମୋର୍‌ନେ ରଖ୍ ଭର୍‌ସା । ॥୩୬॥

ତୁଇଁ ରଖ୍‌ବୁ ପାଏନ୍ ପବନ୍ ଆକାଶ ନିର୍‌ମଲ୍
ଝାର୍ ପଦ୍‌ରା ସର୍‌ଜିଁ କର୍‌ବୁ ତାହିଁ ଫୁଲ୍ ଫଲ୍ । ॥୩୭॥

ତୋର୍ ହାତେଁ ନୁକ୍‌ସାନ୍ କେଭେଁ ଝାର୍ ପଦ୍‌ରା ନୁହୁ
ହରିନର୍ ଗୁନ୍ ସହଜ୍ ସରଲ୍ ସୁତର୍ ଭାବ୍ ବୁହୁ । ॥୩୮॥

ଅହିଂସ୍ ପଶୁ ହିଂସାକର୍‌ବାର୍ ମୁନୁଷ୍‌ଠାନୁ ବନ୍‌ଏ
ସାରା ସଂସାର୍ ନୁରି ବସଲେଁ ତୁଇଁ ଆଉନ ଜନ୍‌ଏ । ॥୩୯॥

ତପିସାର ଫଲ୍ ପାଇ ରଷି ଆହୁରି ଖଟନ୍ ତପ୍
ବିଶ୍ୱ ଚଲାଏ ଯେନ୍ ଈଶ୍ୱର୍ ତାର୍ କରନ୍ ଜପ୍ । ॥୪୦॥

ଝାରେଁ ସାରନ୍ ଦିନ୍‌କାଲ୍ ତାକର୍ ସବୁ ଆଏ ଝାର୍
ନାଇଁ ଦେଖନ୍ ନାରୀର୍ ମୁହୁଁ, ବିଲାସର୍ ସଂସାର୍ । ॥୪୧॥

ସିଦ୍ଧି ସବୁ ନିଧି ମେଡାଲ୍ ସବୁ କଲେ ଠୋଲ୍
ଈଶ୍ୱର୍ ଇଚ୍ଛା ସବୁ ଭାବିଁ ସେଥିଁ ହେଲେ ଭୋଲ୍ । ॥୪୨॥

ଲୋମପାଦ୍ ରଜାର୍ ଦେଶେଁ ହଏ ନାଇଁ ବର୍ଷା
ରଜା ପର୍ଜାର୍ ହେଜା ନାଇଁ ଉଡ଼ିଁଯାଏ ସାହିଁସା ।   ॥୪୩॥

ନାରଦ୍ ଆଏଲେଁ ସଁଖ୍ଲି ତାହାକୁଁ ରଜା ଜନାଏ ଦୁଖ୍
କହେଲେ ଋଷ୍ୟଶୃଙ୍ଗ ମୁନି ଦେବେ ବର୍ଷାର ସୁଖ୍ ।   ॥୪୪॥

ଭୁର୍ଥାଇ କରି ଆନ୍ଲେ ତାହାକୁଁ ନାରୀ ନାଆଁ ଜାର୍ତା
କେନ୍ କାମ୍ ଅଛେ ନାରୀ ଯାହା କରି ନାଇଁ ପାର୍ତା ।   ॥୪୫॥

ବର୍ଷା ହେଲା ହର୍ଷେଁ ଋଷି ବିଷୟାଥିଁ ରସି
ତୁମର୍ ଝି' ତ ଶାନ୍ତା ଥିଲେ ବିହା ହେଲେ ଭର୍ସି ।   ॥୪୬॥

ଅଛନ୍ ଋଷି ଅଙ୍ଗ ଦେଶେଁ ତାହାକୁଁ ଆନ ନିଉତି
ସବୁ ଫଲ୍ ମିଲ୍‌ବା ଯାହା ସିଦ୍ଧି ରଖିଛନ୍ ସାଉତି ।   ॥୪୭॥

ଅବଧ୍ ରାଜା ! ଜାନ୍‌ଥ ଈଶ୍ୱର୍ ଇଛାମଏ ଆନ୍
ତାହାକୁ ନାଇଁ ଜାନି ପାରନ୍ ଯାହାର୍ ନାଇଁ ଜ୍ଞାନ୍ ।   ॥୪୮॥

ସବୁ କାମେ ଇଛା ତାକର୍ ଥାଏ ଲୁକି ଲୁକି
ଦେଖି ନାଇଁ ପାରି ଲୋକ୍ ହଇ ଥିସନ୍ ଦୁଖୀ ।   ॥୪୯॥

ଇ ଦେଖିବାର୍ ବିଦ୍ୟାକେ କହେସନ୍ ଦର୍ଶନ୍
ଯେ ପାର୍ସି ଦେଖି ସୁଖ୍ ତାର୍‌ନେ ପର୍ସନ୍ ।   ॥୫୦॥

ଋଷ୍ୟଶୃଙ୍ଗ ଲେଖେଁ ସୃଷ୍ଟି, ସୃଷ୍ଟିକାରୀର ନମ୍ନା
ସହଜେଁ ହଜେଇ ନେସନ୍ ବୁଦ୍ଧି ନାଇଁ ବୁଝି ତାର୍ କାମ୍ନା ।   ॥୫୧॥

ମୁନୁଷ୍ ଆର୍ ପଶୁର୍ ସଂଗମ୍ ଅନଶୁନା ତ ଆଏ
ନୂଆଁ କଥା ନୂଆଁ ଚିନ୍ତା ନୂଆଁ ଧାର୍ନା ଆଏ ।   ॥୫୨॥

ଅମୂଲ୍ ଅତୁଲ୍ ଆଏ ସତେଁ ଇ ମୁନ୍‌ଷର୍ ରେଦ୍
କେତେ ବଡ଼୍ ଫଲ୍ ପାଏସି ପାଏଲେଁ ନୁକୋ ଖେଦ୍ ।   ॥୫୩॥

ଗତି ଜଗତର୍ ବଦ୍‌ଲାଇ ପାରେ ଯୁଗି ଛିଡ୍‌ଲା ଧର୍ମ୍
ହେଁଥିର୍ କାଯେଁ ଋଷି ଭାଷିନେ ନାଁ ଦେଇଛନ୍ ବ୍ରହ୍ମ । ।।୫୪।।

ନାଇଁ ଜାନି ମୁନୁଷ୍ ସିନେ ଯତ୍‌ଖତ୍ କରି ଖଏତ୍
ଦେହର୍ ଭୋକ୍ ମେଟାବାର୍‌କେ ଯେ କରେ, ସେ ଦଏତ୍ । ।।୫୫।।

ଗଭେଁ ଧର୍‌ବେ ରାନୀ ବ୍ରହ୍ମ, ଆଗୁଁ ହଉନ୍ ଖୁସି
ଉପ୍‌ଲଏଖି ଆନ୍ ବ୍ରହ୍ମର୍ ଉପଯୋଗ୍ ଲାଗି ଋଷି । ।।୫୬।।

ଝି' ଜୁଏଁ ତ ଆ'ନ୍ ନିକେଁ ଆନି ଆସୁନ୍ ଆପଣ୍
ରାଜ୍ କର୍ମଚାରୀ କରୁନ୍ ଯଜ୍ଞ ଆୟୋଜନ୍ । ।।୫୭।।

ଭଲ୍ କାମ୍ କରନ୍ ତୁର୍‌ତି ଉଛୁର୍ କର୍‌ବାର୍ ନୁହେ
ମହାପ୍ରୁଲାଗି ମହାନ୍ କାମର୍ ମହାନ୍ ଫଲ୍ ହୁଏ । ।।୫୮।।

ଦଶରଥ୍ ଗଲେ ଅଙ୍ଗ ଦେଶ୍‌କେ ବଶିଷ୍ଠ୍ ଗଲେ ଆଶ୍ରମ୍
ଯଜ୍ଞର୍ ଲାଗି ରାଏଜ୍ ସାରାର୍ କହି ନୁହେ ସେ ଶ୍ରମ୍ । ।।୫୯।।

ଯଜ୍ଞ ସର୍‌ଲା ଜାକ୍ ଯମ୍‌କେଁ ତାହୁଁ ଆନ୍‌ଲେ ଚରୁ
ରାନୀ ଦୁହିଁକୁଁ ଦେଲେ ତାକ୍‌ର୍ ଗଭେଁ ବିଚରୁ । ।।୬୦।।

ଏକ୍ ନିଷ୍ଠ୍ କର୍‌ବା ଆଚାର୍ ବିଚାର୍ ବଳିଁ ଚରୁ
ପୁଓ ଜନ୍‌ମି ମାଁ ବାପର୍ ଭାବ୍ କେ ଆଚରୁ । ।।୬୧।।

କଉଶଲ୍ୟା କାଇକେୟୀ ଚରୁର୍ ଅଧା ଅଧା
ସୁମିତ୍ରାକୁଁ ଦେଲେ ତାକର୍ ଅଧା କରି ଶର୍‌ଧା । ।।୬୨।।

ଏ'ଦେ ଏଦେ' ଯଜ୍ଞ ସର୍‌ଲା ଉଦ୍‌ରି ଆଏଲା ବର୍‌ଷା
ଉଷତ୍ ତପତ୍ ପୁର୍ଥୀ ଖାଏଲା ଲେଖେଁ ଖଣ୍ କ୍ଷୀର୍‌ସା । ।।୬୩।।

ଡଙ୍ଗ୍ରୁଁ ଡଙ୍ଗ୍ରୁଁ ଲିଭ୍‌ଲା ଜୁଏ ନଗ୍ରୁଁ ନିଝ୍‌ରେ ପାଏନ୍
ରଖୋ ରଖୋ ମେଘର୍ ଧାରେଁ ଉଛଳିଁ ଉଠେ ଛାଏନ୍ । ।।୬୪।।

ବତର୍‌କିରି କୀରା ଉଡ଼ନ୍ ରଙ୍ଗନ୍ ସାଧବ ବହ
ରାନୀ ମାନ୍‌କର୍ ମନ୍ ଉଡ଼ନ୍ ଦିନୁଦିନ୍ ଜହ ଜହ । ॥୬୫॥

ଆକାଶ୍ ଦିହେଁ ମେଘୁଆ ଶାଢ଼ୀ, ଶାଗୁଆ ପିନ୍ଧେ ଧର୍‌ତୀ
ଶାଢ଼ୀ ସଉକୀ ରାନୀ ମାନ୍‌କର ସଉକ୍ ହଏ ପୂରତି । ॥୬୬॥

ବୀଜା ମାନେ ପର୍‌ଲା ଛଁଛେଁ ମାଟିଁ ଯାଆନ୍ ଗଜେଇ
ରାନୀ ଗର୍ଭର୍ ବୀଜା ଖୁଜନ୍ ମାଏଟ୍ ଘାଏ ଘାଏ ହେଜେଇ । ॥୬୭॥

ଗଜ୍‌ରି ଥିବାର୍ ଗଛ୍ ପତରେଁ ସୁନ୍ଦର ଦିଶେ ଧର୍‌ତୀ
ରାନୀମାନେ ଆହୁରି ସୁନ୍ଦର୍ ପନେ ହେଲେ ଭର୍‌ତି । ॥୬୮॥

କଲିଆ ମେଘ୍ ଧୁବ୍‌ଲା ହେଲେ ଗୁନ୍ଦାଲ୍ ପାଏନ୍ ନିର୍ମଲ୍
ଧୋବ୍ ଫର୍ ଫର୍ କାଏଁଶ୍ କଇଁର୍ ପୁର୍ଥୀ ହଏ ମଲ୍ ମଲ୍ ॥୬୯॥

ରାତିର୍ ଝରା କାକର୍-ପ୍ରେମେ ପରିଯାଉଛେ ଧରା
ମୁଲ୍‌କି ହଁସେ ଚହଲି ପହେଲି ବେଲର୍ କଅଁଲି ଖରା । ॥୭୦॥

ଶୀତ୍ ନାଇଁକି ଖରା ନାଇଁ ସୁରୁତ୍ ତୁରୁତ୍ ସକାଲ୍
ପାଏନ୍ ପବନ୍ ଆକାଶ ପର୍ଛା, ପର୍ଛା ଦିନ୍ କାଲ୍ । ॥୭୧॥

ରାନୀ ମାନ୍‌କର ମନ୍ ପର୍ଛା ଚିନ୍ତା ଦକ୍ ନାଇଁ
କିଛି କା'ଣା ପାଏବାର୍ ଆଶ୍ ନାଇଁ କରେ ହାଇଁ ପାଇଁ । ॥୭୨॥

ବଶିଷ୍ଟ୍ ସାଙ୍ଗେଁ ଶ୍ରେଷ୍ଠ ଗିଆନୀ ବିଶିଷ୍ଟ ଋଷି ମୁନି
ରାଜ୍ ପୁରେଁ ରୋଜ୍ ଗିଆନ୍ ଗଛ୍ ଦିଅନ୍ କେତେ ଝୁନି । ॥୭୩॥

କେତେ ସୁଆଦ୍ ପାବ୍‌ଲା ଫଲ୍ ଗଦେଇ ହୁଅନ୍ ଝରି
ରାନୀମାନେ ମନ୍‌କେ ମନ୍ ଗର୍‌ଭେଁ ଦିଅନ୍ ଭରି । ॥୭୪॥

କଉଶଲ୍ୟା ମାଁ ଘରୁଁ ତ ବଏସରା ଥିଲା ଯୋଗ୍
ଏଛନି ସାଧ୍ ସେଥୁଁ ପାଉଛନ୍ ଅନନ୍ତ ସୁଖ୍‌ଭୋଗ୍ । ॥୭୫॥

ଦେଖି ଶିଖି କଇକେୟୀ ସୁମିତ୍ରା ଦୁହି ରାନୀ
ଯୋଗ୍ ସମାଧି ସାଧି ମନେ ସୁଖି ଦଉଛନ୍ ସାନି । ॥୭୬॥

ଦିହ୍ ଦିଶୁଛେ ମୁଟା ଶିଠା ମନ୍ ସଲଖି ସଁପୁର୍
ଅନାଦରେଁ ଇନ୍ଦ୍ରିୟମାନେ ହୁଅନ୍ ଆଁପୁର୍ ଚିଁପୁର୍ । ॥୭୭॥

ଦଶରଥ୍ ନୁହନ୍ ବଶ୍ କେଭେଁ କେନ୍‌ସି ଇନ୍ଦ୍ରିୟ ଆଗେଁ
ରାନୀମାନ୍‌କୁଁ ସେନ୍ତା ଜାନି ଆନନ୍ଦ୍ ଲାଗେଁ ଲାଗେଁ । ॥୭୮॥

ଚାର୍‌ହେ ଜମ୍‌ଲେଁ ହାରେ ହାରେ ଫୁଲ୍ ଦେଇ ଚଢ଼େଇ
ବିଷ୍ଣୁ ମୂର୍‌ତିର୍ ପୂଜା କରନ୍ ଫୁଲ୍ ପର୍‌ସାଦ୍ ବଢ଼େଇ । ॥୭୯॥

ଏକା ସାଙ୍ଗେଁ ଏକ୍ ଆସନେ ଏକାନ୍ତ କରନ୍ ଧ୍ୟାନ୍
ପତ୍‌ରା ଉତ୍‌ରା ହଇ ପସ୍‌ରାନ୍ ନିଜର୍ ଆତ୍ମ-ଜ୍ଞାନ୍ । ॥୮୦॥

କହୁନ୍ କହୁନ୍ ବାଲ୍‌ମୀକି ଲାଗିଗଲା ସମାଧି
ଶୁନ୍‌ଲା ଲୋକ୍ ବି ସଭେ ସେଥିଁ ସେ'ନ ଗଲେ ଗାଧି । ॥୮୧॥

ସୁରୁଯ୍ ହେଲେ ମଝ୍ ଆକାଶେଁ ସମାଧି ହେଲା ଭଙ୍ଗ
ଭଙ୍ଗ କର୍‌ଲେ ସଭା, ଋଷି ମାଖି ରାମ୍ ରଙ୍ଗ । ॥୮୨॥



# ପାଉଚ୍-୧୩

# ଦଶରଥ୍ ଶମ୍ବରାସୁର ଲଢ଼େଇ

ବେଲ୍‌ହଉ ବେଲା ଖରା ପସ୍‌ରା ବେଲ୍ ବସି ଉଲ୍‌ହଉଛେ
ଗଛର ତଲୁଁ ଖରା ଖସ୍ରାଇ ପଶ୍ଚିମ୍‌କେ ପେଲ୍‌ହଉଛେ । ॥୧॥

ଋଷି ବସିଛନ୍ ପାଚ୍‌ଲା ମେଛା ଡାଢ଼ି ମୁଡର୍ ଜଟା
ଲାଲିଆ ଖରା ପାଇ ଦିଶେ ବର୍‌ଫେ ଫଗୁ ଛଟା । ॥୨॥

ରାମ୍ ରସ୍‌କେ ଫିରେ ରାମେନ୍ ଶୁନ୍‌ଲା ଲୁକର୍ ସଭା ବି
ବାହାରେଁ ରାମ୍ ନାଇଁ ପାଏଲେଁ ଆତ୍‌ମା-ରାମ୍ ଅଭାବୀ । ॥୩॥

ଛାଡ୍‌ଲା ଠାନୁ ରାମେନ୍ କଥା କହିଚାଲିଛନ୍ ଋଷି
ପାଏନ୍ ମେତାଲ୍ ପିଇଯାଉଛନ୍ ଲବ କୁଶ ଖୁସି । ॥୪॥

ଉତ୍‌ରା ପବନ୍-ପିଠିଁ ଗୀତ୍ ଗାଇ ଆସେ ଶୀତ୍
ସୂରୁଯ୍ ତେଜ୍‌କେ ହୁରିଆ କରେ ଦୁଇଦିନିଆଁ ଜିତ୍ । ॥୫॥

ପାଚି ଆସନ୍ ଫସଲ୍ ସବୁ ନାଚି ଉଠେ ମନ୍
ଜଗତ୍‌କର୍ତ୍ତାର୍ ଦେ'ନ୍ ଜାନି ଉଷତ୍ ମହତ୍ ଜନ୍ । ॥୬॥

ରାନୀମାନେ ଜାନିଗଲେ ଜଗତ୍ ଈଶ୍ୱର୍‌ମଏ
ଯାହିଁ ଦେଖ୍‌ଲେଁ ସେ ହିଁ ଦିଶନ୍ କାହିର୍ ଡର୍ ଭଏ ? ॥୭॥

ନିଜର୍ ଭିତ୍‌ରେଁ ଈଶ୍ୱର୍ ଦେଖନ୍ ଈଶ୍ୱର୍ ନେ ନିଜ୍‌କେ
ଈଶ୍ୱର୍ ଜାନି ଅସ୍କଟାନ୍ ନାଇଁ କେନ୍ ସି ହେଲେଁ ଚିଜ୍ କେ । ॥୮॥

ସକାଲୁଁ କାକର୍ କାଟ୍‌ବାକେ ଖରା ବସନ୍ ପିଠେଇ
କୁଲ୍ ଦେବ୍‌ତା ବେଲ୍‌କେ ଦେଖନ୍ ମୁଡ୍‌କେ ହାତ୍ ଉଠେଇ । ॥୯॥

କହନ୍ ତୁମର୍ ଅଁଶ୍ ବଅଁଶ୍ରେ ଧରୁଁ ବିହନ୍ ମାନ୍
ସୂରୁଯ୍ ଦେବ୍ତା ! ତୁମର୍ ମେତାଲ୍ ଛାଡୁନ୍ ଅଭିମାନ୍ । ॥୧୦॥

କିଛି ନାଇଁ ପାଇ ତୁମେ ଜଗତ୍ ସେବା କର
ସେ ସେବା-ଭାବ୍ନା ପ୍ରଭୁ ! ଛୁଆକର୍ ମନେ ଭର । ॥୧୧॥

ଶୀତ୍ ଗଲା ଗଛ୍ ଲତାର୍ ଗହଲି ଭିତ୍ରେଁ ଛିଙ୍ଗଲି
ଋତୁର୍ ରଜା କେନ୍ ଛଟ୍କେଁ ବଉଲେଁ ଆଏଲା ଆଗ୍ଲି । ॥୧୨॥

କୁଇଲି କହେ ଆଦ୍ରେଁ ଆସି ଋତୁରାଜ୍ ହୋ ! ଆସ
ଫଗୁଆ ରଙ୍ଗର୍ ନୂଆଁ ପତ୍ରେଁ ଆସନ୍ ପରିଛେ ବସ । ॥୧୩॥

ପଲ୍ଶା ଗଛେଁ ଲାଲ୍ ରଙ୍ଗର୍ ବନ୍ଧା ହେଲାନ ଧଜା
ମୁଇଁ ବଜାଏଁ ସହନାଇ ସାଙ୍ଗେଁ ପଣ୍ଡୁକାର ମୁହେଁ ବଜା । ॥୧୪॥

ମହୁଲ୍ ଆମ୍ବ୍ ଚାର୍ ବଉଲେଁ ମୁକୁଟ୍ ସଜା ହେଲା ନ
ପିଁଧାଲା ବେଲ୍କେ ହୁଲ୍ହୁଲିକେ ମହୁମାଛି ବି ରହେଲାନ । ॥୧୫॥

ବାଟ୍ ଦେଖୁଛେ ତଲୁଁ ଉପର୍ ଉଡ଼ି ଉଡ଼ି ଟିହା
ଡାଲ୍ ତଲେଁ ତଲେଁ ଲୁଙ୍ଗୁର୍ ପୁଙ୍ଗୁର୍ ଡୁଙ୍ଗେ କୁଁଭାଟିଆ । ॥୧୬॥

ଚଁପା ଟେରେ କହଲିଁ କଁପାଏ ପତର୍ ଗହଲି ଦେଖି
ତିତେର୍ ଡାକି ତିର୍ତିରାଏ ଗୁର୍ବୁଁ ରଖେ ଲେଖି । ॥୧୭॥

ରାନୀ ମାନ୍କର୍ ମନ୍ ମାନ୍ ଆତୁର୍ ହଇଁ ଯାଏ
''ଋତୁର୍ ବିହେଁ ଚତୁର୍ଭୁଜ୍ ଯାଉ ଉତୁର୍ ଘାଏ'' । ॥୧୮॥

କହି ନିଜର୍ ଦିହ୍କେ ଦେଖି ଭାବନ୍ ଭାବ୍-ଗିରିକେ
ତୁଇଁ ଚାହେଲେଁ କୁନ୍ଦା କହକା, ଛୁଟା ଡେଗ୍ସି ଗିରିକେ । ॥୧୯॥

ତୋର୍ ଦୟାନେ ମୁନୁଷ୍ ହେସି ଦେବ୍ତା ନେହେଲେଁ ଦଏତ୍
ତୁଇଁ ଆସି ଘାଏ ମୁନୁଷ୍ ହେଲେଁ ହଇଁଯିବା କାଁ ଖଏତ୍ ? ॥୨୦॥

ଆ ମହାପୁରୁ ! ଆ'ନ ଘାଏ ମୁନୁଷର୍ ରୂପ ଧରି
ଦେଖା କେହେନି କାମ୍ ଯାହା ନର୍ ନାଇଁ ପାରେ କରି । ॥୨୧॥

ନାରୀ କରିଛୁତ ନାରିନାଇଁ ନେ ମା଼ଁକେ ମା଼ଁ କହ
ମହାପୁରୁ ମା଼ଁ ହଉ ଆମେ ପୁଓ ହଇ ତୁଇ ରହ । ॥୨୨॥

ମା଼ଁ ଚାହେଁଲେ ପୁଓ ମାନ୍‌କୁ କରି ପାରସି ଦେବ୍‌ତା
ଦୁର୍ଚ୍ଛନା ଦେଇ ଇ କଥାକେ ଦୁନିଆଁ ଦିନ୍‌ଏ ଦେଖ୍‌ତା । ॥୨୩॥

ଫଗୁନ୍ ଗଲାନ ଚଏତ୍ ଆସି ଜଗତ୍‌ମାତାର ପୂଜା
କର୍‌ବାକେ ଜଗତ୍ ଯାକର୍ କରନ୍ ସଜାବୁଜା । ॥୨୪॥

ଏନ୍ତା ବେଳେଁ ଆ ମହାପୁରୁ ଧରତୀ କେ ଘାଏ ଉତ୍‌ରି
ମା଼ଁର୍ ମାନ୍ ମହତ୍ ମା଼ଁର୍ ନିକେ ପଡୁ ନିଥ୍‌ରି । ॥୨୫॥

ହେ ପୁର୍‌ଥୀ ପିତା ! ମା଼ଁ ପୁର୍‌ଥୀ ସଜ୍ ହେଉଛେ
ମନ୍ ପୁଲ୍‌କା ପବନ୍ ପାଇ ଜୀବନ୍-ଗୀତ୍ ଗାଉଛେ । ॥୨୬॥

ତାର୍ ଦେଖା ଶିଖା ଯେତେ ଭାଏ ବିରାଦର୍ ଗ୍ରହ
ପୁଷାକୀ ନିଜର୍ ଠାନେ ରହି ଦେଖେଉଛନ୍ ଆଗ୍ରହ । ॥୨୭॥

କେତେବେଳେଁ ନେବ ଜନମ୍ ନିଘା କରୁଛନ୍ ବସି
କୁରୁଦ୍ କୁରୁଦ୍ ଭାବନ୍ ନିଜ୍‌କେ କୁର୍‌ଲି ଉଠନ୍ ହସି । ॥୨୮॥

ମୁନି ରଷି ଯୋଗୀ କବି କେଭୁଁ ଦେଖନ୍ ବାଟ୍
କଲେଁ କଲେଁ କଲମ୍ ଚଲାବେ ଜଗତର୍ ସମ୍ରାଟ୍ । ॥୨୯॥

ନିଜର୍ କୁଲର୍ ଉଜଲ୍ ଲାଗିଁ ଉକିଆ ଦିଅନ୍ ଜାଲି
ହୁରୁଦ୍ ଖୁଲିଁ ସୁରୁଯ୍ ଦେବ୍‌ତା କିରନ୍ ଦିଅନ୍ ଢାଲି । ॥୩୦॥

ରାନୀ ମାନେ ସାନି ମନେ ପ୍ରଭୁ ପାଏବାର ଆଶା
ରାଇ୍ ବଗ୍‌ଚାର୍ ଗୁଡା ଉଚାର୍ ମୁହେଁ ଆତୁର୍ ଭାଷା । ॥୩୧॥

ମନେ ରଙ୍ଗୁଛେ ଆନନ୍ଦ୍ ରସ୍ ଚିତ୍ ଚଏତନ୍ ରଞ୍ଜେଇ
ଆନନ୍ଦ୍-ଥିତି ରାମ୍ ଆଏନ ଆଏଲେଁ ଦିଏ ହଜେଇ । ॥୩୨॥

କଉଶଲ୍ୟା ଯଉବନ ଆଗୁଁ ଯୋଗ୍ ବିଦ୍ୟାନେ ପାରଗ୍
ସେ ଜାନିଛନ୍ ଯୋଗ୍ ଆଏନ ଆନନ୍ଦ୍ ପାଏବାର୍ ମାରଗ୍ । ॥୩୩॥

କଇକେୟୀ ଅଛନ୍ ପାଖେଁ ସାନ୍ ପଛେଁ ତାକର୍
ଦେଖିଲା ଲେଖେଁ ଦେଖି ଜାନନ୍ ସାରା ଜଗତ ଯାକର୍ । ॥୩୪॥

କଥା ଫୁଟେ ଭାତ୍ ମେତାଲ୍ କଉଶଲ୍ୟା ମୁହୁଁ
ସାଙ୍ଗେଁ ଦୁହି ରାନୀ ହୁଁକାର୍ ଦେଇ କରନ୍ ହୁଁ । ॥୩୫॥

ମୁନୁଷ୍ ମନର୍ ରାଏଜେଁ ଯଦ୍ରି ଘଢ଼େ ନାଇଁ ଆନନ୍ଦ୍
ସେ ଘଡ଼ି ମନ୍-ଅସୁର୍‌ପୁରୀ ରାଜ୍ କର୍‌ସି ଦ୍ୱନ୍ଦ୍ । ॥୩୬॥

ସେ ଦ୍ୱନ୍ଦ୍ ଦ୍ ଜାନ୍‌ବ ଆଏ କେଭେଁ କେନ୍ ନାମ୍
ତାହାକେ ମାରେ ପୁହୁଁଚି ପାର୍‌ଲେଁ କେବଲ୍ ଆନନ୍ଦ୍-ରାମ୍ । ॥୩୭॥

ମରତ୍-କଥା କେ ପଚାରେ ସରଗେଁ ବି ଇ ଅସୁର୍
ଯାହା କର୍‌ସି ଯୁଗ୍ ଯୁଗ୍ ତକ୍ ନାଇଁ ହଏ ପାଶୁର୍ । ॥୩୮॥

ମର୍‌ବାର୍ ଡର୍ ନାଇଁ ଥାଏ ସହଜେଁ ଅମର୍ ଲୁକେଁ
ମନ୍‌ମାନେ ସେନ କଲ୍‌ବଲ୍ ହନ୍-ଇନ୍ଦ୍ରିୟର ଭୁକେଁ । ॥୩୯॥

ଶାନ୍ତି ଯେନ୍ତି ହେଲେଁ ଥିସି ଆବରଣର୍ ତଲେଁ
ସେ ଆବରଣ୍ ଅସୁର୍ ହଇ ସତାଏ ଦେବ୍‌ତା କୁଲେଁ । ॥୪୦॥

ଦେବ୍‌ତା-ଦେଶ୍ ସରଗ୍-ପୁରେଁ ଏନ୍ତା ହେଲା ଥରେ
ଶାନ୍ତି ହେଲା ଢ଼ାପି, ତାପି ହେଲା ଦେବ୍‌ତା ପରେ । ॥୪୧॥

ଲଢ଼୍‌ଲେଁ କାହିଁ ପାର୍‌ତେ ? ସ୍ୱାରଥ୍ ଅଛେ ଭର୍‌ପୁର୍
ଶାନ୍ତି ଢ଼ପା ଭାବ୍‌କେ ଦେଖିଲେ ଆଏ ଶମ୍ବରାସୁର୍ । ॥୪୨॥

କାମ୍ କ୍ରୋଧ୍ ଲୋଭ୍ ମମ୍‌ତା ଗରବ୍ ଇର୍‌ଷା ମିଶି
ନାଇଁ ଥିଲେଁ ସୋଇ୍ ମୁନୁଷ୍ ବି ଦେବ୍‌ତା ମେତାନ୍ ଦିଶି । ॥୪୩॥

ସଭେ ଗଲେଁ ଜୁଟି ଦେବ୍‌ତାପନ୍ ନିଅନ୍ ଲୁଟି
ଦେଖିନୁହେ ଦେବ୍‌ତା ମାନ୍‌କର ଦୁର୍‌ଦଶା ହାଏ-ଲୁଟି । ॥୪୪॥

ଗରବ୍ ଗଉରବ୍ ମହରଗ୍ ହେଲା ସରଗ୍ ରାଏଜ୍
ଶମ୍ବର୍ ସାଙ୍ଗେ ସମର୍ କାଯେଁ ମାଗ୍‌ଲେ ନରର୍ ସାହେଯ୍ । ॥୪୫॥

ସେନା ସଜାଇ ନିଜେଁ ରଜା ଗଲେ କରି ଲଢେଇ
ପୁରାନ୍ ଅବ୍‌ତକ୍ ଘୁଷି ହୁଏ କରି ରଜାର୍ ବଢେଇ । ॥୪୬॥

କଇକେୟୀ ତ ଯାଇଥିଲା ରଜା ସଙ୍ଗେ ମିଶି
କା'ଣା ହେଲା ସବୁ ଜାନିଛେ କହ ନ ମଝିଲି । ॥୪୭॥

ସାନ୍‌ରାନୀ କହେଲେ ନାନୀ ! କହ ତୁମେ ପହେଲେଁ
ଆମର୍ ରାଜାକୁଁ ଛାଡି ମର୍‌ତେଁ ନାଇଁ ଥାଇ କିଏ ହେଲେଁ ? ॥୪୮॥

ମୁଲୁଁ କହୁଛେଁ ଶୁନ୍‌ଅ ସବୁ କହନ୍ ମଝ୍‌ଲୀ ରାନୀ
ଲୋକ୍ ଗୁଁଦ୍‌ଲେଇ ହେସନ୍ ଭିତର୍ କଥା ନାଇଁ ଜାନି । ॥୪୯॥

ଦେବ୍‌ତାକର୍ ତ ମନର୍ ରଥ୍ ହେଲା ବର୍ଲି ଢିଲା
ଲଢେଇ, ଦଶ୍‌ରଥ୍ ବିନା ରଥେଁ ଅଙ୍କିଆର୍ କା'ର୍ ଥିଲା ? ॥୫୦॥

ଆହୁରି ଗୁଟେ କଥା ଅସୁର୍ ଯୁଝୁଥିଲା ଲୁକିଁ
କେ'ନ ଥିବା ଯେ କିଏ ପାର୍‌ବା ? ସଲ୍‌ଖେଁ ଶର୍‌ଯୁଝି ? ॥୫୧॥

ଆମର୍ ରଜା ହାତେଁ ଥିଲା ଶବଦ୍‌ଭେଦୀ ଶର୍
ନାଇଁ ଦେଖି ଶବଦ୍ ବାରି ମାରନ୍ ତଡ୍‌ପର । ॥୫୨॥

ତଥାପି ତ ଆମର୍ ରଥ୍‌କେ କର୍‌ଲା ଥରେ ଢିଲା
ନାଇଁ ପାର୍‌ଲେ ଜାନି ରାଜା ହିଟ୍‌ଲା କାନ୍‌ଖିଲା । ॥୫୩॥

ଚିନିଆଙ୍ଗୁଟ୍ କାନ୍ଖିଲା କଲିଁ ଜାନି ପାଏଲିଁ ଭଲେ
ନେହେଲେଁ କେ'ନ ଥିଲୁଁ ଆମେ, ହେତାଲେଁ ଦିହ୍ ହଲେ । ।।୫୪।।

ଜାନ୍ଲା ଉଦ୍ରୁଁ ରାଜା କହେଲେ ବଅଁଚାଲ ମୋର ଜାନ୍
ଯା'ଣା ମାଗ୍‌ବ ଦେମି, ମାଗ୍‌ବ ବଏଲେଁ ମାଗ ପ୍ରାଣ୍ । ।।୫୫।।

ମୁଇଁ କହେଲି ତୁମେ ଥିଲେ କାଁ ଅଛେ ଦର୍କାର୍ ?
ଥାଉ କେବେଁ ମାଗିନେମି ଦେବାର୍ କଲିଁ ସୀଉକାର୍ । ।।୫୬।।

ଯାହାକେ ମିଲ୍‌ସି ତମର୍ ବାଗିର୍ ପରାନ୍-ପତି ଘାଏ
କା'ଣା ମାଗ୍‌ବା ? ତାହାର୍ ଆର୍ କେନ୍ ଅଭାବ୍ ଥାଏ । ।।୫୭।।

ଅଯୋଧାକେ ଫିର୍‌ଲା ପରେଁ ଗୁଡର୍ ମୂଲା ଆଙ୍ଗୁଟ୍
ଶର୍‌ବାଜିଁ ଘା ହଇଁ ନାଇଁନ ପୂଜର୍ ଛୁଟ୍ । ।।୫୮।।

ଧନ୍ୱନ୍ତରୀର୍ ପୁଓ ପଦ୍ମାକର୍ ବତାଲେ ଉପାଏ
କିଏ ଯଦ୍‌ରି ନଖର୍ ଘା'କେ ମୁହେଁ ଶୁଷି ଘାଏ । ।।୫୯।।

ପୋଜ୍ ରକତ ରୋଜ୍ ରୋଜ୍ କରିନେତା ସାଫ୍
ଇ ଦୁଖ୍‌ନୁ ତେତ୍‌କେଁ ରଜା ପାଇ ଯାଏତେ ମାଫ୍ । ।।୬୦।।

କାହାକେ ଆର୍ ନାଇଁ ଜନାଇ ନିଜେଁ କଲି ମୁଁଇ
ରଜା କହେଲେ ''କିଏ ପାର୍‌ବା ? ଯାହା କଲୁ ତୁଇଁ । ।।୬୧।।

ଆଗୋ ଥରେ ଯାଚିଥିଲି ନାଇଁ ମାଗ୍‌ଲୁ କିଛି
ଇଛନି କହେଁ ମାଗ୍ ମନ୍‌କେ ମନ୍ ବାଛି ନି ଛି'' । ।।୬୨।।

ଇଟା ଶୁନି ତିନ୍‌ହି ରାନୀ ଖିଦ୍ ଖିଦେଇ ହଁସି
ଗଦ୍ ଗଦାଇଁ ଗଲେ ତୁର୍‌ତି ଆନନ୍ଦ-ରସେଁ ରସିଁ । ।।୬୩।।

ଘାଏ ଗଲା କି ହାଏ କରି କହେଲେ ବଡ଼ଖୋରାନୀ
ପେଟେଁ କେନ୍ତା ବଥା ହଉଛେ ନାଇଁ ପାର୍‌ବାର୍ ଜାନି । ।।୬୪।।

ଗରଭ୍ ଗୁସିଆଁ ଘାଏକେଁ ଛନ୍‌କେଁ ପେଟ୍ ଭିତରେଁ ଲତାଏ
ଭିତ୍‌ରେଁ ଭିତ୍‌ରେଁ ପାର୍‌ତାର୍ ହେବାର୍ ଥିତିକେ ମୋର୍ ହେତାଏ । ।।୬୫।।

ସଭେ ଗଲେ ରାନୀବାସ୍‌କେ ହେଜି ନିଜର୍ ଥିତି
ଧିଆନେ ମଜିଁଯାଏ ରାଏତ୍ ଆଯୋଧିଆ ଛିତି । ।।୬୬।।

ସର୍‌ଯୁ ବହେ ରାଏତ୍ ସର୍‌ତା ଉଛୁଲ୍ ପୁଛୁଲ୍ ପାନି
ଅବଧି ଶୁଏ ରାଏତ୍ ରାନୀର୍ ଅଁଧାର୍ ପନତ୍‌କାନି । ।।୬୭।।

ତାରା ଗୁହୁଡ଼ା ସାରା ରାଏତ୍ ଦେଖୁଥାଆନ୍ ବାଟ୍
କେତେବେଲେଁ ଆଏବେ ବଲିଁ ସୁରୁଷ୍ଟିର ସମ୍ରାଟ୍ । ।।୬୮।।

ଉଆଁସ୍ ଯାଇ ଆଠ୍‌ଦିନ୍ ହେଲା ମଝ୍ ଆକାଶେଁ ଜନ୍
ସରଯୁ ପାଏନ୍ ଦର୍‌ପନେ ମୁହୁଁ ଦେଖି ଛନ୍ ଛନ୍ । ।।୬୯।।

ଆଏତେ କାଏଁ ତେଜ୍-ସମୁଦର୍ ଯାହୁଁ ପାଇ ଥିପେ
ଭାଏଗ୍‌ବାନ୍ ମୋର୍ ଦିହୁଁ ସୁଧା ଥପ୍‌ଥପ୍ ଥିପେ । ।।୭୦।।

ଚଏତୀ ପବନ୍ ବୁହେ ଚେତେଇ ଚିତ୍ ଚଏତନ୍ ମାନ୍
ଆଏବା ଯେ ସେ ଅଛେ ଦେଖି ଫିକି ଅଭିମାନ୍ । ।।୭୧।।

ଗର୍‌ହମାନେ ଆସି ବସିଛନ୍ ବନ୍‌ଏ ଠାନ୍ ବାଆରି
କାଏଁ ଚୁକ୍‌ବେ ଅଜାନ୍‌ତକେଁ ର୍ଗଭୁଁ ଆଏଲେଁ ବାହାରି । ।।୭୨।।

ପୁର୍‌ଥୀ ପରି ନିଦର୍ କୁଡେଁ ଡୁର୍‌ତି ପରେଁ ଶୁଇ
ରାନୀ ମାନେ ଉଟୁସ୍ ପୁଟୁସ୍ ଗର୍ଭର୍ ଭାର୍ ବୁହି । ।।୭୩।।

ଦାସୀମାନେ ଉଠ୍‌ବସ୍ କେ ବସି ଗୋଡ଼ ଚିପେ
ରାନୀର୍ ଦୁଖେଁ ଦାସୀମାନ୍‌କର୍ ଆଖୁଁ ପାଏନ୍ ଥିପେ । ।।୭୪।।

କିଏ କହେ ରଜା ଆଗେଁ ଘଡ଼ି ଘଡ଼ିକର୍ ହାଲ୍
ବସି ନାଇଁ ପାରି ରଜା କରନ୍ ବୁଲ୍ ଚାଲ୍ । ।।୭୫।।

ରାଏତ୍ ଗଲାନ ସରି ସରି ହଁସି ବେଲ୍ ଉଦୁଛେ
ଅଁଧାର୍ ଦେଖିଲେଁ ଖରାର୍ ଧାରେଁ ଖଣ୍ ଖଣ୍ କରି ଛେଦୁଛେ । ॥୭୬॥

ରାଜ୍‌ମହଲର୍ ଶିଘେଁ ଦିଶେ କଅଁଲି ଲାଲିଆ ଖରା
ଦିନ୍‌କେ ଦେଖୁଁ କା'ଣା ହଉଛେ ରାଏତ୍ ଚାଏର୍ ଘଡ଼ି ଗଲା । ॥୭୭॥

ଏନ୍‌ତା କହି ଅନ୍ତପୁରୁଁ ଜେହେଲା ଗଲା ଘୁଚିଁ
କାମ୍ ବୁତାନେ ଲାଗଲେ ଲୋକ୍ ଜାନି ନିଜର୍ ରୁଚି । ॥୭୮॥

ଏତ୍‌କି କହି ସଭା ସାର୍‌ଲେ ମୁନି ମହାଶଏ
ଇତି ଶ୍ରୀ କଲେ ଗାଇ ଗାଇ ରାମର୍ ଜଏ । ॥୭୯॥



# ପାଉଟ୍-୧୪

## ରାମ୍ ଜନମ୍ ଆର୍ ବିଶ୍ୱାମିତ୍ର ସାଙ୍ଗେଁ ରାମ୍ ଲକ୍ଷ୍ମଣ୍ ଯିବାର୍ କଥା

ଆଶ୍ରମ୍-ଗଛ୍ ଅଗି ମାନ୍‌କେଁ ଲାଲିଆ ଖରା ପାଉଛେ
ଋଷି ବସିଛନ୍ ଛାଲ୍ ଆସ୍‌ନେ ସଭା ସଁଭ୍‌ରି ଆଉଛେ । ॥୧॥

ଲବ କୁଶ କୁଶ୍-ଆସ୍‌ନେ ବୀନା ଧରିଁ ବସ୍‌ଲେ ନ
ଚେଲା ମାନ୍‌କର ହେଲା ନାଇଁ ଭେଲା ବାଁଧି ଆସ୍‌ଲେ ନ । ॥୨॥

ସୀତା ଆସି ମୁନି କୁମାରୀ ଦଲ୍ ଭିତ୍‌ରେଁ ବସୁଛନ୍
ପୂନୀ ଆକାଶର୍ ତରା ମହିଁ ଜନ୍ ଆସି କାଏଁ ହଁସୁଛନ୍ । ॥୩॥

ସଭା ଆରଁଭର୍ ପୂଜା ପାଠ୍ ଘଡ଼େ ଆଗୁଁ ସରିଛେ
ଯାହାକେ ଦେଖିବ ରାମେନ୍ ଶୁନ୍‌ବାର୍ କାଯେଁ କାନ୍ ପାରିଛେ । ॥୪॥

ମୁହୁଁନୁ କଥା ନାଇଁ ବାହାର୍‌ନୁ ଆଖୁଁ ଲହ ବୁହୁଛେ
ଡାଢ଼ି ମେଛା ନାଇଁ ମାନି ମୁନିର୍ ଗାଲ୍ ଧୁଉଛେ । ॥୫॥

ଓଁ ରାମ୍ କହି ମୁନିର୍ ଲାଗିଁ ଗଲାନ ସମାଧି
ଅଜନ୍ମା ଆଏଜ୍ ଜନମ୍ ନେବା, ଆଦି ହେବା ଅନାଦି । ॥୬॥

ଜନମ୍ ମୁର୍ତ୍ତିର୍ ସଂସାରେଁ ଅଜନ୍ମା ନେବା ଜନମ୍
ସମ୍‌କର୍ କରମ୍‌ଫଲ୍ ଦାତା ଧର୍‌ବା ମୁନୁଷ୍ କରମ୍ । ॥୭॥

ଇ ଭାବ୍‌ନାନେ ଭାବିତ୍ ଅଛନ୍ ଛନ୍‌ଏ ମୁନି ଜ୍ଞାନୀ
ତୁର୍‌ତି ହରଷ୍-ହାଁଡି ଭିତ୍‌ରୁଁ ରସ୍ ଆନ୍‌ଲେ ଛାନି । ॥୮॥

ଯେନ୍ ପରାନୀ ଜନମ୍ ନେଲେଁ ଜନମ୍ ଦାତା ପିତା
ଥିସି ନେହେଲେଁ ମାଟିର୍ ମଠିଆ ଖପ୍‌ରି ହଇଁ ଥିତା । ॥୯॥

ଜନ୍ମିବାର୍ ତ ବଏସରାନାଇଁ ନାଇଁ ଜାନ୍ଏ ଜନ୍ମି
କଉଶଲ୍ୟା ହାଏ ହାଏ କରି ଘାଏ ଘାଏ ଯା'ନ୍ ସର୍‌ମି । ॥୧୦॥

ଶୁଇଥିଲେଁ ତ ସବୁଦିନ୍ ଦେଖନ୍ ପ୍ରଭୁର୍ ସପନ୍
ଚେତି କାଏଁ ପାଶ୍‌ରି ନେବେ ତାହାରି ସ୍ୱରୂପ୍ ଦେଖନ୍ । ॥୧୧॥

ରଷି କହେଲେ ସବୁ ମାଁ, ପୁଓକୁଁ କଲେଁ ରାମ୍
କାଁ କରି ଇ ଦୁନିଆଁ ସାରା ରହେତା ଦୁଖର୍ ନାମ୍ । ॥୧୨॥

ଜୀବନ୍ ମାନେ ଲକେ ପକେ ହେବାକେ ପାର୍‌ତାର୍
ସହଜେଁ ମାନ୍‌ବେ ଜନମ୍ କରମ୍ ? ଜନମ୍ ନାଇଁ ଯାର୍ । ॥୧୩॥

ମାଆଁମାନେ ନାଇଁ ପାଏଲେଁ ହେଲେଁ ଟିକେ ଦୁଖ୍
ଦେଖିବେ କେନ୍ତା ରାମ୍ ମେତାଲ୍ ପୁଓ ମାନ୍‌କର ମୁଖ୍ । ॥୧୪॥

ବେଲ୍ ହେଲା ନ ମୁଡ୍ ଉପ୍‌ରେଁ ଦୁହୁରି ତେଜ୍ ରୁକୁଛେ
ତାହାରି ଜନମ୍ ଦାତା ବାହାରି ଜନମ୍ ନେବା ଦେଖୁଛେ । ॥୧୫॥

ସବୁଠାନୁ ବନ୍ଏ ଫଲ୍ ଦେସନ୍‌ଯେନୁ ଥାଇ
ସେ ସେ ଠାନେ ଗର୍‌ହ ନଖତର୍ ଲାଗି ରହେଲେ ନ ଯାଇ । ॥୧୬॥

ଯେନ୍ ଚତୁର୍‌ଭୁଜ୍ ମୂର୍‌ତି ମନେ ଥାପି କଉଶଲ୍ୟା
ଯୋଗ୍ ଥିଲେ ସାଧି ମନେ ସେ ହିଁ ଆସି ଗଲା । ॥୧୭॥

ସେ ମୂର୍‌ତିକେ ଧରିଁ ଗଜ୍‌ରେ ଆଶା ନୂଆଁ ନୂଆଁ
ରାନୀ ଅନ୍‌ମାନେ ସେ ଆସି କାନ୍ଦେ କୁଆଁ କୁଆଁ । ॥୧୮॥

ରାନୀର ଆଖିଁ ଛୁଆ ଧରେ ଚତୁର୍ ଭୁଜ୍ ମୂରତି
କାହିଁ ପଲାଲା ପିଲାଟୀ ଦୁଖ୍, ମନେ ଅସରା ଫୁର୍‌ତି । ॥୧୯॥

ବଏସରା ବଶେଁ ଗୁନ୍ ଗୁନ୍‌ଉଛନ୍ ଜଣାଣ୍ ମନେ ମନେ
କହନ୍ ପ୍ରଭୁ ! ପୁଓ ହଇଛୁ ମୁହୁଁ ଲଗା ମୋର୍ ଥନେ । ॥୨୦॥

ପୁଓକେ ଯେନ୍ତା ଦେଖି ହେସି ସେନ୍‌ହେ ଏକାନ୍ତ କରି
ସେନ୍ତା ସେନ୍‌ହେ ଶର୍‌ଧା ପ୍ରଭୁ ! ତୋର୍ ନିକେ ଯାଉ ଝରି ।    ॥୨୧॥

ଦାସୀ ମାନେ ଆସି କହେଲେ ରଜା ଆଗେଁ ଭରସି
ତିନ୍‌ହି ରାନୀର୍ ଚାଏର୍‌ଟା ପୁଓ ଅମ୍‌ରତ ଆସେ ବର୍‌ଷି ।    ॥୨୨॥

ରଜା ଦେଲେ ବେକୁଁ ବହରାଇ ହୀରାନୀଲାର୍ ହାର୍
ଅନ୍ତପୁର୍‌କେ ପୁହୁଁଚିବାକେ ତୁର୍‌ତି ହେଲେ ବାହାର୍ ।    ॥୨୩॥

ରାଏଜ୍ ସାରା ଚହଲ୍ ପରେ ବାଜେ କେତେ ବଜା
ଉଷଦ୍ ମାରେଁ ସଭେ ହୁଅନ୍ ଧିଆନ୍ ଗିଆଁନ୍ ହଜା ।    ॥୨୪॥

ଯାହାର୍ ପାଶେଁ ଯାହା ଥିଲା ଦେଇ ବସେ ସିଏ
ସଭେ ହଉଛନ୍ ଦାତା ନେବାର୍ କାଯେଁ ନାଇଁ କିହେ ।    ॥୨୫॥

ବଡ୍ ମଝିଆଁ ଦୁହି ରାନୀକର୍ ପୁଓ ଗୁଟେ ଗୁଟେ
ଯଅଁଲା ଜିଆ ପୁଓ ଦୁଇଟା ସାନ୍‌ରାନୀକୁଁ ଯୁଟେ ।    ॥୨୬॥

ଯେ ଯାହାକେ ଭେଟେ ହୁଅନ୍ ଏଖେଇ ଗୁଟେ କଥା
ପାଶ୍‌ରି କବାର୍ ବୁତା ହୁଅନ୍ ଆନନ୍ଦ ମନ୍-ମଥା ।    ॥୨୭॥

ଗାଁ ଖୁଏଲ୍‌ନେ ଦାମୁର୍ ଡେଗନ୍ ଡାଲେଁ ପଦ୍‌ରେଁ ଟେରେ
ପାନି ଉଦ୍‌କନ୍ ପାଏନ୍‌ଚର୍ କେତେ କହେଲେଁ ନାଇଁ ସରେ ।    ॥୨୮॥

ଝାର୍ ପଦ୍‌ରାର୍ ଜଁତ୍ ଜାନୁଆର୍ ଉଦ୍‌କା ଡେଗା ଦେଖି
ହଦ୍‌ରା ଲାଗେ କହେବାକେ କେ ପାରେ ଭାଏଲ୍ ଲେଖି    ॥୨୯॥

ବାଲ୍‌ମୀକି କହନ୍ ବଶିଷ୍ଠ୍ ସାଙ୍ଗେ ଶାନ୍ତ ଶିଷ୍ଟ ଗିଆନୀ
ଧାର୍ ଧଏଲେ ରାଜମହଲ୍‌କେ ପୁଓ ଜନମ୍ ଜାନି ।    ॥୩୦॥

ବଡ୍ ରାନୀକର୍ ପୁଓ ସୁନ୍ଦର୍ ଶାମଲ୍ ବରନ୍ ଶରୀର୍
ଦିଶେ ମେଘ୍‌କେ ଘାରି ତହିଁ ବିଜ୍‌ଲି ମିଶା ସରିର୍ ।    ॥୩୧॥

କଇକେୟୀକର୍ ପୁଓ ହଇଛନ୍ ଠିକ୍ ସେନ୍ତାବରନ୍
ସାନ୍‌ରାନୀକର୍ ପୁଓ ଦୁହିଟା ଶଙ୍ଖର୍ ରଙ୍ଗ୍ ଧରନ୍ । ||୩୨||

ବଶିଷ୍ଟ୍ ଋଷି ଆଏଁଖ୍ ମୁଜି ଯୁଲେଇ ଦେଖ୍‌ଲେ ଘାଏ
ଭିତ୍‌ରେଁ ଯାହାକେ ଦେଖନ୍ ବାହାରେଁ ଠିକ୍ ସେନ୍ତା ଥାଏ । ||୩୩||

ରାଜା କହେଲେ କହ ଗୁରୁ ! ଛୁଆକର୍ ଭଲ ମନ୍ଦ୍
ଋଷି କହନ୍ ସବୁ ସୁନ୍ଦର୍ ଶୁଭ୍ ନାଏଁନ ଦ୍ୱନ୍ଦ୍ । ||୩୪||

ବଡ ପିଲାକେ ଦେଖ୍‌ଲେ ଆଏଁଖ୍ ନାଇଁ ପାର୍‌ବାର୍ ଘୁଚି
ଯେ ହେଲେଁ ବି ରସିଯିବା ଯେନ୍ତା ଥାଉ ରୁଚି । ||୩୫||

ଛନ୍‌କେଁ ମନ୍ ରମିଯିବା ବଡ୍ ପିଲାକେ ଦେଖ୍‌ଲେଁ
ବୁଦ୍ଧି ଗିଆନ୍ ନାଇଁ ରହେ ଯେତେ କରି ରଖ୍‌ଲେଁ । ||୩୬||

ଯେ ଦେଖ୍‌ବା ଯାହାକେ ଦେଖ୍‌ବା ସେ ଯିବା ନ ରମି
ହେଁ ଥି୍‌ର୍ ଲାଗି ରାମ୍ ହଉ ନାମ ଦୁଖ୍ ନାଇଁ ପାରେ ଶମି । ||୩୭||

ମଝିଆଁ ରାନୀର୍ ପୁଓକେ ଦେଖ୍‌ଲେଁ ପୂରେ ସବୁ କାମ୍‌ନା
ଭରତ୍ ହଉ ନାଆଁ ଦେଖ୍‌ଲେଁ ଭର୍‌ତି ହଉ ଭାବ୍‌ନା । ||୩୮||

ସବୁ ଲକ୍ଷଣ୍ ଧରିଁ ଆଇଛେ ସାନ୍ ରାନୀର୍ ବଡ୍ ପିଲା
ଲକ୍ଷ୍ମଣ୍ ହଉ ନାମ୍ କେନ୍‌ସି ଲକ୍ଷଣ୍ ନାଇଁ ଢିଲା । ||୩୯

ସୁରୁପିଲାକେ ଦେଖ୍‌ବ ସତେଁ ପାର୍‌ଲା ଦିନ୍‌କେ ତାର୍
ଉତ୍‌ପାତ୍ ଅଏରି ନିପାତ୍ କର୍‌ବା ଘାଏ ନୁହେ ବାର୍‌ବାର୍ । ||୪୦||

ଶତ୍ରୁଘନ୍ ନାଁ ହଉ ଶତ୍ରୁହୀନ୍ ରଘୁବଂଶ୍
ନର୍ ହଇଁ ବି ପିଲା ଚାର୍‌ହିଟା ପାଏବେ ନାରେନ୍ ଅଂଶ୍ । ||୪୧||

ହାତ୍ ଯୁଡି ଥର୍‌କେ ଥର୍ ରାଜା କରନ୍ ବିନ୍‌ତି
ତୁମର୍ ତାର୍ ଆଶିଷ୍ ପାଇଁ ମୁନ୍‌ଷେଁ ହଉନ୍ ଗନ୍‌ତି । ||୪୨||

ଷଠୀ ସର୍‌ଲା ଅଁଦ୍‌ରି ଉଠ୍‌ଲା ସର୍‌ଲା ଭାତ୍ ଖୁଆନି
ଟୁଆକେ ଟୁଆ ମଟୁଆଲ୍ କରେ ଛୁଆ ଚାରହିକର ଚାହାନି । ॥୪୩॥

ଚାରି ହାତେଁ ଗୁଡ଼େଁ ରଙ୍ଗି ଘର୍ କରି ରନ୍‌ଭନ୍
ଧନ୍ ଦେଖ୍‌ଲେ ଧୂଏଲ୍ ମେଟାନ୍ ଧୂଏଲ୍ କରନ୍ ଧନ୍ । ॥୪୪॥

କାଁଥି ଧରି ଠିଆ ଉଠ୍‌ଲେ ପକାଲେ ପାହେ ପାହେ
ରାଜ୍ ମହଲେଁ ସେ ଉଖିନେ କେତେ ମହୋଛବ୍ ଯାଏ । ॥୪୫॥

ତିନ୍‌ହି ରାନୀର୍ ଚାରହି ପୁଓଙ୍କୁଁ ସେନ୍‌ହେ ସରାଗ୍ ସମାନ୍
ତିନ୍‌ହି ରାନୀ ଭୁର୍‌ଥେଇ ନିଅନ୍ ଜନ୍‌ଏ ହେଲେଁ ଅମାନ୍ । ॥୪୬॥

ରାଜା ଆଏଲେଁ ଚାର୍‌ହି ପିଲାକୁଁ ଥର୍‌କେଁ କରନ୍ ପାୟୀ
ଦୁହି ଖାଁକେ ଦୁଇ ଧଏଲେଁ ଖଦେଁ ଦୁଇ ଥାଇ । ॥୪୭॥

ଦାସୀ ପରିବାରୀ ସାଙ୍ଗେଁ ଉଆସ୍‌ର ଅନୁଚର୍
ଛୁଆକୁଁ ଛାଡ଼ି ମନ୍ ନାଇଁ କରନ୍ ଫିର୍‌ବାକେ ଘର୍ । ॥୪୮॥

ରାମ୍ ଚାଲ୍‌ଲେଁ ଠୁମୁକ୍ ଠୁମୁକ୍ ପଛେଁ ଲକ୍ଷ୍ମଣ୍ ଲେଙ୍ଗଡ଼ନ୍
କେନେ ଭରଥ୍ ହିଟି ପର୍‌ଲେଁ ଶତୃଘନ୍ ଗୋଡ଼୍ ରଗ୍‌ଡ଼ନ୍ । ॥୪୯॥

ମାଁ ସାନି ଗୁରସ୍ ଭାତ୍ ଖୁଆବେ ବର୍ଲି ବସି
ଡାକ୍‌ଲେଁ ପଲାନ୍ କିର୍‌କିରାନୁ ଖେଲ୍ ଖେଲାନୁ ହଁସି । ॥୫୦॥

ହଁସ୍‌ଲେଁ ଆଗର୍ ଦାଁତ୍ ଦୁଟାକ ଆଁଖି ଉଠେ ଝଲ୍‌ସି
ମର୍କତ୍ ଗଛେଁ ମୋତିର୍ ଫଲ୍ ଧରି ଆସେ କାଏ କଁଷି । ॥୫୧॥

ଡାଁଡ୍‌କେ କିଏ ଖେଲେଇ ଆନ୍‌ଲେଁ ହନୁ ଭାଲୁ ମାକର୍
ଉଆସ୍ ନିକେ ଡାକି ଆନି ରଖନ୍ ଦିନ୍ ଯାକର୍ । ॥୫୨॥

ରାମର୍ ସଉକ୍ ସାଙ୍ଗେଁ ସମ୍‌କର୍ ଶର୍‌ଧା ମିଶିଥାଏ
ସୁଆଁଲି ଆନନ୍ ପଶୁ ମାନ୍‌କୁଁ ସେନ୍‌ହେ ସହିତ ଘାଏ । ॥୫୩॥

ପାଠ୍ ପଢ଼ା ବଏସ୍ ଜାନି ବଶିଷ୍ଠ୍ ପଢ଼ାଲେ ପାଠ୍
ପାଠ୍ କା'ଣା କି, ଆଏ ସିନା ଜୀବନ୍ ଗଢ଼ବାର୍ ବାଟ୍ । ॥୫୪॥

ଜାନ୍‌ଲା ମିତାଲ୍ ସବୁ ପିଲା ଏଖେଇ ଘାଏକେଁ ବୁଝନ୍
ପାଠ୍ ସର୍‌ଲା ନୂଆଁ କା'ଣା ପଢ଼ାବେ ଗୁରୁ ଖୁଜନ୍ । ॥୫୫॥

ସେ ସାଙ୍ଗେଁ ଲଢ଼େଇ କର୍‌ବାର୍ ବିଦ୍ୟା ଆର୍ ବିଧି
ଶିଖାଲେ ସାଉଟି ରଖନ୍ ଜାନି ଖେତ୍ରୀମାନ୍‌କର ନିଧି । ॥୫୬॥

ପଢ଼ା ଠାନୁ ଫିରି ଖେଲନ୍ ଗୁଡୁ କିଦ୍ କିଦ୍ ଜୁଏ
ହାର୍ ଜିତ୍ ନେଇ ଦୁଖିତ୍ ହେବାର୍ କିହେ ଦେଖନ୍ ନୁହେ । ॥୫୭॥

ଜିତୁଥିଲେଁ ବି ରାମ୍ ଜାନି ଜାନି ଯାଆନ୍ ହାରି
ଜିତ୍‌ଲେଁ ଉଷତ୍ ଭାଏମାନେ ହେବେ ବଲିଁ ଖାଲି । ॥୫୮॥

ମାଆଁନୁ ଆସି କୁମାର୍ ବାପା ପାଦେଁ କରନ୍ ଯୁହାର୍
ଦଶରଥ୍ ମନ୍ ସମୁଦରେଁ ପୁନି ରାତିର୍ ଜୁଆର୍ । ॥୫୯॥

ଚାର୍‌ହି କୁମାରର୍ କଥା ଚାର୍‌ହି ଦିଗେଁ ହେଲା ଜାରି
ବିଶ୍ୱାସ୍ କରି ବିଶ୍ୱାମିତ୍ର ଋଷି ଉଷତ୍ ଭାରୀ । ॥୬୦॥

ସେ ଭାବୁଥିଲେ ମୁନୁଷ୍ ପାଏଲେଁ ବନ୍‌ଏ ଗତି ଥିତି
ଦୁଖ୍ ଦାରିଦର୍ ଯାଇ ସୁଖେଁ ସଁଭ୍‌ରି ଉଠ୍‌ତା କ୍ଷିତି । ॥୬୧॥

ବିଶ୍ୱର୍ ହିତେଁ ବିଶ୍ୱାମିତ୍ର କରୁଥିଲେ ଯାଗ୍
ଦଏତ୍ ଆସି ଖଏତ୍ କରନ୍, ଋଷି ମନେ ରାଗ୍ । ॥୬୨॥

ରାମ୍ ଲକ୍ଷ୍ମଣ୍ ଆଏଲେଁ ଦଏତ୍ ଉତ୍ପାତ୍ ଯିବା ନାଶ୍
ପିଲାକର୍ ବି ବଢ଼ିଯିବା ନିଜର୍ ଉପରେଁ ବିଶ୍ୱାସ । ॥୬୩॥

ବ୍ରହ୍ମର୍ଷି ବଶିଷ୍ଠ୍ ପର୍‌ଶିଥିବେ ଅସୀମ୍ ଜ୍ଞାନ୍
କମିଥିବା ଭାଏଲ୍ ଲଢ଼େଇ କର୍‌ବାର୍ ବିଧି ମାନ୍ । ॥୬୪॥

ବିଶ୍ୱାମିତ୍ର ଲଢ଼େଇ ଜାନନ୍ ଜନମ୍ ଖେତ୍ରୀ ଘରେ
ଖେତ୍ରୀ ବିଦ୍ୟା ତାକର୍ ଠାନେ କେଭେଁ ନାଇଁ ସରେ । ।।୬୫।।

ସବୁ ଦେତେ ଶିଖେଇ, ଦଏତ୍ ମାନ୍‌କୁଁ ଦେତେଦେଖେଇ
ଉତ୍‌ପାତ୍‌କୁଁ ମୂଳୁଁ ନିପାତ୍ ସେ ହିଁ ପାର୍‌ବେ ଏଖେଇ । ।।୬୬।।

ଅଯୋଧ୍ୟାକେ ଆଏଲେ ଋଷି ରାଜା କଲେ ମାଏନ୍
ଋଷି ପଚ୍‌ରାନ୍ ରାଜ୍‌ପାଟ୍ ସାଙ୍ଗେଁ ନିଜେଁ ଅଛତ ଅଏନ୍ । ।।୬୭।।

ରାମ୍ ଲକ୍ଷ୍ମଣ୍ ପଠନ୍ ଲିଖନ୍ ଭଲ୍‌କରି ତ ସାଏଲେ ନ
ସଂସାର ସାଗର ଲହଁକି ବାକେ ବାଟ୍‌ଘାଟ୍ ବି ପାଏଲେନ । ।।୬୮।।

ରାଜା କହେଲେ ଠିକ୍ କହେଲ ତୁମର୍ କଥା ସତ୍
ବାଟ୍ ନାଇଁ ପାଇ ଚାଲ୍‌ଲେଁ ଜୀବନ୍ ଯତ୍‌ଖତ୍ । ।।୬୯।।

ଋଷି କହେଲେ ରାଏଜେଁ ତମର୍ ଯଜ୍ଞ ଯାଏ ମାରା
ନାଇଁ ପାରି ହଏ କରନ୍ ଉତ୍‌ପାତ୍ ଦଏତ୍ ସାରା । ।।୭୦।।

କେଭେଁ ନାଇଁ ମାଗି ରାଜା ! ଆଜିର୍ ତୁମ୍‌କୁଁ ମାଗେଁ
ରାମ୍ ଲକ୍ଷ୍ମଣ୍ କାମ୍‌କେ ଆଏବେ ଆସନ୍ ମୋର୍ ସାଙ୍ଗେଁ । ।।୭୧।।

ତାଡ଼୍‌କା ନାଆଁର୍ ଅସୁରେନ୍‌ଟେ ତାହାର୍ ପୁଓ ଦୁଇ
ସୁବାହୁ ଆର୍ ମାରୀଚ ଦୁହେଁ ଅତ୍ୟାଚାରର୍ ଘୁଇ । ।।୭୨।।

ସେ ଅସୁରକୁଁ ସାଏତ୍ କର୍‌ବାର୍ ନୁହେ ଆମର୍ ଆଏତ୍
ରାମ୍ ଲକ୍ଷ୍ମଣ୍ ଆଏଲେଁ ଦୁଏଲ୍ ବିନୁଆଁ ହେବେ ଦଏତ୍ । ।।୭୩।।

ରାଜା କହନ୍ ମହାନ୍ ଋଷି ! ଚତୁରଙ୍ଗ ସେନା ମୋର୍
ସାଙ୍ଗେଁ ନେଇ ଯିମି ମୁଇଁ କର୍‌ମି ସମର୍ ଘୋର୍ । ।।୭୪।।

ରାମ ଲକ୍ଷ୍ମଣ୍ କାଁ କର୍‌ବେ ସହଜେଁ ଆ'ନ୍ ଛୁଆ
ଅସୁର୍ ରୂପ୍ ଦେଖ୍‌ଲେଁ ଡରେଁ ହେବେ ଅଚାବୁହା । ।।୭୫।।

ଗୁରୁ ବଶିଷ୍ କହେଲେ ରାଜା ! ରାମ୍ ଲକ୍ଷ୍ମଣ୍ ଯାଉନ୍
ଦିନ୍‌କାଲ୍ କାଏଁ କଟେଇ ନେବେ ରାଜ୍ ମହଲେଁ ଥାଉନ୍ । ।।୭୬।।

ଦେଖି ଆସୁନ୍ କା'ଣା ଅଛେ ରାଜ୍‌ମହଲ୍‌ର୍ ବାହାରେଁ
ଅସୁର୍ ମାରି ଆତମ୍-ବିଶ୍ୱାସ୍ ଆସୁ ନିଜର୍ ବାହାରେଁ । ।।୭୭।।

ରାଜା କହେଲେ ରାମ୍ ଲକ୍ଷ୍ମଣ୍ ବିନା ଜୀବନ୍ ମୋର୍
ଜୀବନ୍ ନୁହି ପାଲ୍‌ଟି ଯିବା ମହା ମରନ୍ ଘୋର୍ । ।।୭୮।।

ସାଁପର୍ ମୁଣ୍ଡୁଁମଣି ହାତୀର୍ ମୁଣ୍ଡୁଁ ମୋତି କାଢ଼ି
ନେଲା ଲେଖେଁ ହେବା ଅନ୍ଧର୍ ହାତୁଁ ତାହାର୍ ବାଡ଼ି । ।।୭୯।।

ସୂରୁଯ୍ ଗଲେଁ ପୁର୍‌ଥୀ ଯେନ୍ତା ତୁର୍‌ତି ହେସି ଅନ୍ଧାର୍
ହଜେଇ ନେଲେଁ ବାଡ଼ି ଯେନ୍ ଦଶା ହେସି ଅନ୍ଧାର୍ । ।।୮୦।।

ହେନ୍ତା ଦଶ୍‌ରଥ୍ ସାଙ୍ଗେଁ ତାହାର୍ ତିନିରାନୀ
ଅଯୋଧ୍ୟାଟା ହେବା ଯଜୋବଜୋ ଘାଁଟି ସାନି । ।।୮୧।।

ବିଶ୍ୱାମିତ୍ର କହେଲେ ରଜାର୍ ପଛେଁ ଏତେ ମମ୍‌ତା
ଅସୁନ୍ଦର୍, ସାଜେ ରଜାକେ ସବ୍ ଭୁତାନେ ସମ୍‌ତା । ।।୮୨।।

ରାମ୍ ଯଦ୍‌ବରି ଆନନ୍ଦ୍ ଧାମ୍ ସମ୍‌କର୍ ଉପ୍‌କାରୀ
ନିଜର୍ ସଜର୍ ଲାଗିଁ ନାଇଁ ରଖ ବାଁଧି କରି । ।।୮୩।।

ପାର୍‌ବାର୍ ଲୋକ୍ ନୁହେ ଗୁଟେ ଘର୍ ଗୁଟେ ଦେଶର୍
ଜଗତର୍ ସଂପଦ୍ ଆଏ, କାହାର୍ ପର୍ ତିସର୍ ? ।।୮୪।।

ଜଗତର୍ ଭଲ୍ ଲାଗି କରୁଁ ଆମେ ହୁମ୍ ଯାଗ୍
ଶାନ୍ତ କରୁଁ ପାଏନ୍ ପବନ୍ ପୁର୍ଥୀ ଆକାଶ୍ ଭାଗ୍ । ।।୮୫।।

ସେ'ଟା ଯେ ହଇନାଇଁ ଦିଏ ସେ ଆଏ ରାକ୍ଷସ୍
କେତେ ରୂପ୍ ? କେ କଲ୍‌ବା ? ବଲେଁ କେତେ ବର୍ଷସ୍ ? ।।୮୬।।

ମୋର ବିଶ୍ୱାସ୍ ରାମ୍ ଲକ୍ଷ୍ମଣ୍ ଗଲେଁ ହେବା କାମ୍
ତମର୍ ମେତାଲ୍ ଆମର୍ ଠାନ୍ ହେବା ଆନନ୍ଦ୍ ଧାମ୍ । ॥୮୭॥

ବୁଝି ଥିତେ କି ନାଇଁ ରାଜା ପୁହୁଁଚିଲେ ସେ କ୍ଷଣ୍
କେନ୍ ଆଡୁଁ ଯେ କିଏ ଜାନ୍ଏ ରାମ ସାଙ୍ଗେ ଲକ୍ଷ୍ମଣ୍ । ॥୮୮॥

ସବୁ ଶୁନି କହେଲେ ବାପା ! ନାଇଁ ଯାଉ ଈ ମଉକା
ଋଷି ଦୁଖର୍ ନଏଦ୍‌କେ ହେମୁଁ ହଁସି ହଁସି ନଉକା । ॥୮୯॥

ବ୍ରହ୍ମଜ୍ଞାନୀ ଋଷି ମୁନି ଜଗତ୍ ହିତ୍‌କାରୀ
ଆମକୁଁ ବର୍‌ଗିବାର୍ ଲାଗି ଆ'ନ୍ ଅଧିକାରୀ । ॥୯୦॥

କିଛି ନାଇଁ ଭାବ ବାପା ! ଦୁହିଭାଇ ଯିମୁଁ
ଚିଟା ଲାଗେ ରାଜ୍‌ମହଲ୍‌ଟା ହର୍ ଦମ୍ କାଏଁ ଥିମୁଁ ? ॥୯୧॥

ରାମ୍ ଲକ୍ଷ୍ମଣ୍ ରୂପ୍ ଦେଖି ଋଷି ଥିଲେ ଭୋଲ୍
କଥା ଶୁନି ମଥା ସୁଆଁଳି କରି ପକାଲେ କୋଲ୍ । ॥୯୨॥

ରାଜା ଆର୍ କାଏଁ ମନା କର୍‌ତେ ? ରାନୀ କର୍‌ତେ ନାଇଁ ?
ବିଶ୍ୱାମିତ୍ର ସାଙ୍ଗେ ଲମି ଗଲେ ଦୁହି ଭାଇ । ॥୯୩॥

ବିଶ୍ୱାମିତ୍ର କେତେ ଆନନ୍ଦ୍ ସେ ଥିବେ ନ ଜାନି
ତାହାରୁଁ ଦୁଗୁନ୍ ରାମ୍ ଲକ୍ଷ୍ମଣ୍ ସୁଖେଁ ହେଲେ ସାନି । ॥୯୪॥

ନଗର୍ ଛାଡିଁ ଆଏଲେ ଡଙ୍ଗର୍ ନଏଦ୍ ନଲିଆର୍ ବାଟ୍
ଦେଖନ୍ ହାରୀ ପାଏଲେ ଆଜିର୍ ସୁନ୍ଦର୍‌ପନର୍ ହାଟ୍ । ॥୯୫॥

ଗଛେଁ ଖୁଟେଁ ବସି ବସି ଗୀତ୍ ଗାଉଛନ୍ ଚେରେ
ନୀଲିଆ ଆକାଶ୍ ତଲେଁ ଖୁଲା ପୁର୍‌ଥୀ-ଗୀତ୍ କାଏଁ ସରେ ? ॥୯୬॥

ଫୁଲ୍ ଫୁଟେ ଫଲ୍ ପାଚେ କହତ ଧରେ କାହିଁ
ଉଷଦ୍ ସଭେ ଯାହାକେ ଯେତେ ବିରସ୍ ଭାବ୍ ନାଇଁ । ॥୯୭॥

ବାଟ୍ ଉସ୍‌ରେ, ନାଇଁ ସରେ ଦୁହି ଭାଇର୍ କଥା
ରାମ୍ ପଚାରନ୍ "ବାବା ! ସବୁର୍ କିଏ ଆଏ କର୍ତ୍ତା ?" ||୯୮||

ମୁନି କହେଲେ ଯେ କରିଛେ ସେ ଏକା ନ ଜାନ୍‌ଏ
ଉନିଆଁ କାର୍ ନାଁ ଧଏଲେଁ ତାର୍ ମନ୍ କାଏଁ ମାନ୍‌ଏ ? ||୯୯||

ଲକ୍ଷ୍ମଣ୍‌କେ ଦେଖି ଅଲ୍‌ପର୍ ହଁସି ପକାଲେ ରାମ୍
ଲକ୍ଷ୍ମଣ୍ କହନ୍ ଯେ କରିଛେ ଧଏନ୍-ଯା' ଥାଉ ନାମ୍ । ||୧୦୦||

ବାଟ୍ ଚାଲୁଁ ଦୁଇ ବଟିଆ ବାଟ୍ ଦେଖୁଁ ଠିଆଡ୍
ମୁନି କହେଲେ ଲେହେଁଟି ଦେଖି ରାମ୍ ଲକ୍ଷ୍ମଣ୍ ଆଡ୍ । ||୧୦୧||

"ଆମେ ଯେନ୍‌କେ ଯିମା ସେନ୍‌କେ ଅଛେ ଦୁଇଟା ବାଟ୍
ଗୁଟେ କେଡ୍‌ନି କିନ୍‌ରା ଆର୍‌କ ସିଧା ସଲଖ୍ ଛାଟ୍ । ||୧୦୨||

କିନ୍‌ରା ବାଟେଁ ଡର୍ ନାଇଁ ଚାଲ୍‌ବାକେ ବି ସୁଖ୍
ସଲ୍‌ଖ୍ ବାଟେଁ ବାଟ୍ ଦେଖୁଛେ ବିପଦ୍ ଆପଦ୍ ଦୁଖ୍ । ||୧୦୩||

ସଲ୍‌ଖ୍ ବାଟେଁ ଗଲେଁ ଆମ୍‌କୁଁ ସମିୟା ନେବା ଯେତ୍‌କି
ଆର ବାଟେଁ ତାର୍ ଦୁଇଗୁନ୍, ରହେବାର୍ ନାଇଁ ଅଟ୍‌କି । ||୧୦୪||

କହିସାରି ଋଷି, ରାମ୍ ଲକ୍ଷ୍ମଣ୍‌କୁଁ ତାକୁଛନ୍
ବଲ୍ ସାହସ୍ କେନ୍ତା ବଲିଁ ମନ୍ ମାନ୍‌କୁଁ ଯୁଖୁଛନ୍ । ||୧୦୫||

ରାମ୍‌କହେଲେ "ବିପଦ୍ ଡର୍ ଡ଼ରଲେଁ ତ ଡ଼ରାସନ୍
ହରାମନେ ଲଡ୍‌ଲେଁ ଅଗ୍‌ବା ଦୁର୍‌ବଲିଆ ବି ହରାସନ୍ । ||୧୦୬||

କାଏଁ ଗୁଆଁମା ସମିଆ ? ଯିମା ସିଧା ସଲଖ୍ ବାଟେଁ
ବିପଦ୍ ଆପଦ୍ କାଁ କର୍‌ବା ? ଧୁନ୍‌ଶର୍ ଥିଲେଁ ହାତେଁ । ||୧୦୭||

ଦୁବିଧା ଗଲା ମୁନି ଚାଲ୍‌ଲେ ସିଧା ବାଟ୍ ବାଆରି
ବିବେକ୍ ପଛେଁ ମନ୍ ବୁଦ୍ଧି ଦୁହେ ଯା'ନ ବାହାରି । ||୧୦୮||

ବାଲ୍ମୀକି କହନ୍ ନର୍ ଜୀବ୍ନେ ଦୁଇ ବଟିଆ ବାଟ୍
ଯେ ଜାନ୍‌ସି ଚାଲି ଖାଲି ତାହାରି ଲାଗି ଛାଟ୍ । ।।୧୦୯।।

ମଏଧନିଆଁ ସଂଧ୍ୟା ଶଉତ୍ ବେଲା ଯାଉଛେ ଗଡ଼ି
ଯିମା ଚାଲ କହେଲେ ସମ୍‌କୁଁ ନିଜେଁ ଉଠି ପଡ଼ି । ।।୧୧୦।।



# ପାଉଚ୍‌-୧୫

# ବିଶ୍ୱାମିତ୍ର ଯଜ୍ଞରକ୍ଷା-ତାଡ଼କା, ମାରୀଚ, ସୁବାହୁ ବଧ

ଦିନର୍‌ ଦିହ୍‌କେ କତ୍‌ରିଁ ଯାଉଛେ ଉତ୍‌ରି ଦିବାକର୍‌
ସୁତ୍‌ରାଇ କରି ପଛିମ୍‌ ଆକାଶ୍‌ ତଳର୍‌ ଢବାଘର୍‌ । ।।୧।।

ଖରାଂଶୁର୍‌ ପଛେଁ ପଛେଁ ଖରା ଯାଏ ଲମି
ଚରା ଛାଡ଼ି ଚରେ ଘରା ଗୁଁଡା ଆଉଛନ୍‌ ଶମି । ।।୨।।

ଭା'ଭା ହେଲେ ସଭାର୍‌ ଲୁକେ ଶୁନ୍‌ବେ ରାମେନ୍‌ କଥା
ଉଭା ଅଛନ୍‌ ମୁନି ନିଜର୍‌ ଠାନେ ନୁହନ୍‌ ଅଥା । ।।୩।।

ରାମ୍‌ ଭଜନ୍‌ ସର୍‌ଲାନ ପୂଜା ପର୍‌ସାଦ୍‌ ସାରି
ତୁନ୍‌ ତାନ୍‌ ସଭେ ରାମ୍‌ ନାମେ ହରିବୋଲ୍‌ ମାନ୍‌ ପାରି । ।।୪।।

ବାଲ୍‌ମୀକି କହନ୍‌ ବାଲ୍‌ ସଭାବେଁ ରାମ୍‌ ଲକ୍ଷ୍ମଣ୍‌ ଦୁହେ
ଚାଲନ୍‌ ପତ୍‌ରା ଉତ୍‌ରା କଥା ବାର୍ତ୍ତାର୍‌ ଧାର୍‌ ବୁହେ । ।।୫।।

ସାଜ୍‌ ସଜାର୍‌ ରାଜ୍‌ ମହଲୁଁ ଖୁଲା ଆକାଶର୍‌ ତଲ୍‌
କଥା ହୁଅନ୍‌ ଗଛ ଲତାର୍‌ ଝାର୍‌ ପତ୍‌ରା ଭଲ୍‌ । ।।୬।।

କଁଟା ଝଁଟାର୍‌ ବାଟ୍‌ ଘାଟ୍‌ କାହିଁ ଗିଜ୍‌ରେ ପଖନ୍‌
ବାଘ୍‌ ଭାଲୁ ସିଂହ୍‌ ଶାର୍ଦ୍ଦୁଲ୍‌ ଅନୁଖନୁ ଦେଖନ୍‌ । ।।୭।।

ପୁତ୍‌ଲା ଦେଖ୍‌ଲା ମେତାଲ୍‌ ଲାଗେ ନାଇଁ ଡର୍‌ ଭଏ
ଯେତ୍‌କି ଅସ୍‌କଟ୍‌ ବାଟ୍‌ ସେତ୍‌କି ଝଟ୍‌ପଟ୍‌ ଚାଲି ହଏ । ।।୮।।

ଡ଼ଙ୍ଗୋ ଡ଼ଙ୍ଗୋ ଚାଲନ୍‌ ମୁନି ମନେ ଭାବି ଭାବି
ଆନନ୍ଦ୍‌ ଘର୍‌କେ ଢୁକ୍‌ବାର୍‌କେ ପାଇଁଗଲେ ନ ଚାବି । ।।୯।।

ବାଟେଁ ଘାଟେଁ ଗଛେଁ ଖୁଟେଁ ଦେଖନ୍ ଯେତେ ପରାନୀ
ରାମ୍ ଉପରୁଁ ଫିରେଇ ନାଇଁ ପାରନ୍ କିହେ ଚାହାଁନି । ॥୧୦॥

ସବୁବେଲେଁ ହଁସି ଖୁସି ଦୁଖ୍ ନାଇଁ ଘାଏ
ସତ୍-ଚିତ୍-ଆନନ୍ଦ ମଏ ରାମ୍ ମହାପ୍ରୁ ଆଏ । ॥୧୧॥

ମନେ ଅଛେ ଅନେକ୍ ବଲ୍ ମୁହେଁ ଅଲ୍ପର୍ ହଁସି
ଦିହେଁ ଅଛେ କେତେ ବଫୁ କିଏ ପାର୍‌ବା କଷି ? ॥୧୨॥

ମୁନୁଷ୍-ସୀମା ଭିତ୍‌ରେଁ ଥାଇ କର୍‌ବା ଅସୀମ୍ କାମ୍
ସମ୍‌କୁଁ ହଁସେଇ ରସେଇ ବସେଇ ନେବା ସାକେତ୍ ଧାମ୍ । ॥୧୩॥

ଜୀବନ୍ ଯାକର୍ ଜପ୍ ତପ୍ ମୋର୍, ଆଏଜ୍ ପାଏଲା ସିଧି
ସୋଜ୍ ବୁଡେଁ ଯୋଗ୍ ସମୁଦ୍‌ରେଁ ଆଏଜ୍ ମିଲ୍‌ଲା ନିଧି । ॥୧୪॥

ଜଗତ୍‌ର ଭଲ୍ କର୍‌ବାକେ ଶକ୍ତି ଅଛେ ଅପାର୍
ଅର୍‌ଜିଲା ମୋର୍ ଯୁଦ୍ଧ୍-ଅସ୍ତର୍ ବିଦ୍ୟା ବୁଧିର ସାର୍ । ॥୧୫॥

ସଜ୍ ପାଇଛେଁ ସବୁ ଆଏଜ୍ ସଁପି, ଭାବ୍‌ନା-ହୀନ୍
ରହେମି ତାର୍ ନାଆଁ ଜପି ଜୀଇଁମି ଯେତେଦିନ୍ । ॥୧୬॥

ଯାଉନ୍ ଯାଉନ୍ ଚଲାବାଟେଁ ପରେ ସରଯୂ ନଦୀ
ମାନ୍ ସର୍‌ବରୁଁ ପାଏନ୍ ଆନି ଗଙ୍ଗାକେ ଯାଏ ନଦ୍ଧି । ॥୧୭॥

ଋଷିର୍ କହେଁ ସେ'ନ ତିନ୍‌ହି ଜନ ପର୍‌ଲେ ଗାଧି
ଗାଧି ରଜାର୍ ପୁଓ ଯେତ୍‌କି ବିଦ୍ୟା ଥିଲେ ସାଧି । ॥୧୮॥

ଶସ୍ତର୍ ସାଙ୍ଗେଁ ଲଢ଼େଇ କର୍‌ବାର୍ ବିସ୍ତର୍ ସବ୍ ସାଧନା
ରାମ୍‌କୁଁ ଦେଲେ ସଁପି ମନେ ଧରି ଇଶର୍ ଭାବ୍‌ନା । ॥୧୯॥

ବାଟ୍ କଟାଇ ଆଶ୍ରମର୍, ଆଗୋ ଚାଲନ୍ ମୁନି
ତର୍‌ତରାନୀ ଅସୁରେନ୍‌ଟେ ଆଏଲା ମୁଦ୍‌କେ ଝୁନି । ॥୨୦॥

ରାମ୍ ଲକ୍ଷ୍ମଣ୍ ନାଇଁ ଦେଖୁଁ କେବେଁ ଏନ୍ତା ନାରୀ
ଅସ୍‌କଟ୍ ହେଲେଁ କାଁ ହେବା ବର୍କସ୍ ଥିବା ଭାରୀ । ॥୨୧॥

ଋଷି କହେଲେ ରାମ୍ ! ତାଡ୍‌କା ଅସୁରେନ୍ ଇଏ ଆଏ
ବଢ଼େ ରାଏଜ୍‌କେ ନାଇଁ ଲାଗେ ଉଜଡ଼ାବାକେ ଘାଏ । ॥୨୨॥

ଯାଗ୍ ଯାକ ଭାଗଡ଼ି କରି ଭାଗ୍‌ସି ନିମିଷ୍ ଟାକେଁ
ହାଏର୍ ଗୁହେର୍ କରି ଦେଖ୍‌ଲେଁ ବି ଟିଖେ ନାଇଁ ଟାକେ । ॥୨୩॥

ଛନ୍‌କେଁ ମାର୍‌ସି କେତେ ଲୋକ୍ ଛିନା କର୍‌ସି ଗାଆଁ
ତାଡ଼ନ୍ ମାରନ୍ ଧୁରନ୍ଧରା ତାଡ଼କା ତାର୍ ନାଆଁ । ॥୨୪॥

ପହେଲେଁ ତାହାକେ ମାର କୁମାର୍ କହେଲେ ମହାଋଷି
ପରେଁ ଯାଇ ଯାଗ୍ ଯଜ୍ଞ କରି ପାର୍‌ମୁଁ ଖୁସି ॥୨୫॥

ରାମ୍ କହନ୍ ''ବାବା ! ଅସୁରେନ୍ ହେଲେଁ ବି ନାରୀ
ନାରୀ ମାର୍‌ବାର୍ ଭାରୀ ଦୋଷ୍, ଗୁରୁ ଦେଇଛନ୍ ବା'ରି ।'' ॥୨୬॥

''ଲୋକ୍ ଅମଙ୍ଗଲ୍ ଯେ'ଭି କରୁ ପୁରୁଷ୍ ହଉ କି ନାରୀ''
ଋଷି କହନ୍ ''ପାପ୍ ନୁହେ ସେ ପୁଇନ୍ ପାର୍‌ଲେଁ ମାରି । ॥୨୭॥

ମୋର କଥାନେ ମୋର୍ ଦେଲା ଶରେଁ ରାମ୍ ! ମାର
ଆଇଛେ ତ ଘୁଚି ନାଇଁ ଯାଉ ଇ ପାର ।'' ॥୨୮॥

ରାମର୍ ଶରେଁ ମରେ ଅସୁରେନ୍ ଋଷି ମହାନ୍ ଖୁସି
ରାମର୍ ନାମ୍ ମିଶେଇ ତାଡ୍‌କାର୍ ନାଁ ହୁଅନ୍ ଘୁଷି । ॥୨୯॥

ଆଶ୍ରମ୍‌କେ ପୁହୁଁଚି ଋଷି ଯଜ୍ଞ କଲେ ନୂଆଁ
ନୀଲ୍ ଆକାଶେଁ ବହଲିଆ ହଇଁ ଚହଲିଁ ଆଏଲା ଧୂଆଁ । ॥୩୦॥

ସୋର୍ ପାଇ ଘୋର୍ ଡର୍‌ଡରାନୀ ମାରୀଚ୍ ଆର୍ ସୁବାହୁ
ହୁମ୍ କୁଁଡ଼େଯାଇ ପକାଲେ ହାଡ୍ ମାଉଁସ୍ ମେଦ୍ ଲହୁ । ॥୩୧॥

ସୁବାହୁ ଅସୁର୍ ରାମର୍ ଶରେଁ ହୁହୁ ଗଲା ପୁଡି
ବିନ୍ ଫଲକର୍ ଶରେଁ ମାରୀଚ୍ କାହିଁ କାହିଁ ଗଲା ଉଡ଼ି । ॥୩୨॥

ଉଶ୍ୱାସ୍ ହେଲେ ବିଶ୍ୱାମିତ୍ର ବିଶ୍ୱାସ୍ ବଢ଼େ ରାମ୍‌ନେ
ଋଷି ରହେଲେ ସୁସ୍ତିର୍ ନିଶ୍ୱାସ୍ ମାରି ଆରାମ୍‌ନେ । ॥୩୩॥

ହୁମ୍ କୁଁଡ୍‌କେ ଟିକେ ଛାଡି ଛଏରା ତଲେଁ ବସି
ରାମ୍ ଲକ୍ଷ୍ମଣ୍ କଥା ହୁଅନ୍ ଦୁହିକର୍ ମୁହେଁ ହସି । ॥୩୪॥

ଲକ୍ଷ୍ମଣ୍ କହନ୍ ବୁଝି ହେବାର୍ ନାଇଁ ଗୁଟେ ବିଷ୍ଏ
ଋଷିକର୍ ଅଛେ ସବୁ ଶକ୍ତି ନାଇଁ ନ ତ ଶଁସ୍ଏ । ॥୩୫॥

ତପେଁ ବ୍ରହ୍ମ ଶକ୍ତି ବଏସ୍‌ରା ବଲେଁ ଖେଦ୍‌ରୀର୍
ଅସ୍ତର୍ ଶସ୍ତର୍ ଅଭାବ୍ ନାଇଁ ଅଛେ ତାକର୍ ଯୁକ୍ତିରିର୍ । ॥୩୬॥

କାଁକରି ଆନ୍‌ଲେ ଆମ୍‌କୁଁ ଅଯୋଧିଆନୁ ବା'ରି
ଅସୁର୍ ମାନ୍‌କୁଁ ସହଜେଁ ସେ ତ ପାରିଥିତେ ମାରି । ॥୩୭॥

ତାକର୍ ନିର୍ଦ୍ଦେଶ୍ ସାଙ୍ଗେଁ ଥିଲା ତାକର୍ ଦେଲା ଶର୍
ତାକର୍ କହେଁ ଅସୁର୍ ମଲେ ନାମ୍ ଖାଲି ଆମର୍ । ॥୩୮॥

ଋଷି ଆମର୍ କାଯେଁ ଅହରହ ଗହଗହ
ସବୁ ଦିନିଆଁ ପୂଜା ପାଠ୍‌କେ ଆଗ୍ରହ ନାଇଁ ଜହ । ॥୩୯॥

ହାବ୍ ଭାବ୍‌ନୁ ଜନାସି ତୁମେ ନାରେନ୍ ତାକର୍ ଲେଖେଁ
ନାଇଁ ମାନ୍‌ଲେଁ କିଏ କେନ ରହେବା ତାକର୍ ଦେଖେଁ । ॥୪୦॥

ରାମ୍ କହେଲେ ଲକ୍ଷ୍ମଣ୍ ବୋ ! ପ୍ରାନୀ ମାତ୍ରେଁ ନାରେନ୍ ଆନ୍
ସେ ଆଏ ବାବୁ ! ନିର୍ବୁଁଧିଆ ଯେ ଭାବ୍‌ସି ଇଥୁଁ ଆନ୍ । ॥୪୧॥

ନିଜ୍ ଭିତରର୍ ନାରେନ୍ କେ ଯେ ଗହେରେଁ ରଖେ ତାପି
ସୋଜ୍ ଜୀବନ୍‌ଟେ ଲେଖେଁ ଲାଗେ ଦେଲା ମେତାଲ୍ ଯାପି । ॥୪୨॥

ନିଜ୍‌କେ ଭାବେ ନାରେନ୍ ଯେ ନାରେନ୍ ମିତାନ୍ କାମ୍
କରିପାରେ ନାରେନ୍ ସେ ଲକ୍ଷ୍ମଣ୍ ହଉ କି ରାମ୍ । ॥୪୩॥

ଅଂସୁର୍ ମାର୍‌ବାର୍ କଥା କହୁ, ପାରିଥିତେ ସେ ନାଶି
ତପର୍ ବଲେଁ ମାଏଲେଁ ଖପ୍‌ତା ତାକର୍ ତପ୍ ରାଶି । ॥୪୪॥

ତପ୍ ସାଧନା ନୁହେ କେଭେଁ କାହାକେ ମାର୍‌ବାର୍‌ଲାଗି
ଭଲ୍ କମାନି ଖଲ୍ କବାରେଁ ଲଗାଏ, ଯେ ଅଭାଗୀ । ॥୪୫॥

କ୍ଷେତ୍ରୀର୍ ବଲ୍ ଅଛେ ପର୍‌ବଲ୍, ଥାଇ ଅଶେଷ ଅସ୍ତର
ଅସୁର୍ ନାଇଁ ମାର୍‌ଲେ ଋଷି ଭାବ୍‌ନା ରଖି ବିସ୍ତର୍ । ॥୪୬॥

କ୍ଷେତ୍ରୀର୍ ତେଜ୍ ଥାଇ ବି ଯୋଜ୍ ହଇଥିଲେ ଯୁଗୀ ?
ଥରେ ଡେଗ୍‌ଲେ ବରନ୍ ଧରମ୍ ପରେଁ ରହେଲେ ଲୁଗି । ॥୪୭॥

ବଡ଼ ଲ ସଂସାର୍ ଅଛନ୍ ଅସୁର୍ ବଢ଼େ ବଢ଼େ
ଯୋଜ୍ ଲୋକ୍ ରୋଜ୍ ଡରନ୍ ସାମ୍‌ନେ ଯଦ୍‌ରି ପଡ଼େ । ॥୪୮॥

ହଏରାନ୍ ହଇଁ କହନ୍ ନାରେନ୍ ଆସି ତାହାକୁଁ ମାରୁ
ନିଜର୍ ନାରେନ୍ ନାଇଁ ଚେତାତେ ? ଜିତୁ ଭାଏଲ୍ ହାରୁ । ॥୪୯॥

ଜିତି ପାର୍‌ଲେଁ ନଥି ନେସନ୍ ନିଜର୍ ନାମେ ଥୁଇ
ହାର୍‌ଲେଁ କହନ୍ ଈଶ୍ୱର୍ ଇଚ୍ଛା, କାଁ କର୍‌ମି ମୁଇଁ ? ॥୫୦॥

ସେ ଭୁଲ୍ ନାଇଁ ହେବା ମୂଲ୍ ହଉଛେ ଜୀବନ୍ ବାଟ୍
ଜାନି ଆନିଥିବେ ମୁନି ଶିଖାବେ ହାତ୍‌କେ ହାତ୍ । ॥୫୧॥

ଖୁସି ମନେ ଆସି ଋଷି କହେଲେ ହସିଁ ହସିଁ
ଅସୁର୍ ଡରର୍ ଆତୁର୍ ଭାବ୍ ମନେ ନାଇଁନ ପଶି । ॥୫୨॥

କହେଲେ ତମର୍ ଧରମୁଁ ସର୍‌ଲା ଅସୁର୍ ଧର୍‌ଷଣ୍
ବନ୍‌ଏ ଅଛେ ତ ଦିହ୍‌ପା' ମନ୍‌ମାନେ ପର୍‌ସନ୍ । ॥୫୩॥

ଲକ୍ଷ୍ମଣ ଆନି କୁଶର୍ ପଟି ପକେଇନେଲେ ତୁରିତି
ନିପାତ୍ ଯାଇଛେ ଅସୁର୍ ବିପ୍ରାତ୍ ରଷିମନ୍ ଫୁର୍ତି । ॥୫୪॥

କହେଲେ ଚାରି ଆଡେ଼ ଜାରି ବିଦେହ୍ ଦେଶର୍ ରଜା
ଆଡମ୍ବରେ଼ କରନ୍ ଝିଅର୍ ସ୍ୱୟଂବର୍ ସଜା । ॥୫୫॥

ମତେ ବି ତ ନିଉତି ଥିଲେ ରାଜ୍ ପୁରୋହିତ୍ ହାତେ଼
ସେନ୍‌କେ ଗଲେ଼ ବନ୍‌ଏ ହେତା ଯାଏତାଁ ସେ ବାଟେ଼ । ॥୫୬॥

କୁମାର୍‌ମାନେ ଉଷତ୍ ମାରେ଼ ମୁନିକୁଁ କରି ଯୁହାର୍
କେତେବେଲେ଼ ଯିମା ବାବା ! ବଲିଁ ହେଲେ ତିଆର । ॥୫୭॥

ମୁନି କହନ୍ ଯିମା ଉଠି ପହଟିଆ ତରା ଉଦାନୁ
ଗଛ୍ ପତର୍ ଉଠିଥିବେନ କାକ୍‌ର୍ ଭିଜା ଉଦାନୁ । ॥୫୮॥

ସଉମିତ୍ରୀ କହେଲେ କହ ବିଦେହ ଦେଶର୍ ବିଷ୍‌ଏ
ସେନ୍‌କେ ଯିବାର୍ ଆଗୁଁ ଯାଉ ମନର୍ ସବୁ ସଂଶ୍‌ଏ । ॥୫୯॥

ରାଜା କିଏ ଆ'ନ୍ କା'ଣା ତାକର୍ ଗତି ରୀତି
ସ୍ୱୟଂବର୍ ହେବା ସେଥିର୍ କା'ଣା ନିଅମ୍ ନୀତି । ॥୬୦॥

ସେ ସଭାକେ ରଷି ମୁନିକୁଁ କେନ୍ତା ଅଛନ୍ ନିଉତି
ଯାଗ୍ ଯଜ୍ଞ ହେବାର୍ କବାର୍ ଅଛନ୍ ଭାଏଲ୍ ବେଉଁତି । ॥୬୧॥

ପଚ୍‌ରାବାର୍ ପୂର୍ବୁଁ ବାବୁ ! ମୋର୍ କହେବାର୍ ଉଚିତ୍
ମିଥିଲା ରଜାର୍ କଥା କହୁଛେ଼ ଶୁନ୍‌ଅ ଅଛନ୍ କ୍ୱଚିତ୍ । ॥୬୨॥

ପୁରାନ୍ କହେ ପୂର୍ବେଁ ଥିଲେ ପାର୍‌ବାର୍ ରଜା ନିମି
ଗିଆନ୍ ସୁଜନ୍ ମହାନ୍ ଆତମ୍-ଜ୍ଞାନ୍-ସାଗ୍‌ରେ଼ ତିମି । ॥୬୩॥

ସେ ବଅଁଶେ଼ ଜନ୍‌ମି ଜନକ୍, ରାଜା ହଇ ବି ରଷି
ଗିଆନ୍-ରାଏଜେ଼ ଗିଆନ୍, ଅଛେ ଧନ୍ ପଉରୁଷି । ॥୬୪॥

ମହାନ୍ ଆତ୍ମା ଜନକ୍ ଆତ୍ମ-ବିଦ୍ୟା ଅଛନ୍ ଜାନି
ଦେହ୍ ଥାଇ ବି ଦେହାତୀତ୍ ଦେହୁଁ ନିଜ୍‌କେ ଛାନି ।  ॥୬୫॥

ରଖାନ୍, ବିଦେ୍‌ହ, ରଜା ବିଦେହ୍ ଆଏ ତାକର୍ ଦେଶ୍
ବଇଦେହୀ ଝି ସୁନ୍ଦରପନ୍‌ର୍ ସେନେ ଶେଷ୍ ।  ॥୬୬॥

ଦେହ୍ ଥାଇ ବି ବଇଦେହୀ ଡାକ୍ ପଡୁଛେ ନାମ୍
ନୁହେ ଜନ୍ମନ୍ କିହେ ତାକର୍ କହେବେ ଗୁନ୍ ଗ୍ରାମ୍ ।  ॥୬୭॥

ସୁନାର୍ ନଙ୍ଗଲେଁ ଜନକ୍ ଯୁତୁଥିଲେ ଯଜ୍ଞ ଜମି
ନଙ୍ଗଲ୍ ଗାରେଁ ଲାଲ୍‌ଗଲ୍‌ଗଲ୍ ଛୁଆ ଆଏଲା ଜନ୍‌ମି ।  ॥୬୮॥

ଜାନ୍‌କୀ ନାମେ ଡାକ୍‌ଲେଁ କିଏ ଡାକ୍‌ସି ଭୂମିସୁତା
ସରଗ୍ ମରତ୍ ଯୁର୍‌ବାର୍‌କେ ସତେଁ ଆଏ ସେ ସୂତା ।  ॥୬୯॥

ବାପ୍ ଅଜା ପନ୍‌ଅଜା ଦିନୁ ଜନକ୍ ରଜା ଘରେଁ
ଶିବ୍ ଦେଲା ଧନୁ ଅଛେ ପାଇ ପୂଜା ଆଦ୍‌ରେଁ ।  ॥୭୦॥

ଧନୁର୍ କଥା କହି ନୁହେ ଆଶ୍ରିଯ୍ ଅନା ଧୁନ୍
ଦଏଖ୍ ଯଜ୍ଞ ଖତମ୍ କଲେ ଶିବ୍ ଧରି ଇ ଧୁନ୍ ।  ॥୭୧॥

ସେ ଧୁନ୍‌କେ ଧରି କହେଲେ ଦେବ୍‌ତା କର୍‌ମି ଶେଷ୍
ଯଜ୍ଞେ କେନ୍ତା ନାଇଁ ରଖ୍‌ଲେ ମୋର୍ ଭାଗ୍‌କେ ଲେଶ୍ ।  ॥୭୨॥

ଦେବ୍‌ତାମାନେ ଗୁଲ୍ ଗୁଲା ହଇଁ ମାଗିନେଲେ କ୍ଷେମା
ଧୁନ୍‌କେ ଆଉର୍ ନାଇଁ ଧରୁଁ, ରଷିଜିମାନେ ଦେମା ।  ॥୭୩॥

ସେ ଧୁନ୍‌କେ ସଁପିନେଲେ ଭଲ୍ ରଖ୍‌ବାର୍ ଆଶେଁ
ରଷିମାନେ, ନିମିବଂଶୀ ଦେବରାଜ୍ ରଜା ପାଶେଁ ।  ॥୭୪॥

ସେ ଦିନୁ ଅଛେ ଧୁନ୍‌ଟା ନିମି ବଅଁଶର୍ ହେଇ
ଜନକ୍ ରଖାନ୍ ଦେବ୍‌ତା ମିତାନ୍ ପୂଜା ଉପ୍‌ଚାର୍ ଦେଇ ।  ॥୭୫॥

କହିଁ ଯାଇଛନ୍ ରଷି ଯେନ୍ତା ସୀତା ଅଲୋକିତ୍
ଶିବ୍ ଧନୁର୍ କଥା ସେନ୍ତା ଆଏ ଆଚମ୍ବିତ୍ । ॥୭୬॥

ନାଇଁ ଦେବ ନ ଛନ୍ଦି ଯାହାର୍ ତାହାର୍ ହାତେଁ ସୀତା
ଧୁନ୍‌ଥିଁଗୁନ୍ ଚଢ଼ାଇ ନେବା ଯେଆଏ ଜଗ୍‌ଜିତା । ॥୭୭॥

କେଡେ ବଡ୍ ସେ ଧୁନ୍ କେତେ ମହାନ୍ ତାର୍ ମହେମା
ନୁହେ ପୁହୁଁଚୁଁ ଏତେ ଦୂରୁଁ କେତେ କରି କହେମା । ॥୭୮॥

ଶିବ୍‌ଧୁନ୍‌ଟା ରଖା ହଇଛେ ସିନ୍ଦୁକ୍‌ଟାକର୍ ଭିତ୍‌ରେଁ
ତିନ୍ ହଜାର୍ ଲୋକ୍‌ନାଇଁ ହେଲେଁ ଟଲେ ନାଇଁ ସୁତ୍‌ରେଁ । ॥୭୯॥

ଉପ୍‌ଲଖେଁ ତାର୍ ଯଜ୍ଞ ହେବା ପୂଜା ଉପଚାର୍ ସହିତ୍
ରଷି ମୁନି ସେଥିର୍‌କାଯେଁ ନିଉତନ୍ ପୁରୋହିତ୍ । ॥୮୦॥

ଜମ୍ବୁଦୀପେଁ ଯେତେ ଅଛନ୍ ରଜା ମହାରାଜ୍ କରି
ସବ୍ ଆସ୍‌ବେ ଠାଠେଁ ବାଟେଁ ସଏନ୍ ସାମଁତ୍ ଧରି । ॥୮୧॥

ଥିବେ କେତେ ଯୁଗୀ ରଷି ଆଉର୍ ମହାମୁନି
କେତେ ଥିବେ ଦେଖନ୍‌ହାରୀ ନାଇଁଥିବା କେ ଶୁନି । ॥୮୨॥

ବେଶୀ ଦିନ୍ ତ ନାଏଁନ ଆଉର୍ ତୁରୁତ୍ ଗଲେଁ ଯାଇ
ଆଶ୍ରମୁ ବି ଯିବେ କେତେ ଯିମା ସାଙ୍ଗ୍ ହଇ । ॥୮୩॥

ଦିନ୍‌ଏ ଅଧେ ହାତେଁ ଥାଉ ବାଟ୍ ଘାଟର୍ କଥା
ଥିସି, ଯିମା ଥାକି ଫୁଟି ନାଇଁଲାଗ୍‌ବା ଅଥା । ॥୮୪॥

ଏତ୍‌କି କହି ବିଶ୍ୱାମିତ୍ର ରାମ୍ ଲକ୍ଷ୍ମଣ୍ ନେଇ
ନିଦକ୍ ଭାବେଁ ନିଦ୍-ନଏଦ୍‌ନେ ନିଜ୍‌କେ ଦେଲେ ଝଁପେଇ । ॥୮୫॥

ବାଲ୍‌ମୀକି କହନ୍ ବେଲ୍‌ବୁଡି ସଂଧିଆ ସମିଆ ହେଲା
ସଭା ସଲା ଚାଲ ପର୍‌ସଙ୍ଗ୍ କାଏଲ୍ ସକାଲ୍‌କେ ରହେଲା । ॥୮୬॥



# ପାଉଚ୍-୧୬

## ଅହଲ୍ୟା ଉଦ୍ଧାର, ଗଙ୍ଗାପାରି, ଧୀବର

ତର୍‌ତରାନୁ ବେଲ୍ ଉଦୁଛେ ଆଶ୍ରମ୍ ତରାତରା
ତଅଁରି ଆସେ ଡଙ୍ଗର୍ ଶିଘ୍ରୁ ଗଛ୍ ଅଗିକେ ଖରା । ।।୧।।

ବାଲ୍‌ମୀକି କହନ୍ ଚାଲନ୍ ରାମ୍ ଲକ୍ଷ୍ମଣ୍ ଦୁହି ଭାଇ
ବିଶ୍ୱାମିତ୍ର ପଛେଁ ଗଛର୍ ସାଙ୍ଗେ ଯେନ୍ତା ଛାଇ । ।।୨।।

ପହଟିଆ ଉଦା ବେଲୁଁ ବାହାରି ହେଲା ବେଲ୍ ଉଦା
ଏକସ୍କଟ୍ ଚାଲନ୍ ଦୁହି ଭାଇ ମୁନି ହୁଦା । ।।୩।।

ଅଂଧାର୍ ଝୁମ୍‌ରା ଭାଙ୍ଗି ଆଉଛେ ପୁର୍ଥୀ ଉଠେ ଚେତି
ପାହାଁତି ପବନ ହାତେଁ ପତର୍-ଆଏଁଖ୍ ରେଁତି ରେଁତି । ।।୪।।

ମୁହୁଁ ଧୁଏ କାକର ବୁନ୍ଦା, ପରେ ଥିପିଁ ଥିପିଁ
ଖରା ଝଲ୍‌କି ଛରା ଦିଏ ଠାନ୍ ଠାନ୍ ଦିଏ ଲିପି । ।।୫।।

ପର୍‌ଭାତୀ ପଢ଼େ ଚରେଇ ମୁହେଁ ଝାର୍‌ପତ୍ରା ଭରେ
ମର୍ମ୍ମର୍ ସୁରେଁ ପତର୍ ସତେଁ ଗୀତର୍ ପାଲିଆ ଧରେ । ।।୬।।

ପୁହୁଁଚି ଆଏଲେ ଠାନ୍‌ଟାକେଁ ଝାର୍ ଲାଗିଛେ ଘଞ୍
ଜୀବନ୍ ନାଏନ କାହିଁ ଲାଗେ ନିର୍ଜନ୍ ପର୍‌ପଞ୍ଚ୍ । ।।୭।।

ଚେରେ ଚିର୍ଗୁନର୍ ନାଁ ନାଏଁନ ଜଁତ୍ ଜାନୁଆର୍ କିଛି
ଶୁଖା ପନ୍‌ଟେ ଭିତ୍‌ରେଁ ବାହାରେଁ ହଇଯାଇଛେ ବିଛି । ।।୮।।

ଦିନ୍‌ଏ କେନ୍ ଋଷିର୍ ଆଶ୍ରମ୍ ଇନେ ଥିଲା କାଏଁ
କିହେ କାହିଁ ନାଇଁ ସବୁଆଡ଼େଁ କରେ ଝାଏଁ । ।।୯।।

ରାମ୍ ଦେଖନ୍ ଆଶ୍ରମ୍‌ଟାକର ଅଛେ ଚିହ୍ନା ବନା
କନ୍ ପରାନୀ ନାଇଁ ଦେଖ୍ ମନ୍ ଚନାବନା । ॥୧୦॥

ଚାଲ୍‌ଲା ବାଟେଁ ହୁମ୍‌ଡେଇ ହେଲା ପଥର୍‌ଟାକେ ପାହା
ଝାଗିଁ ହେଲା ନାରୀ ଜନ୍‌ଏ କେଡେ ଅଏନ୍ ଆହା । ॥୧୧॥

ବିଷ୍ଣୁ ବିଷ୍ଣୁ ବଲିଁ ରାମ୍ ନାରୀକେ କରୁନ୍ ଯୁହାର
ରାମର୍ ପାହେଁ ପରି ନାରୀ କହେଲା ବାର୍‌ବାର୍ । ॥୧୨॥

ତମେ ମହାପ୍ରୁ ପର୍‌ମାତ୍‌ମା ଆନନ୍ଦ୍ ଭକ୍ତୁ ଠାନ୍
ସଥର୍ ପଥର୍ ଦିହେଁ ଆଏଜ୍ ପର୍‌ଷିନେଲ ପ୍ରାନ୍ । ॥୧୩॥

ରାମ୍‌କୁଁ ଦେଖନ୍ ସଭେ ରାମ୍ ମୁନି ମୁହୁଁକେ ଦେଖନ୍
କେନ୍‌ନୁ ଆଏଲା ନାରୀ କେନ୍‌କେ ଗଲା ଥିଲା ପଖନ୍ । ॥୧୪॥

ସାଙ୍ଗର୍ ଋଷି ଦେଖାଦେଖ୍ ହଇଁ ହେଲେ ଠିଆତ୍
କିଏ ଦେଖେ ରାମ୍ ଆଡେଁ ତ କିଏ ଇଆଡ୍ ସିଆଡ୍ । ॥୧୫॥

ନାରୀ ଯାହାକେ ମନ୍ ଭିତ୍‌ରେଁ ରହିଥିଲା ଧାଇ
ନିଜର୍ ଭିତ୍‌ରେଁ ନିଜେଁ ହଜ୍‌ଲା ଆଖିର୍ ଆଗେଁ ପାଇ । ॥୧୬॥

ବିଶ୍ୱାମିତ୍ର ଠାଡେଁ ଠାଡ୍ ଧିଆନେ ଥିଲେ ପଶି
ଆଖୁଁ ଉହ୍‌ଲେ ଲହ କେନ୍ ରସେଁଥିଲା ରସି । ॥୧୭॥

କେତେ ଯୁଡି ଆଏଁଖ୍ ଋଷିକୁଁ ଦେଖନ୍ ଭକ୍ ଭକ୍
ଯାହା ଆଏ ତାହା କହେବେ ଦିଶେ ଦକ୍ ଦକ୍ । ॥୧୮॥

ଗୋଲ୍ ହଇକରି ଛାଏରାତଲେଁ ବିଭୋର ମନେ ବସି
ଛିନ୍‌ବେ ବଲିଁ କାନ୍ ପାରିଛନ୍ ଋଷି ଦେଲେଁ ପର୍‌ଷି । ॥୧୯॥

କଉଶିକ୍ କହନ୍ ଗଉତମ୍ ଉତ୍ତମ୍ ମୁନି ଜନ୍‌ଏ
ସବ୍ ଶାସ୍ତ୍ରରେଁ ପାରଙ୍ଗମ୍ ଦର୍ଶନ୍-ଜ୍ଞାନ ବନ୍‌ଏ । ॥୨୦॥

ମନ୍ ତନ୍ ଦେଇ, ବିହି ନାରୀ ମୂରତିଟେ ଗଢ଼ଲା
ନିର୍ଦ୍ଦୋଷ୍ ନିଷ୍ପାପ୍ ବଲିଁ ଅହଲ୍ୟା ନାଁ ବଢ଼ଲା ।    ॥୨୧॥

'ଗୋ' ବଏଲେଁ ଇନ୍ଦ୍ରିୟକୁଁ ରଖିଥିଲେ ଆଏତେଁ
ସେ ଗଉତମ୍ ହାତେଁ ଦେଲେ ରହେବା ଶୁଭେଁ ସାଏତେଁ ।    ॥୨୨॥

ଇନ୍ଦ୍ର ଇନ୍ଦ୍ରିୟ୍ କର୍ ହାତୁଁ ନାଇଁ ପାରି ଉବ୍‌ରି
ଦେହ୍ ଭୋକର୍ ଦାଉନୁନାଇଁ ପାରୁଥାଇଁ ସଁଭ୍‌ରି ।    ॥୨୩॥

ଅହେଲା-ରୂପର୍ ନଦୀର୍ ଧାରେଁ ଉହୁଲେ ତାର୍ ମନ୍
ସୋଜ୍ ସୋଜ୍ ତାର୍ ଶୋବ୍ ସମଝ୍ ହଉଥାଏ ରନ୍‌ଭନ୍ ।    ॥୨୪॥

ସଜ୍ ନୁରେ ସେ ରୂପର୍ ପାନି ପକାତା ଗୁଟେ ବୁଡ଼୍
ହରୁହର୍‌ଦମ୍ ହୁର୍‌ଗୁନି ହଇଁ ବିଗ୍‌ଡୁଥିଲା ମୁଡ଼୍ ।    ॥୨୫॥

ଖୁସି ହେଲା ଦେଖି ଦିନ୍‌ଏ ରଷି ନାଏଁନ ଘରେଁ
ଗଉତମ୍ ବେଶେଁ ଅହେଲା ପାଶେଁ ହାଜର୍ ହର୍‌ବରେଁ ।    ॥୨୬॥

ଦେହର୍ ଭୋକ୍ ମେଟେଇ ଫିରୁଥିଲା ଚୋରର୍ ଲେଖେଁ
ପର୍‌ଲା ରଷିର୍ ଆଖେଁ ଥରିଗଲା ତାକର୍ ଦେଖେଁ ।    ॥୨୭॥

ରଷି କହେଲେ ଚୋର୍ ବାଗିର୍ ମୋର୍ ବେଶେଁ ଆସି
ନିର୍ଲଜ୍ ଭାବେଁ ସରଗ୍ ପୁରର୍ ମହତ୍ ଦେଲୁ ନାଶି ।    ॥୨୮॥

ଯୋନି ଲଲ୍‌ହିଆ ଏତେ ? ହଇ ସରଗ୍ ରାଏଜ୍ ରଜା
ହଜାର୍ ଯୋନିର୍ ବଜାର୍ ତୋର୍ ଦିହେଁ ରହୁ ସଜା ।    ॥୨୯॥

ଅହେଲାକେ କହେଲେ ତୁଇ ନୁରୁଥିଲୁ ଉଖି
ଅମର୍ ପତିକେ ନିଜର୍ ପତି କଲୁ ନିଲଜ୍ ମୁଖୀ ।    ॥୩୦॥

ଦିହ୍ ପାଏଲୁ କେଡ଼େ ଅଏନ୍ ମନ୍‌ଟା ଅପର୍‌ଛନ୍
ଛନ୍‌କର୍ ସୁଖ୍ ଲାଗି କଲୁ ଜୀବନ୍ ରନ୍‌ଭନ୍ ।    ॥୩୧॥

ଦିହର୍ ଆନନ୍ଦ୍ ପୁଆଲ୍ ଜୁଏ ନାଇଁ ଥାଏ ବି ଥାଇଁ
ଆନନ୍ଦ୍ ଆଶେଁ ଆତ୍‌ମା କେ ଠକେ ଭୁର୍‌ଥାଇଁ । ॥୩୨॥

ଆଶ୍ରମ୍ ଆଗର୍ ପଥର୍ ଉପ୍‌ରେଁ କାଲ୍‌କାଲ୍ ବସିକରି
ଦିହ୍‌କେ ମାରି ରହ ଶାଶ୍ୱତ୍ ଆନନ୍ଦ୍ ଅନୁସରି । ॥୩୩॥

ସେ ଆନନ୍ଦ୍ ନେବା, ମୂରତି ପର୍‌ମାନନ୍ଦ୍ ରାମ୍
ତାହାଙ୍କୁଁ ଛିଇଁ ସମାନ୍ ହେବା ଅନ୍‌ଭବ୍ ଅନ୍‌ମାନ୍ । ॥୩୪॥

ସେ କଥା ତ ହେଲା ଇଛନି ଦେଖ୍‌ଲାଁ ପର୍‌ତଖ୍
କହେଲିଁ ତାହା ଯାହା ହଇଥିଲା ଅବ୍‌ତକ୍ । ॥୩୫॥

ରାମ୍ ହେଲେ ଲାଜେଁ ଲାଜେଁ ବାକୀ ହେଲେ ହରଷ୍
ଅହେଲା ତ ବୁଡ଼ି ଯାଇଛନ୍ ପାଇ ଆନନ୍ଦ୍ ରସ୍ । ॥୩୬॥

କା'ଣା କହନ୍ କା'ଣା ନାଇଁ ଆଖୁଁ ବୁହେ ଲହ
ରାମ୍ ଘାଏ ସୁଆଁଲି ଆନ୍‌ଲେଁ ହେଁକାନ୍ ଜହଜହ । ॥୩୭॥

କହେଲେ ଋଷି ଅହେଲା ମା ! ବାହାରିଛୁଁ ମିଥିଲା
ଶୁଭେଁ ସାଏତେଁ ପାଏଲ ଯାହା କର୍‌ମେ ତମର୍ ଥିଲା । ॥୩୮॥

ଅହେଲା କହନ୍ ପତିମୋର ସାଧୁ ସୁଜନ୍ ଆନ୍
ତାକର୍ କହେଲା କଥା କେହେନି ମିତ୍‌ରେଁ ନୁହେ ଆନ୍ । ॥୩୯॥

ଜନମ୍ ଜନମ୍ ହେନ୍ତା ଶାପ୍ ମିଲୁଥାଉ ନ ମତେ
ହେ ରାମ୍ ! ମୁଇଁ ସବୁ ଜନ୍‌ମେ ଦେଖୁ ଥାଏସିଁ ତତେ । ॥୪୦॥

ଋଷି କହେଲେ ପରମ୍ ପତିକେ ନିଜର୍ ପତି ଭାବି
ରହ ମା ଅହେଲା ସେଟା ଆନନ୍ଦ୍ ଘରର୍ ଚାବି । ॥୪୧॥

ଆଶ୍ରମକେ ଗଲେ ଅହେଲା ମିଥିଲା ବାକୀ ଲୁକେ
ପଛକେ ଦେଖ୍‌ଲେ ଜୁନ୍‌ହାଁ ଆଶ୍ରମ୍ ଗଛ ଉଡାଲେଁ ଲୁକେ । ॥୪୨॥

ବାଟ୍ ଚାଲୁଛନ୍ ମୁନ ମର୍ଲୀ ସଭେ ଆନନ୍ଦ୍ ମନ୍
ଯାହାକେ ଦେଖ୍‌ଲେଁ ଆନନ୍ଦ୍ ରସେଁ ଅଛନ୍ ଛନ୍‌ଛନ୍ । ॥୪୩॥

ଚାଲି ଚାଲି ସଭେ ଦେଖନ୍ ରାମ୍ ଆଡେଁ ଲେନ୍‌ହେଁଟି
ଆଏଁଖ୍‌ମାନ୍‌କର ହାତ୍ ଥିଲେଁ ନଉଥିତେ କାଏଁ ସାଏଁଟି । ॥୪୪॥

ଜିଭ୍ ଥିଲେଁ ଚାଟି ଚାଟି ସାରିନେତେ ନ ଭାଏଲ୍
ହେଁଥିର୍ କାଯେଁ ଦଏବୀ ଆଖିଁ ଜିଭ ନୁହେ ଦିଏ ଟାଏଲ୍ । ॥୪୫॥

ରାମ୍ ଲକ୍ଷ୍ମଣ୍ ବାଟ୍ ଚାଲି ଦିହ୍ ଯାଉଛେ ଗହଦି
କାଁ କର୍‌ବେ ରଜାପିଲା ବାଟ୍ ଚଲା ନାଇଁ ପହଦି । ॥୪୬॥

ନାଇଁ ଥିପିଁ, ମୁହେଁ ଉପ୍‌କେ ଗହନ୍ଦ୍ ଥିପେ ଥିପେ
ସୁରୁସୁରୁ ପର୍ଶୁ ପଥର୍ ପହୁଁଫୁଲେଁ କେ ଲିପେ । ॥୪୭॥

ସୁନ୍ଦର୍ ବିଶେ ଆହୁରି ସୁନ୍ଦର୍ ଯେ ଜାନ୍‌ସି ଦେଖି
ଆଁଖିର୍ ହାତେଁ କଲମ୍ ଥିଲେଁ ପାର୍‌ତା ସିନେ ଲେଖି । ॥୪୮॥

ରାମ୍ ଚାଲିଛନ୍ ସୁନ୍ଦର୍ ପନର୍ ବୁହିଲା ଗଙ୍ଗା ଧରି
ରାମ୍‌କେ ଧର୍‌ବା ବଲିଁ ସତର୍ ଗଙ୍ଗା ପୁହୁଁଚେ ଝରି । ॥୪୯॥

ସଏଦ୍ ଗଙ୍ଗା ନଏଦ୍ ଦେଖିଁ କହେଲେ ସମ୍‌କୁଁ ଋଷି
ଥାକିଁ ଝାଲ୍‌ମାର ଘାଏ ଛଏରା ତଲେଁ ଖୁସି । ॥୫୦॥

ଗାଧି ପାଧି ସଂଧିଆ ଶଉଚ୍ ଇହାଦେ ଇନେ ସାର୍‌ମା
ଡଙ୍ଗା ଧରି ଗଙ୍ଗା ଲହଁକି ମିଥିଲା ବାଟ୍ ଧରମା । ॥୫୧॥

ଭଙ୍ଗ୍ ଭଙ୍ଗାନୁ ଗଙ୍ଗା ଆସେ ଲହରୀ-ଅଙ୍ଗା ପେସ୍‌ରେଇ
ରାମ୍‌କେ ଧରି ଜୀବନ୍ ଭରି ଆଶ୍‌ଟେ ଦେବା ଉସ୍‌ରେଇ । ॥୫୨॥

ଆନନ୍ଦମଏର୍ ଆନନ୍ଦ୍ ରସ୍ ବର୍‌ହ୍ମାର୍ ଗଡୁ ଭିତରୁଁ
ତାକର୍ ନଖର୍ କନୁ ବାହାରେ ଯୁଗ୍ ଯୁଗର୍ ଉଦ୍‌ରୁଁ । ॥୫୩॥

ଆଏଜ୍ ପାଇଛେ ସଙ୍ଗେ ଘାଏ କାହିଁ ଛାଡ଼୍‌ବା ସୁଯୋଗ୍
କେନ୍ ଯୁଗୀ ଯୁଗ୍ ଯୁଗ୍ ଜୁଗି ପାଏଚା ସାଧୁ ଯୋଗ । ।।୫୪।।

ଉଛନ୍ ମନ୍ ଉଡ଼୍‌କି ଉଠେ ଫଡ଼୍‌କିଲା ଝୁରି କଟେଁ
ଇହାଦେ ନେହେଲେଁ ଆର୍ ଘଡ୍‌କେଁ ପାର୍‌ବା ଧରି ଅଁଟେଁ । ।।୫୫।।

କିନ୍ଦ୍‌ରି କିନ୍ଦ୍‌ରି ଭଉଁରୀ ଭିଡ୍‌ରେଁ ଗୀତ୍ ଗାଇଗାଇ ନାଚେ
ପଥ୍‌ରେଁ ପଥରେଁ ପାଏନ୍ ପିଁଧନା ଥଥ୍‌ରେଇ କରି କାଚେ । ।।୫୬।।

ପାନିର୍ ଟେରେର୍ ସୁରେଁ ମନ୍ ଆକାଶେଁ ଯାଏସି ଉଡି
ଝାଏଁନୁ ଝଁପେଇ ହଉଁ ନିଜର୍ ରସେଁ ଯାଏସି ବୁଡି । ।।୫୭।।

ଖରାର୍ ଧାସେଁ ପାନିର୍ ଉଠେଁ ମୁଲୁର୍ ମୁଲୁର୍ ହସେ ।
ସେ'ହିଁ ଖାଲି ରସ୍ ଆଏନ ସବୁ ପାଶ୍‌ରି ପଶେ । ।।୫୮ ।।

ଗାଧୁଆ ପାଧୁଆ ଶଉଚ୍ ସଂଧିଆ ପୂଜା ପରସାଦ୍ ସାରି
ତିଆରି ହଇଁ ବାହାରି ପର୍‌ଲେ ଗଙ୍ଗା ହେବେ ପାରି । ।।୫୯।।

ପାଶେଁ ଅଁଡ୍‌ରେଁ ନାଏଁନ ଡଙ୍ଗା ଅଛେ ମଝା ଧାରେଁ
ଡାକ୍‌ଲେଁ କହେ କେଉଁଟ୍ 'ଭାଇ ! ମୁଇଁ ନାଇଁ ପାରେ । ।।୬୦।।

ରାମର୍ ପାହାର୍ ଧୂଏଲ୍ କର୍‌ସି ପଥର୍‌କେ ବି ନାରୀ
ଡଙ୍ଗା ମୋର୍ ତାହାରୁ କଅଁଲ୍ କାଠେଁ ଆଏ ତିଆରି । ।।୬୧।।

ସେ ଧୂଏଲ୍ ଥିଁ ନାରୀ ପାଲ୍‌ଟି ବସ୍‌ଲେଁ ମୋର୍ କୁଶ୍‌ଲି
ପାଁଚ୍ ପରାନୀର ଜୀବନ୍ ଯିବା, ଜୀବ୍‌କା ଯିବା ଭୁଷ୍‌ଲିଁ । ।।୬୨।।

ଜୀବ୍‌କା ତ ଯିବା ସାଙ୍ଗେ କୁଟୁମ୍ ବଢ଼୍‌ବା ଜନ୍‌ଏ
ବଢ଼୍‌ଲେ ଜନ୍‌ଏ ଅଡିଆ ବି ତ ଖଙ୍ଗିଯିବା ବନ୍‌ଏ । ।।୬୩।।

କହି କହି କେଉଁଟ୍ ପାଶ୍‌କେ ଡଙ୍ଗା ଆନ୍‌ଲା ବାହି
ଅଜ୍ଞାନ୍-ରାଏତ୍ ଅଜାନ୍‌ତକେଁ ଆସେ ପାହି ପାହି । ।।୬୪।।

ଖଏଣ୍‌କେ ଡଙ୍ଗା ଆଏଲା ମାଦ୍‌ରେଁ ରାମ୍ ବସ୍‌ବେ ବଲି
ଉଦ୍‌ରୁନ୍ ସାଏର୍ ଧୀବର୍ ପାଦ୍‌କେ ଧଏଲା ଜବର୍ କରି । ॥୬୫॥

ରହ୍ ରହ୍ ମୁଇଁ ପାହାକେ ଧୁଇଁ ପୁଛି ସାରସିଁ ବାଏଲ୍
ହର୍‌ବରା ନାଇଁ ବାଏଲ୍ ଥିବା ନୁହେ ଦେଖେଁ ଟାଏଲ୍ । ॥୬୬॥

ପାହା ଧୁଇଁ ମୁଡର୍ ବାଲେଁ ରେଁତି ଛାଡ୍‌ଲା ପାହା
କେଁଚ ସଁଧିଁ କାହିଁ ବାଏଲ୍ ଥିବା କାଏଁ ନୁରି ଦେଖେ ଆହା । ॥୬୭॥

ସେ ପାଦ୍‌ତଲେଁ ଦେଖ୍‌ଲା କେତେ ଜନ୍‌ବେଲ୍ ତରା
ନଏଦ୍ ସମ୍‌ଦର୍ ଝାର୍ ପରବତ୍ ଗାଁ ଭୂଇଁ ଧରା । ॥୬୮॥

ଆଁଖିର ପାନି ଦିହ୍ ସର୍ ସର୍ ଭାବ୍ ସର୍‌ସର୍ ମନ୍
ରାମ୍ ତର୍‌ସର୍ ସଂଭାଳି ନିଜ୍‌କେ ଯିବାକେ ଛନ୍‌ଛନ୍ । ॥୬୯॥

କଉଶିକ୍ ବୁଝି ସବୁକଥା ନୁହନ୍ ଟିଖେ ହର୍‌ବର୍
ଖୁସି ହଇଁ ଋଷି ଭାବନ୍ ହୁସିଆର୍ ଆଏ ଧୀବର୍ । ॥୭୦॥

ଯୁଗୀ ଋଷି ମୁନି ମାନ୍‌କୁଁ ଘାଏକେଁ ଗଲା ବହ୍‌କି
ନଏଦ୍ ଲହଁକା ଆଗୁଁ ସଂସାର୍-ସାଗର୍ ଗଲା ଲହଁକି । ॥୭୧॥

ଧୀବର୍ କଲା ଧୀ ବର୍‌କଷ୍ ଋଷିର୍ ଧିଆନ୍ ଆନ୍
ବ୍ରହ୍ମ ଜାନ୍‌ଲା ଲୁକ୍‌କୁଁ ମିଲେ ବ୍ରହ୍ମ ସମାନ୍ ମାନ୍ । ॥୭୨॥

କୁଡେଁ ଡଙ୍ଗା ଧରିଁ ଗଙ୍ଗା ଉଛଲେ ଉଷତ୍-ମାରେଁ
ରାମ୍ ମୂରତି ହୁର୍‌ଦେଁ ଲେଖେ ଡଙ୍ଗାର୍ ଗାରେ ଗାରେଁ । ॥୭୩॥

ଡଙ୍ଗା ଯାଉଛେ ହଲିଝୁଲି ଧୀବର୍ ରହେ ଧୀର୍
ଭାବ୍-ସାଗ୍‌ରେଁ ନାବ୍ ଚାଲିଛେ ମନ୍ ରହିଛେ ଥିର୍ । ॥୭୪॥

ଧୀବର୍ ବୁଲେ ଭାବ୍ ରାଏଜେଁ ଲମି ଯାଇଛେ ବନିହାଁ
ଶ୍ରୀରାମ ଅଛନ୍ ସେ ବି ଅଛେ ଆର୍ ନାହିଁ କେ ଉନିଆଁ । ॥୭୫॥

ସୁନ୍ଦର୍ ଚେହେରା ସୁନ୍ଦର୍ ବେଭାର୍ କେଡେ ସୁନ୍ଦର ମନ୍
ଦୁଖର୍ ନାଆଁ ଗଁଧ୍ ନାଇଁ ଅଠିପର୍ ପର୍‌ସନ୍ ।     ॥୭୬॥

ରାମ୍ ନୁହେସନ୍ ରଜାପିଲା ଡଙ୍ଗା ବୁହା ସେ ନୁହେ
ଗୁଟେ କଁଟ୍ ନାପର୍ ମୁନୁଷ୍ ଅଲଗ୍ ନୁହନ୍ ଦୁହେ ।     ॥୭୭॥

ରାମ୍ ନୁହେସନ୍ ବଡ୍ କି ନିକେଁ ନୁହେ ସେ ସାନ୍
ଗୋଡ୍ ଧୁଇଁ କାଏଁ ରାମନୁ ପାଏଲା ଏଡେ ମହତ୍ ଦାନ ।     ॥୭୮॥

ଆନନ୍ଦ୍ ଗଛେଁ ଫଲ୍ ଫଲିଛେ ଦୁହେ ଖାଉଛନ୍ ଝାରି
ଝନ୍‌ଏ ଦିଶେ ଦୁହିଁକୁ ଦେଖଲେଁ ବନ୍‌ଏ କରି ଫାରି ।     ॥୭୯॥

ଋଷି ଭାବୁଛନ୍ ଜାଏତ୍ କୁଲ୍ ନେଇ କିହେ ନୁହନ୍ ସାନ୍
ମନ୍ ପର୍ଛା ଥିଲେଁ ମିଲନ୍ ଛନ୍‌କେଁ ଭଗବାନ୍ ।     ॥୮୦॥

ବନ୍‌ଏ କରି କଲେଁ ଜନ୍‌ଏ ଯାହାର ଯେନ୍ ବୁର୍‌ତି
ବିଲ୍‌ମେ ବି ଫଲ୍ ପାଏବା ନାଇଁ ହେଲେଁ ବି ତୁର୍‌ତି ।     ॥୮୧॥

ଲୋକ୍ ନୁହେସନ୍ ଦୀନ୍ କିହେ କବାର୍ ନୁହେ ହୀନ୍
ବିଶ୍ୱର୍ କା'ର୍ ଠାନୁ ଈଶ୍ୱର୍ ନୁହନ୍ ପରାଭିନ୍ ।     ॥୮୨॥

ତାହାକେ କେ ମନ୍ ଦେଲେଁ, ସେ ତନ୍ ପାର୍‌ସି ଦେଇ
କା'ଣା ଦେସି କେ କହେବା ସବୁ ଦେଲେଁ ନେଇ ।     ॥୮୩॥

ବିଶ୍ୱାମିତ୍ର ବୁଲିଁ ବୁଲନ୍ ଅଲ୍‌ଗା ଭାବ୍‌ନା-ଝାରେଁ
ସମ୍‌କୁଁ ଆଶ୍ରିୟ୍ କରି ଡଙ୍ଗା ପୁହୁଁଚେ ଆର ପାରେଁ ।     ॥୮୪॥

ଉତ୍‌ରି ଆସି ସଭେ ପାନିର୍ ପାଶେଁ ହେଲେ ଠିଆ
ରାମ୍ ଉତିର୍‌ବାର୍ ଦେଖିଁ ବୁତ୍‌ରି ଗଲା ଧୀବର୍ ହିୟା ।     ॥୮୫॥

ପାହେଁ ପଡ୍‌ବା ବର୍ଲିଁ ବୁପ୍‌ରା ଅଁଟା ମୁଦ୍ ଲୁହାଁଲା
ରାମର୍ ଆଁଖୁଁ ଆନନ୍ଦ୍-ଲହ୍ ଦେଖୁନ୍ ଦେଖୁନ୍ ବୁହାଲା ।     ॥୮୬॥

ଅଧାଧିରୁଁ ଛିନି ନେଇ ରାମ୍ କହେଲେ ଭାଇ !
ତୋର୍ ଲାଗିଁ ଜାଗା ମୋର୍ ପାହାର୍ ତଲେଁ ନାଇଁ । ॥୮୭॥

ସବ୍‌କାଲେଁ ମୋର୍ ଛାତିର୍ ତଲେଁ ରହେବା ତୋର୍ ବାସ୍
କହି ଆବ୍‌ରି ଆନ୍‌ଲେ ରାମ୍ ନିଜର ଛାତିର୍ ପାଶ୍ । ॥୮୮॥

ଦୁହି ହାତେଁ ସାଆଁଟି ଧରି ହେଲେ ଥନ୍ ଥନ୍
କିହେ କାହାକେ ଛାଡ଼୍‌ବାର୍‌କେ ନାଇଁ ଲାଗ୍‌ବାର୍ ମନ୍ । ॥୮୯॥

ବେଲ୍ ବୁଡ଼ି ଆଏଲା ଜାନି ବାଲ୍‌ମୀକି ତୁନ୍ ପଡ଼୍‌ଲେ
ସଭା ଭାଙ୍ଗ୍‌ଲା ଭାଗି ସଭେ କୁରିଆ ମାନ୍‌କୁ ଗଡ଼୍‌ଲେ । ॥୯୦॥



# ପାଉଚ୍-୧

# ରାମ୍ ଲକ୍ଷ୍ମଣ୍ ମିଥିଲା ପୁହୁଁଚିଲେ

ଡାଲ୍‌ପଦ୍‌ରା ଅଡ଼େଇ ଅଡ଼େଇ ନାଇଁ କରି ମଠ୍
ସକ୍ ସକାନୁ ସକାଲ୍ ଆଏଲା ବାଲ୍‌ମୀକି ମୁନି ମଠ୍ । ॥୧॥

ହୁର୍‌ହୁରିଆ ଧୁକା ହାତେଁ କୁରିଆ ଟାଏଟ୍ ଠଟଉଛେ
କୁଆ ଗୁହୁଡାର୍ ହୁଆ ହୁଟା ଡାକେଁ ସମ୍‌କୁଁ ଉଠଉଛେ । ॥୨॥

ଆଶ୍ରମ ଗାଏ ପର୍‌ଘାନି-ଗୀଦ୍ ଚେ଼ରେର୍ କଠେଁ କଠେଁ
ହଁସି ଫୁଟେ ଜାଇ ଜୁଇ ମଲୀର୍ ଉଠେଁ ସଥେଁ । ॥୩॥

ପୁର୍ଥୀ ରାନୀର୍ ରାତିର୍ ସପନ୍ ତରା ହଇ ଲିଭୁଛେ
ସତ୍ ସତାନିର୍ ଜୀବନ୍-ଗୀଦ୍ ଅରୁନ୍-ରାଗେଁ ଶୁଭୁଛେ । ॥୪॥

ଅଂଧାର୍ ଉପ୍‌ରେଁ ମହାନ୍ ରିଶ୍‌ମି ରାଗେଁ ବେଲ୍ ଲାଲ୍
ହୁର୍ ମୁଖିଆ ଅଂଧାର୍ ଭାଗେ ଡେଗ୍‌ନୁ ଗାଦ୍ ଖାଲ୍ । ॥୫॥

ମୂଲିହାର୍ ରାଏତ୍-ଚ଼ରୀକର୍ କୁଲିହା ଧରେ ଦୁଏଲ୍
ଛରା ଦେଇ ଖରା ବିହ୍‌ରୀ ଆଁହ୍‌ରି ଆନ୍‌ଏ ଖୁଏଲ୍ । ॥୬॥

ଘଡ଼େ ଆଗୁଁ ବଢ଼େ ପହରୁଁ ସାରି ପାହାଁତୀ ଡକ୍‌ରା
ବେଦୀନିକେ ଖେଦି ଆଇଛନ୍ ପାଶର୍ ଝାର୍ କୁକ୍‌ରା । ॥୭॥

ପୁହୁରା ନାଏଁନ କା'ଣା କର୍‌ବେ ଖୁଜି ନୁରି ହଉଛନ୍
ମୁନି ମାନ୍‌କର୍ ଆସନ୍ ନୀବାର୍ ପୁଆଲ୍ ଇଁଚ୍ରେଇ ନଉଛନ୍ । ॥୮॥

କାହିଁ କେନ୍ତା ଗୁଟେ ଖଣ୍‌ଏ ପାଇ ନୀବାର୍ ଦାନା
ଠୁକି ଭର୍‌ଗେଦ୍ ମନେ ସାରନ୍ ସକାଲ୍ ବେଲର୍ ଖାନା । ॥୯॥

ଫୁଲ୍ ବିନ୍ନହିର୍ ବାଢ଼ନି ଧରି ମୁନି କୁମାରୀର୍ ଦଲ୍
ବର୍ନ୍ହେଇ ଆନନ୍ ବାନା ଉଡେ ପିଁଧ୍ଲା ବଲ୍କଲ୍ । ||୧୦||

ବଏସ୍-ରଜା ବସ୍ବାର୍ ମଜା ଲାଗି ପକାଏ ଚ଼ଉକୀ
ସେ ଆସନ୍ ଆସନ୍ ଛାଡିର୍ ଉପ୍ରୁଁ ଉପର୍ ଉପ୍କି । ||୧୧||

ହଲା ଝୁଲା ହେଲେଁ ଆସନ୍ ରଜା ହେବା ରିଷା
ହେଥିର୍ ଲାଗି ପିଁଧ୍ଲା ବକଲ୍ ହୁସିଆର୍ ହର୍ମିଷା । ||୧୨||

ପୂରୁବ୍ ଦିଗ୍କେ ମୁହଁ କରି ଅଁଟା କରି ବାଁକ୍
ସୂର୍ଯ୍ୟମୂଖୀ ଫୁଲ୍ବାଏର୍ ସତେଁ ସୁର୍ଯେଁ ଦିଏ ଝାଁକ୍ । ||୧୩||

ଜନାଶୁନା ନାଇଁ ଜନ୍ ଆଏଲା ମେତାଲ୍ ପଶି
ସୀତା ବର୍ନ୍ହେଇ ବସନ୍ ଆସି ମୁହେଁ ଅଲପ୍ ହଁସି । ||୧୪||

ଜନ୍ଏ ଆସି କହେଲା ବାଢ୍ନ୍ହିଁ ଧରି, ନାନି ! ଛାଡ଼
ତମ୍ସା ନଏଦ୍ ଶଧାଏ ତମ୍କ୍ରୁଁ ହେବା ଘାଏ ଲାତ । ||୧୫||

ଯ' ସେନ୍କେ ଡାକ୍ ଦଉଛେ ଲହରୀ-ହାତ୍ ପେସ୍ରେଇ
ଯାଉଛୁଁନ ତମର୍ ପଛାପଛ୍ କାମ୍ ଉସ୍ରେଇ । ||୧୬||

ସୀତା କହେଲେ ''ଖିଆଲେଁ ଟୁକେଲମାନେ ! ଅ'ଲବାର୍
ସାଙ୍ଗେଁ ମତେ କେନ୍ତା କରିନାଇଁ ଦିଅ କବାର୍ । ||୧୭||

ସିଆନ୍ ସୁନ୍ଦର୍ ସୁତର୍ ଜନ୍ଏ କହେ କାଏଁ କାଯେଁ ?
କରିଦେବୁଁ ତମ୍କ୍ରୁଁ ନାନି ! କବାର୍ ହେସି ଲାଜେଁ । ||୧୮||

ବାବାର୍ କଥା ''କବାର୍ ନାଇଁ ଦେବ ମୋର୍ ମାଁକେ
କବାର୍ ନାଇଁ କରି, ଥିବା କବାର୍ ଠାନେ ନାଁ କେ ।'' ||୧୯||

ତମ୍କ୍ରୁଁ ପାଏବା ବଲିଁ ତମ୍ସା ହଇଁଯାଉଛେ ଉଛନ୍
ନାଇଁ ଶୁନ୍ଅ ? କୁଲ୍କୁଲ୍ ଡାକେ ଆସ ବଲିଁ ଇଛନ୍ । ||୨୦||

ସୀତା ତେତ୍‌କେଁ ତୁମ୍ବୀ ଧରି ଧଏଲେ ତମ୍‌ସା ବାଟ୍
ବରନ୍‌ହା ସାରି ମୁନି ଟୁକ୍‌ଲେ ଲମ୍‌ଲେ ସାଥେଁ ସାଥ୍ । ॥୨୧॥

ତମ୍‌ସା ନଦୀର୍ ଖଁଡି ଖଁଡି ମୁନି ମୁନି କୁମାର
ସଂଧିଆ ଶଉଚ ସାରନ୍ ଶୁଭେ ବେଦ୍ ପଢ଼ା ଅଗ୍‌ବାର୍ । ॥୨୨॥

କିଏ ପଶି ଛାତେ ପାନି ବେଲ୍ ଆଡ଼୍‌କେ ଦେଖି
ଉଁଝଲା ଉଁଝଲା ପାଏନ୍ ଧରି ବେଲ୍‌କେ ଦିଏ ଟେକି । ॥୨୩॥

ଚଟାନ୍ ଉପ୍‌ରେଁ ବସି କିଏ ପିଁଧିଲା ବକଲ୍ କାଚେ
ପାଶେଁ ପାଶେଁ ତମ୍‌ସା ପାଏନ୍ ହଁସି ହଁସି ନାଚେ । ॥୨୪॥

କିଏ ଧରି କୁଶମ୍ ଫଲ୍ ପଥ୍‌ରେଁ ଥୁଇ ଠେଁସୁଛେ
ତେଲ୍ ବହରାଇ ଦିହ୍ ଭର୍‌ଭର୍ ପଢ଼େଇ ପଢ଼େଇ ପିଶୁଛେ । ॥୨୫॥

ବାବା ଆସନ୍ ଗାଧି ପାଧି ମୁହେଁ ବସେ ଓଁକାର୍
ରାମ୍ ଅଛନ୍ ହୁରୁଦ୍ ଭିତ୍‌ରେଁ ହରମେଷ୍ ହଇଁ ସାକାର୍ । ॥୨୬॥

ସୀତା ଫିରନ୍ ତମ୍‌ସା ଘାଟୁଁ ଉଦା ସର୍‌ସର୍ ପିନ୍ଧ୍‌ନା
ରାମ୍ ସର୍ ସର୍ ହୁରୁଦ୍ ଭିତର୍ ମୁଣ୍ଡେଁ ଉଦା ଉଢ୍‌ନା । ॥୨୭॥

ସୀତା ଚାଲନ୍ ଲହର୍ ଝପର୍ ମୁନି କୁମାରୀ ସାଙ୍ଗେଁ
ଉଲ୍‌ଗି ହଇଁ ପାହେଁ ପର୍‌ଲେ ମୁନି ଦେଖୁଁ ଆଗେଁ । ॥୨୮॥

କେନ୍ ଆଶୀର୍ବାଦ୍ ଦେସନ୍ ମୁନି ଦେଖେନ୍ ଏକସ୍‌କଁଟି
କିଏ ଆଏ ? ବଲିଁ ବୁଧି ନାଇଁ ପାର୍‌ବାର୍ କଁଟି । ॥୨୯॥

ନୁହେ ସେ ମୋର୍ ଦେଖ୍‌ଲା ଜନକ୍ ରଜାର୍ ଜେମା
ମୂରତି ଧରେ ସତ୍ ସାଙ୍ଗେଁ ଶାନ୍ତି ଦୟା ଖେମା । ॥୩୦॥

ଲକ୍ଷ୍ମୀ ନୁହେ, ନୁହେ ସର୍‌ସତୀ, ବ୍ରହ୍ମାଣୀ କି ଶିବା
ଇନ୍ଦ୍ରାଣୀ କେ ଅନ୍‌ମାନି ନୁହେ ସେ କାଏଁ ପାଶ୍‌କେ ଯିବା ? ॥୩୧॥

କିଏ ଆସେ ଛେଁ ପଚରେଇ ନେବେ ନୁରି ଦେଖନ୍ ଭିତର୍‌କେ
ଏ ବୁଆ ! ସେ'ନେ ରାମ୍ ନାଏଁନ କାହିଁ ଗଲେ ଇ ବତର୍‌କେ । ॥୩୨॥

ରାମର୍‌ଠାନେ ସେ ବସିଛନ୍ ଯାହାକେ ଦେଖନ୍ ଆଗେଁ
ଜଗତର୍ ମାଁ ଆଇଛେ ଆଏଇ୍ ଭୁଲା ଭଗତ୍ ଭାଗେଁ । ॥୩୩॥

ମା ମା ବଲିଁ ପୁଟ୍ ପୁଟାଲେ ନାଇଁ ଆଏବାର୍ ନାଆଁ
ରାମ୍ ନାଇଁନ ଛିନା ଅଛେ ମନ୍ ବୁଦ୍ଧିର୍ ଗାଆଁ । ॥୩୪॥

ସୋର୍ ତ ସୋର୍ ମୋର୍ ବଲ୍‌ବାର୍ ମୁନିର୍ ନାଇଁ କିଛି
ମନ୍ ଠାନ୍‌କେଁ ଗୁଛା ହଇଛେ ହେବାର୍ ନାଇଁ ବିଛି । ॥୩୫॥

ଏତ୍‌କି ବେଲେଁ ଲବକୁଶ ଆଶ୍ରମନୁ ଆଏଲେ
ମୁନି ପାହା ଛିଇଁ ଛିଇଁ ମୁଡ଼ିଆ ମାନ୍ ମାଏଲେ । ॥୩୬॥

କହେଲେ ବାବା ! ତୁର୍‌ତି ଯିମା ସଭା ସମିଆ ହେଲାନ
ସମିଆ ଶମି ଟର୍‌କି ନେବା ଆମର୍ ଅବ୍ ହେଲାନ । ॥୩୭॥

ମୁନିର୍ ଭିଲେଁ ମୁନି ଗଲେ ତାର୍ ପଛାପଛ୍ ସୀତା
ଇତାର୍ ପରେଁ ମଠ୍ ବାହାରେଁ କିଏ କାହିଁ ଥିତା ? ॥୩୮॥

ସାରା ଆଶ୍ରମ୍ ବେଦୀ ଠାନେ ଘାଏକେଁ ହେଲେ ଠୋଲ୍
ବାଲ୍‌ମୀକି ଆଏଇ୍ ଦିଶନ୍ ଅନାମେତ୍ ଆତମ୍ ଭୋଲ୍ । ॥୩୯॥

ସମିଧ୍ ଜଲେ ସମାନ୍ ଭାବେଁ ହୁମ୍ କୁଁଡ୍‌କେ ଲାଗି
ମୁନି ବାବାର୍ ମନ୍ ଭାବ୍‌ନା ଭିତ୍‌ରୁଁ ଆସେ ଭାଗି । ॥୪୦॥

ଆଖୁଁ ଝରେ ଲହ୍ ଥପ୍ ଥପ୍ କଁଠୁଁ ଝରେ ଭାଷା
କା'ଣା ପାଏଲେ ? ପୂର୍‌ତି କରେ ସବୁ ପାଏବାର୍ ଆଶା । ॥୪୧॥

ସଏଦ୍ ସୁମ୍‌ରି କନକ୍-ପୁରୀ ଜନକ୍ ଜେମା ନାମେ
ଥନ୍ ଥନାଇ ଡାକନ୍ ମା ଗୋ ! ଲଗା ତୋର୍ କାମେ । ॥୪୨

ଜନମ୍ ମାଏଟ୍ ଜନକ୍ ପୁର୍‌କେ ଘାଏ ମିତାଲ୍ ନେ'ନ
ଜାନ୍‌ମି କେନ୍ତା ଥିଲା କା'ଣା କରୁଥିଲୁ ସେ'ନ । ।।୪୩।।

ମନେ ମନେ କହି ସଭାଜନ୍‌କୁଁ କହନ୍ ମୁନି
ରାମ୍ ଲକ୍ଷ୍ମଣ୍ ଗଙ୍ଗା ଲହଁକି ଗଲେ ଥିଲ ଶୁନି । ।।୪୪।।

ଇ ନୁ ଇଆଡ୍ ହେଲା କଥା ଲୁଭ୍ ଲଭାନି ଆଏ
କର୍‌କଶ୍ ମୁହେଁ ରସର୍ କଥା ବଖାନି ଦେଖ୍‌ସିଁ ଘାଏ । ।।୪୫।।

ରାମ୍ ଧଏଲେ ଋଷି ସାଙ୍ଗ ଗଲେ ଛାଡ଼ି ଧୀବର୍‌କେ
ରାମ୍‌କେ ନାଇଁ ଛାଡ଼ି ପାର୍‌ଲା ଫିରିଁ ଧୀବର୍ ଘରକେ । ।।୪୬।।

ଯାତ୍‌ରୀ ଦେଖ୍‌ଲେଁ ତାହାକେ ନାଇଁ ଦିଶନ୍ ବଡ୍ ସାନ୍
ଯେ ହେଲେଁ ବି ତାହାର୍ ଲାଗି ରାମ୍ ସମାନ୍ ଆ'ନ୍ । ।।୪୭

ବାହାରେଁ ଭିତ୍‌ରେଁ ନଦୀର୍ ଧାରେଁ ରାମର୍ ରୂପ୍ ଦିଶେ
ସଂସାର୍ ବିଁଧନ୍ କାଟ୍‌ବାର୍‌କେ ନାମ୍-ହତିଆର ନିଷେ । ।।୪୮।।

ଧୀବରର୍ ଧୀ ବୁର୍‌ଷାଲ୍ ହଇଁ ଡାହି ପଖ୍‌ରା ମେଲେ
ସଁସାର୍ ଲାଗେ ଅସାର୍ କାଁଚି, କୁଁଢ଼ି ଲେଖେଁ ଖେଲେ । ।।୪୯।।

ରାମ୍ ଲକ୍ଷ୍ମଣ୍ ବିଶ୍ୱାମିତ୍ର ସାଙ୍ଗେଁ ସାଙ୍ଗର୍ ମୁନି
ବାଟ୍ ଚାଲୁଛନ୍ କେଉଁଟ୍ ବୁଢ଼ାର୍ ଭାନ୍‌କେ ହୁର୍ଗୁନି । ।।୫୦।।

କେ କହୁଛେ ପୁରାନ୍ ଶାସ୍ତର୍ କହେ ଗଙ୍ଗାର୍ କାମ୍
ମଲା ପରେଁ ବି ହାଡ୍ ପାଏଲେଁ ନେସି ସରଗ୍ ଧାମ୍ । ।।୫୧।।

ଜୀବନ୍ କାଲେଁ ଡଙ୍ଗା ନେଇ ଗଙ୍ଗାନେ କଲେଁ ଜୀବ୍‌କା
ତାର୍ ନାଇଁ ସଂସାର୍-ସାଗର୍ ଭିତ୍‌ରେଁ ବୁଡ଼ା ଉପ୍‌କା । ।।୫୨।।

ସଁସାର୍ ଯାଵ୍ ପାଦର୍ ଧୂଲିଁ ରହିଥିସି ଲଟ୍‌କି
ତାହାକେ ଧୁଇଁ ପାଦେଁ କାଏଁ ରହେଲା ନିଜେଁ ଅଟ୍‌କି । ।।୫୩।।

ଆଉର୍ ଝନ୍ ଏ ମୁନ ବଏଲେ ଅନୁମାନେ ସାଏତ୍
ରାମ୍ ଆର୍ ଇ ଧୀବର୍ ବୁଢା ଦୁହେ ଗୁଟେ ଜାଏତ୍ । ॥୫୪॥

ଝନ୍ ଏ କରେ ଡଙ୍ଗା ଧରି ଗଙ୍ଗା ନଏବ୍ ପାର୍
ଆର ଝନ୍ କ ପାର୍ କର୍ ସି ଦୁସ୍ତର୍ ସଂସାର୍ । ॥୫୫॥

ଶୁନନ୍ ସଉମିତ୍ରୀ ରାମ୍ ଦିଅନ୍ ମୁହୁଁ ମୁରି
ଲାଜେଁ ତାକର୍ ଦିହ୍ ଭର୍ ଭର୍ ଚଢେ ଘୁର୍ ଘୁରି । ॥୫୬॥

ଋଷି ପରମ୍ ପୁରୁଷର୍ ଚରମ୍ ଦୟା ସୁମ୍ ରି
ରାମ୍ ଦେଖ୍ ମନ୍ ଭିତ୍ ରେଁ ଅନ୍ ଜାନେ ଯା'ନ୍ ଘୁମ୍ ରି । ॥୫୭॥

ମନର୍ ଆନନ୍ଦ୍ ରାମ୍ ସିନା ସେ'ନେ ମାନର୍ ମଏଲା
ମୁଷ୍ଟିଙ୍କେ ମାର୍ ଗଲା ସବ୍ ରାମ୍ ପଣିଆଁ ସଏଲା । ॥୫୮॥

ଦିନ୍ ନୁହେ ସରେ ସେ'ନୁ ମିଥିଲା ନୁହେ ଦୂର୍
ଖରା ନାଇଁ କି ଜାକର ନାଇଁ ଧୁକେ ହୁର୍ ହୁର୍ । ॥୫୯॥

ଋତୁମାନେ ହେତୁ ନାଇଁ କରି ବେଲା ଘଡି
ଗଛ୍ ଲତାନେ ଫୁଲ୍ ଫଲ୍ ସବ୍ ଅଦିନେ ଆସନ୍ ଭରି । ॥୬୦॥

ସଁଜ୍ ସକାଲେଁ ସରେ ନାଇଁ ଚେରେର୍ ହରେକ୍ ଗୀତ୍
ତାଲୁ ଫଟା ଖରା ନାଇଁ, ନାଇଁ କନ୍ କନି ଶୀତ୍ । ॥୬୧॥

ଚାଲ୍ ତି ବାଟେଁ ଆଖ୍ ପାଖ୍ ଗଛ୍ ଛଏରା ଢାପିଛେ
ଶାନ୍ତି ପୁଓ ପର୍ ଜା ନେଇଁ ଚାରି କୁତି ଖେପିଛେ । ॥୬୨॥

କଉଶିକ୍ ପାଖେଁ ଯାଇ କହନ୍ ସଉମିତ୍ ରୀ
କେନ୍ ରାଏଜ୍ ବାବା ! ସୁଖ୍ ଶାନ୍ତି ସବୁ ମିତ୍ ରି । ॥୬୩॥

ଗିରୀ ଇନେ ଚାରି ଦିଗ୍ କେ ଘେରି କରି ରହିଛେ
ଇନ କାଏଁ ସବୁଦିନ୍ କେ ଦୁଖର୍ ରାଏତ୍ ପାହିଛେ । ॥୬୪॥

ବାବା କହେଲେ ବାବୁ ! ଇଟା ଶିରୀର୍ ଜନମ୍ ଠାନ୍
ବିଦେହ୍ ଇନେ ଦେହର୍ ଉପ୍‌ରେ ନାଏଁନ ମନର୍ ଟାନ୍ । ॥୬୫॥

ଇ ରାଏଜର୍ ରଜା ଜନକ୍ ରଜା ଭିତ୍‌ରେ ଋଷି
ଋଷି ଭିତ୍‌ରେ ରଜା ଧଏନ୍ ତାକର୍ ପଉରୁଷି । ॥୬୬॥

ପୁର୍‌ଥୀ ଇ ନ ପିଲାତୀ ହେସି ସର୍ଲିଁ ଆଏସି ସରଗ୍
ଚଉକସ୍ ରହେ ଇନ ଚଉଦ ଭୁବନର୍ ଚଉବରଗ୍ । ॥୬୭॥

ଦେଖି ଜାନ୍‌ସନ୍ ସଭେ ବଲି ସବୁ ଇନେ ସୁନ୍ଦର୍ ଆଏ
ସୁନ୍ଦର୍‌ପନ୍ ତ ଦେଖିନେ ବାଲାର୍ ଆଁଖି ଆଁଖି ନ ଥାଏ । ॥୬୮॥

ହେଁଥିର୍ କାଯେଁ ରାଏଜ୍ ରାନୀର୍ ସୁନୟନା ନାଆଁ
ଜନମ୍ ଜାତ୍ ନାଇଁ କରି ବି ଭୂମିସୂତାର ମାଆଁ । ॥୬୯॥

କାମର୍ ନୁହନ୍ କାମ୍ କ୍ରୋଧ୍ ଛ'ହି ଅବ୍‌ଗୁନ୍
ବଲି କାଏଁନ କାମ୍ ଅଏରି ଥୁଇଲେ ଇ ନେ ଧୁନ୍ । ॥୭୦॥

ପୁର୍‌ଖା ପାତି ଦିନୁ ଇନେ ଅଛେ ଶିବ୍ ଧନୁ
ତାର୍ ଉଠ୍‌ଗନେ ଉଛବ୍ ହଏ ପାଶ୍‌ରି ନୁହେ ମନୁ । ॥୭୧॥

କଥା ହଉଁ ଦେଖନ୍ ଏ ଦେ ମିଥିଲା ସହର୍ ଦିଶୁଛେ
ଚୂନାଲା ଘରର୍ ସୁନାକଲ୍‌ଶେଁ ଲାଲିଆ ଖରା ହସୁଛେ । ॥୭୨॥

ସହର୍ ପାଶେଁ ସହରାବାର୍ ଲାଏକ୍ ଆମ୍ ବୁରେଇ ଘଁଚ୍ ।
ଆଏବାର୍ ଲୋକ୍ ଲାଗି ଆଏ ସତେଁ ପର୍ଘାନି ମଁଚ୍ । ॥୭୩॥

କେନ୍ ଡାଲ୍‌ନେ କୁଇଲି ଡାକେ କେନେ କୁଁଭାଟିଆ
ଡାଲେଁ ଆସି ଝଁପେଇ ହଏ ଉପ୍‌ରେଁ ଉଡ୍‌ଲା ଟିହା । ॥୭୪॥

ଗୁଲିହା ସାଙ୍ଗେଁ ଧୁବେନ୍ ଚେରେ କୁଦା କୁଦି ହଇ
ଗୁଟେ ଡାଲେଁ ବସନ୍ ଆସି ବସ୍‌ଲା ଲେଖେଁ ସହୀ । ॥୭୫॥

ଅଏନ୍‌କା ଢେଁଟି କଜଲ୍‌ପାତି ହରଲ୍ ହୁଦା ହୁଦା
ଡାଲୁଁ ଡାଲ୍‌କେ କେ ମାରୁଛେ ଘାଏ କେଁ ଛନ୍‌କେଁ କୁଦା । ।।୭୬।।

ଭେଙ୍ଗରାଜ୍ ସାଙ୍ଗେଁ ଶାରୀ ଆଉର୍ ରୂପ ରାମୀ ମଏନା
ପର୍‌ଘାନୀ ଗୀତ୍ ଗାଆନ୍ ଆଗୁଁ ନେଲା ଲେଖେଁ ବଏନା । ।।୭୭।।

ସାଫ୍ ସୁତର୍ ବୁରେଇ, ଗୁଠେ ନାଇଁ କୁଟା କାଠି
ଖାଏଲା ଜିନିଷ୍ ପର୍‌ଲେ ସଥେଁ ଖାଇ ହେବା ଚାଟି । ।।୭୮।।

ସଂଜ୍ ପହରିଆର୍ ସୁରୁତ୍ ପବନ୍ ସୁତର୍ ସୁଧାର୍ ବହେ
ବାଟ୍‌ଚଲାକର୍ ଝାଲ୍ ଶୁଖାବା ଶୁନେଇ ସତେଁ କହେ । ।।୭୯।।

କଉଶିକ୍ କହନ୍ ଇ ନେ ବାବୁ ! ବସି ଥାକ୍‌ମା ଘାଏ
ଯେନ୍‌କେ ଯିମା ଆମର୍ ଯିବାର୍ ସେ ଜାନ୍‌ବାର ଯାଏ । ।।୮୦।।

ସଭେ ବସ୍‌ଲେ ବୁରେି ଭିତ୍‌ରେଁ, ରାମ୍ ଲକ୍ଷ୍ମଣ୍ ଦୁହେ
ଭାବ୍‌ଲେ ବୁରେଇ ବୁଲା ଛାଡ଼ି ସୋଜ୍ ବସ୍‌ବାର୍ ନୁହେ । ।।୮୧।।

ବୁଲି କିନ୍ଦରି ବୁରେଇ ଦେଖନ୍ କେନେ ଉସାର୍ ପିସାର୍
ସାଧୁ ସନ୍ଥର୍ ହୁରୁଦ୍ ଲେଖେଁ ପାଇ ନୁହେ ପାର୍ । ।।୮୨।।

ମାନି ଚଲନ୍ ସଭେ ସମ୍‌କୁଁ ଶାନ୍ତି ଶାସନ୍ ଚାଲେ
ସରଗ୍ କାହିଁ ମାଡ୍‌ବା ପାଖ୍ ଯେନ୍ ବଦ୍‌ରେଁ ପାଲେ । ।।୮୩।।

ଘଡ଼େ ନାଇଁ ଯାଉଁ ପଡ଼େ ଶଁଖ୍ ମୁହୁରୀର୍ ଶବଦ୍
କାନେ, ବାକି ଶବଦ୍ ମାନେ ପଡ଼ିଁଗଲେ ଟବଧ୍ । ।।୮୪।।

ଜନକ୍ ରଜା ଲୋକ୍ ଜନ୍ ନେଇ ଟତାପନା ଆସନ୍
ଆଗେଁ ଋଷି ଶତାନନ୍ଦ ଆନନ୍ଦ ରସେଁ ଭାସନ୍ । ।।୮୫।।

କଉଶିକ୍ ଋଷିର୍ ପାହା ଧୁଉନ୍ ଜନକ୍ ରାଜ୍ ନିଜେଁ
ମନା କରନ୍ ଋଷି, କହି "ଲାଜର୍ ପାନି ଭିଜେଁ । ।।୮୬।।

କାଏଁ ଲୁକର୍ ମୁଇଁ ଲୋକ୍ ତୁମେ ଶୁକ ମୁନିର୍ ଗୁରୁ
ଆଶିଷ୍ ଦିଅ ମତେ, ମୋର ମନ୍ କାମ୍‌ନା ପୁରୁ ।'' ॥୮୭॥

କାଏଁ ମାନ୍‌ତେ ଜନକ୍ ଗୋଡ୍ ଧୁଇଁ କଲେ ପୂଜା
ଅତିଥ୍ ସମ୍‌କର୍ ମାଏନ୍‌ତା, ନାଇଁ ଲାଗେ ରଜା ଗୁଜା । ॥୮୮॥

ଦୁହିକର୍ ଭଲ୍ ଅସାର୍ ପଚାର୍ ଉଚାର୍ ସରେ ନୁହେ
ଜନ୍‌ବେଲ୍ ତେଜେଁ ରାମ୍ ଲକ୍ଷ୍ମଣ୍ ଆଏଲେ ଦୁହେ । ॥୮୯॥

ଦୁହିଙ୍କୁଁ ଦେଖ୍ ଜନକ୍ ଋଷି ହଇଗଲେ ତମ୍ପୀତ୍
ଦିହ୍ ଦେଖି ପାଶ୍‌ରି ନେଲେ ହେବାର୍ ଦେହେ-ଜିତ୍ । ॥୯୦॥

ମନ୍ ଭିତ୍‌ରେଁ ସବ୍ ସରାଲା ଆନନ୍ଦ୍ ରସର୍ ଧାର୍
ନିଜେଁ କିଏ ? ଇୟେ କିଏ ? ବିଚାର୍ ମାନ୍‌ଏ ହାର୍ । ॥୯୧॥

କଉଶିକ୍‌କୁଁ କହନ୍ ଋଷି ! କିଏ ଆନ୍ ୟେ କହ
ଦେଖ୍‌ଲା ବେଲୁଁ ଲୁଖ୍‌ରା ମନ୍ ଉଖ୍‌ଲିଁ ଆସେ ଜହ । ॥୯୨॥

କେନ୍ ସର୍‌ଗର୍ ଦେବ୍‌ତା କି କେନ୍ ମର୍‌ତର୍ ମୁନୁଷ୍
ମୁଇଁ କାଏଁ ଚିହ୍ନେ ହଇଥିବେ ପରମ୍ ପୁରୁଷ । ॥୯୩॥

କେନେ କିଏ ଜନମ୍ ଦେଇଛେ କେନ୍ ମାଁ ଭାଏଗ୍‌ବାନୀ ?
କେନ୍ ଆଶ୍ରମର୍ ତପସ୍ୱିନୀ ? କେନ୍ ରାଏଜର୍ ରାନୀ ? ॥୯୪॥

ଘାଏ ମତେ ଶିଖେଇନିଅ କରି କେନ୍ ତପିସା
ଏନ୍ତା ଦୁଇ ମୂରତିର୍ ତୁମେ ସଙ୍ଗ ପାଇଛ ହମିଷା । ॥୯୫॥

କଉଶିକ୍ କହନ୍ ତୁମ୍‌କୁଁ କେନ୍ କଥା ଅଜନା
ତୁମେ ହେସ ଦୁଇ ଚାଏର୍ ଜନ୍ ଜାନ୍‌ବାରେଁ ଗନା । ॥୯୬॥

ସମ୍ ଦର୍‌ଶୀ ସବ୍ ଦରଶୀ ଦୂର୍ ଦର୍‌ଶୀ ତମେ
ତୁମ୍‌କୁ ଦେଖ୍‌ଲେଁ ଦର୍ଶନ୍ ଶାସ୍ତର୍ ଦୂରୁଁ ନମେ । ॥୯୭॥

ତୁମକୁଁ ଦିଶେ ସବୁ କା'ର୍ ଆଖିଁ ବାଟ୍ ଚାଲିବ
ମହାମନା ହୋ ! ମନର୍ ଛନ୍ଦେ ମୂରତି ସିନେ ଢାଲିବ । ॥୯୮॥

ଯାହାର୍ ମନ୍ ଯେତ୍‌କି ଉସାର୍ ଯେତ୍‌କି ଥିସି ଲମ୍
ଠିକ୍ ସେତ୍‌କି ଦେଖିବା ତାହାକେ ଜହ ନୁହେ କି କମ୍ । ॥୯୯॥

ଯେ ଯେନ୍ତା ଦେଖିବା ତାହାକେ ଠିକ୍ ସେନ୍ତା ଦିଶେ
ପର୍ଛାଁ ନିଜର୍ କରିପାର୍‌ଲେଁ ନିଜର୍ ସାଙ୍ଗେଁ ମିଶେ । ॥୧୦୦॥

ଠିକ୍ ପର୍‌ଚେ କେ'ନ ଦେସର୍ ମାଆଁ ବାପ୍ ଦେଶ୍
ଭିତର୍ ମୁନୁଷ୍ ଅନ୍‌ସାରେଁ କାଏଁ କେଭେଁ ବାହାର୍ ବେଶ୍ । ॥୧୦୧॥

ହେନ୍ତା ପର୍‌ଚେ ପସନ୍ଦ୍ ଯଦ୍‌ରି ଶୁନ୍‌ଅ ତିନେ କହୁଛେଁ
ଜାନିଛତ ମୁଇଁ ଅବଧ୍ ସୀମା ଭିତ୍‌ରେଁ ରହୁଛେଁ । ॥୧୦୨॥

ଅବଧ୍-ରାଜ୍ ଦଶ୍‌ରଥ୍‌କର୍ ଗେହ୍ଲା ପିଲା ଦୁହେ
ବଡ୍ ବଡ୍‌ଖା ରାନୀର ରାମ୍ ସାନ୍ ସୁମିତ୍ରାର୍ ହୁଏ । ॥୧୦୩॥

ତପିସା କଥା ପଚ୍‌ରାଲ ଯେ କେ'ନ ସାଧି ପାର୍‌ଲି ?
ସାଧିନା କାଲେଁ ଅସୁର୍ ବାଧା ତୁର୍‌ତି ସର୍‌ଲି ପର୍‌ଲି । ॥୧୦୪॥

ମୂଲ୍‌କରନୁ ତପିସା ମୁଇଁ ମିଲେ ଜଗତର୍ ମୂଲ୍
ସାରିଥିଲେଁ ଯାହା ପାଏତିଁ କାହିଁ ତାହିର୍ ତୁଲ୍ ? ॥୧୦୫॥

ଦୁଇଟା ମହାନଏଦ୍ ମିଶ୍‌ଲେଁ ପାଏନ୍ ବଢ଼େ ଯେନ୍ତା
ଦୁଇଟା ମହାନ୍ ଆତ୍ମା ମିଶ୍‌ଲେଁ ବଢ଼େ ମାଏନ୍ ସେନ୍ତା । ॥୧୦୬॥

ସେ ଅନ୍‌ସାରେଁ ସମିୟା ବଢେ କଥୁଁ କଥା ବଢି
ଶତାନନ୍ଦ୍ ଦେଖିଲେ ବେଲ୍ ତଲ୍‌କେ ଯାଏ ଗଡି । ॥୧୦୭॥

ହାତ୍ ଯୁଡି କହେଲେ ପ୍ରଭୁ ! ସହର୍ ସାରା ଟାକିଛନ୍
ଶୁନି ତମର୍ ଲେଖେଁ ଅତିଥି ଆମ୍ ବୁରେଇଁ ଥାକିଛନ୍ । ॥୧୦୮॥

ଏକ୍ ନଜ୍‌ରେଁ ସଭେ ଦେଖନ୍ ତମର୍ ଯିବାର୍ ବାଟ୍
ସେ'ନେ କଥା ବାର୍ତ୍ତା ହେଲେଁ ହେବା ହରିହାଟ୍ । ॥୧୦୯॥

ନାଇଁ ପଲାଉ ପର୍ସାଦ୍ ବେଲା ପଚାର୍ ଉଚାର୍ ଭିତ୍‌ରେଁ
ଆଜ୍ଞା ହଉ ପାହା ବଢ଼ାବାର୍ ଲାଗି ଇତାର୍ ଉଦ୍‌ରେଁ । ॥୧୧୦॥

ଅଡ଼ା ଯୁଆଡ଼ି ଚାଲନ୍ ଜନକ୍ ସାଙ୍ଗେଁ ବିଶ୍ୱାମିତ୍ର
ଭୁଇଁନି ପାଖେଁ ରାମ୍ ଚାଲୁଛନ୍ ଜେବ୍‌ରି ସଉମିତ୍ର । ॥୧୧୧॥

ତାର୍ ପଛ୍‌କେ ମୁନି ମର୍‌ଲୀ ଆର୍ ମିଥିଲାର୍ ଜନ୍
ପୁହୁଁଚିଲେ ଯାଇ ରାଜ୍ ମହଲେଁ ତରାସିଁ ଆସେ ଜନ୍ । ॥୧୧୨॥

ମୁନି କହନ୍ ମୁଦ୍ ଉପର୍‌କେ ବେଲ୍ ଆଏଲାନ ରହୁ
ବେଲ୍‌ହଉ ବସି ଛିନ୍‌ମା ବୁହେ ମିଥିଲାନେ ଘି' ମହୁ । ॥୧୧୩॥



# ପାଉଚ୍-୨

# ସ୍ୱୟଂବର ସଭା କଥା

ବେଲ୍ ଯାଉଛେ ଖେଲ୍‌ଲା ଲେଖେଁ ତଲ୍‌କେ ଢଲ୍‌କି ଢଲ୍‌କି
ତର୍ ତରାନୁ ଖରା ଆସେ ବେଦୀ ତରାକେ ଛଲ୍‌କି । ॥୧॥

ନୂଆଁ ଭାବେଁ ଗାଆନ୍ ମୁନି ମାଆଁର୍ ନାଆଁ ନେଇ
ଭୋଲ୍ ହଇଛନ୍ ସଭା ସାରା ପୂରା ମନ୍‌ଚିତ୍ ଦେଇ । ॥୨॥

ନମେଁ ମାଗୋ ! ପର୍‌ମେଶରୀ ମାଆଁ ସାରା ସୃଷ୍ଟିର୍
ନାଆଁ ଦିଅନ୍ ଭଗତ୍‌ମାନେ ନିଜର୍ ନିଜର୍ ଦୃଷ୍ଟିର୍ । ॥୩॥

ପାଁଚିଭୂତ୍ ତ ତୁଇଁ ମା ! ଯେ ଦେଖେ କ୍ଷିତି ଥିଁ
କ୍ଷିତିର୍ ଝି ମିତ୍ତରି ବିଶ୍ଵ ତାହାକେ ତାର୍ ନୀତି ଥିଁ । ॥୪॥

ସାଗର୍ ସୁତା ତାର୍ ଆଖିଁ ନଜର୍ ଯାର୍ ପାନି
ତେଜ୍‌ଦିହଲ୍‌ଲା ଲୋକ୍ ତ ତତେ ଜ୍ୟୋତିର୍ମୟୀ ଜାନି । ॥୫॥

ମରୁତ୍ ଭିତ୍‌ରେଁ ଦେଖ୍‌ଲେଁ ଆଉ ବାଙ୍ମୟୀ ତୁଇଁ ବାଣୀ
ବ୍ୟୋମ୍ ଦର୍‌ଶୀର୍ ଲାଗି ତୁଇଁ ଶୂନ୍ୟ ସନାତନୀ । ॥୬॥

ନାରାୟଣର୍ ଶକ୍ତି ତୁଇଁ ମାଆଁ ନାରାୟଣୀ
ବ୍ରହ୍ମ ଦର୍‌ଶୀର୍ ଲାଗି ଆଉ ତୁଇ ପରମ୍ ବ୍ରହ୍ମାଣୀ । ॥୭॥

ଶିବର୍ ଶକ୍ତି ଶିବା ମା ଶାନ୍ତ ଭାବେଁ ଶଙ୍କରୀ
ପଲେ'ଥିଁ ଯାର୍ ଲୟେ ତାର୍ ତୁଇଁ ପର୍ଲେକରୀ । ॥୮॥

ଜୁଏ ଦେବ୍‌ତାର୍ ଜଲନ୍ ଶକ୍ତି ଜଲର୍ ଶୀତଲ୍ ଭାବ୍
ଗର୍‌ହ ନଖତର୍ ଗୁଟ୍‌କ ଖେଲୁ କିଏ ପାଏଲ୍ଲା ଥାବ୍ । ॥୯॥

କ୍ର୍ଵା

ଧରତୀ ଦେବୀର୍ ଝି ତୁଇଁ ସୁରୁଯ୍ ଦେବ୍ତାର୍ ବହ
କାହାର୍ କା'ଣା ନୁହୁ ମା ! ତୋର୍ ମୁହେଁ ହେଲେଁ କହ । ॥୧୦॥

ମୋର୍ ଭିତ୍‌ରେଁ ତୁଇଁ ଅଛୁ ତୋର୍ ଭିତ୍‌ରେଁ ମତେ
ତୋର୍ କରି ରଖ୍‌ତୁ ହେଲେଁ ବୋଝ୍ ହେତିଁ କାଏଁ ତତେ । ॥୧୧॥

ତୋର୍ ଭିତ୍‌ରେଁ ଥାଇ ଗାଏତିଁ ତୋର୍ ଗୁନ୍‌ଗ୍ରାମ୍
ମୋର୍ ସର୍‌ବସ ମୁଇଁ ପଣିଆଁର୍ ମେଟି ଯାଏତା ନାମ୍ । ॥୧୨॥

ଶକ୍‌ତି ତୁଇଁ ପର୍‌କୁତି ତୁଇଁ ମୁନୁଷ୍ ତୋର୍ ବିନେ
ମୁର୍ଦ୍ଦାର୍ ହଇଁ ଥିସି ସବୁଠାନେ ସବୁଦିନେ । ॥୧୩॥

ମିଥିଲାର୍ ଆଏ ଭାଏର୍ ଉଷତ୍‌ଥିଁ ଆଏଜ୍ ଉତ୍‌କୁଛେ
ଆନନ୍ଦ ମୂର୍‌ତି ରାମ୍‌କୁଁ ଦେଖି ଦୁଖର୍ ଗୋଠ୍ ବଡ୍‌କୁଛେ । ॥୧୪॥

ଆଗୁଁ ଇନିର୍ ଲୁକ୍‌କୁଁ ଦିଶେ ସବୁ ଆତ୍ମା ଗୁଟେ
ଦିହ୍ ଦୁଇଖଣ୍ ହାଡ୍ ରକତ୍ ପଷେ ମାଉଁସ୍ ଫୁଟେ । ॥୧୫॥

ଚରମ୍ ରୂପ୍ ଆତ୍ମାର୍ ପରମ୍ ଆତ୍ମା ଆତ୍ମାରାମ୍
ଦେଖି ଜାନ୍‌ଲା ଲୁକ୍‌କୁଁ ଆଏଜ୍ ସେନ୍ତା ଦିଶନ୍ ରାମ୍ । ॥୧୬॥

ଦେହ୍-ଦଉଳର୍ ଦେବ୍‌ତାକେ ଜନକ୍ ରଜା ଜାନିଛନ୍
ପୁଓ ପର୍‌ଜା ଦେଖିନେବେ ମହା ସଉକେଁ ଆନିଛନ୍ । ॥୧୭॥

କାହାକେ ଦିଶନ୍ ରାମ୍ କିଶୋର୍ କୁମାର୍ ରଜାପିଲା
ସୁନ୍ଦର୍ ବଏଲେଁ ଏତ୍‌କି ସୁନ୍ଦର୍ କେନେ କାହିଁ ଥିଲା ? ॥୧୮॥

ଦିହ୍-ଲଲେହ୍‌ଇ ନାରୀ ମାନ୍‌କୁଁ ଶୋଭା ସବୁର୍ ଖଦାନ୍
ଆନିର୍ ବାନିର୍ ମାଏନ୍ ମନ୍‌ସା ଇଏ ଆନ୍ ନ ନିଦାନ୍ । ॥୧୯॥

ସାରା ଜଗତ୍-ଜୀବନ୍-ନାରୀର୍ ଇଏ ନ ପରମ୍ ପତି
ଆଏଲା ଗଲା ଜଗତ୍ ଲାଗି ଆ'ନ୍ ଚରମ୍ ଗତି । ॥୨୦॥

ଜନକ୍ ରଜାର୍ ରାଜ୍‌ମହଲେଁ ବିରାଜି ଅଛନ୍ ଆଏଜ୍
ରାମ୍ ରାମାନୁଜ୍, ଦଏବୀ ହେଲା କାଏଁ ସାହେୟ୍ । ॥୨୧॥

ରାନୀ ଜାନି ସାନି ହଉଛନ୍ କାମ୍ ବାହାନାକେ ଆସି
ନିଜର୍ ଦାସ୍ ତ ନିଜେଁ ନୁହନ୍ କାହିଁ ପାଏବେ ଦାସୀ ? ॥୨୨॥

ରନ୍ଧା ନିଜେଁ ଲାଗି କରୁଛନ୍ କୁନୁଆଁ ମାନ୍‌କର୍ ମାଏନ୍
କେଭେଁ ପାଏବେ ? ଆଏଜ୍ ପାଇଛନ୍ ସାରା ଶକ୍ତିର୍ ଖାଏନ୍ । ॥୨୩॥

ଖିଆ ପିଆ ସର୍‌ଲା ରାଏତ୍ ବଢି ବଢି ଆଉଛେ
ଝୁମ୍‌ରା-ରାଏଜ୍ ଝିଁକାରୀ ସୁରେଁ ପର୍‌ଘାନୀ ଗୀତ୍ ଗାଉଛେ । ॥୨୪॥

ସେନ୍‌କେ ଯିବେ ଋଷି ହାଇ ମାରିଁ ହେଲେ ବାହାର୍
ରାମ୍ ଲକ୍ଷ୍ମଣ୍ ଗୁରୁ ପାଦ୍ ସେବାର୍ କାଯେଁ ତିଆର୍ । ॥୨୫॥

ଋଷି କହନ୍ 'ନାଇଁ' 'ନାଇଁ' ନିଦ୍ ରାଏଜର୍ ରାନୀ
ତୁମ୍‌କୁଁ ଘାଏ କୁଡାବାକେ ହଏ ଘଟିଁ ସାନି । ॥୨୬॥

ତାର୍ କୋଡ୍‌କେ ଯାଇ କୁମାର୍ ଆଗୁଁ କର ତୋଷ୍
ଘଁଷି ମାଜି ସାଉଁଟି ନେବା ବାଟ୍ ଚାଲ୍‌ବାର୍ ରୋଷ୍ । ॥୨୭॥

ଚରେ ଡାକେ ସକାଲ୍ ପାହେ ଉକିଆ ଆସେ ଚହଲି
ନିଦ୍-ପିଁଜରୁଁ ଜୀବନ୍ ବାହାରି ଲଗେଇ ନେଲା ଗହଲି । ॥୨୮॥

ସନ୍ଧ ଦିନିଆଁ ସକାଳ୍ କବାର୍ ବିଶ୍ୱାମିତ୍ର ସାରି
ବସନ୍ ରାମ୍ ଲକ୍ଷ୍ମଣ୍ ଆସି ବସ୍‌ଲେ ମୁଡିଆ ମାରି । ॥୨୯॥

ଆଶିଷ୍ ଦେଇ ଆଉଁସି ଆନ୍‌ଲେ ଦୁହି ଭାଇକର୍ ଦେହେ
ମହା ଆଦ୍‌ରେଁ ଦର୍‌ଲି ନେଲେ ହୁର୍‌ଦର୍ ସବ୍ ସେନେହେ । ॥୩୦॥

ଋଷି କହନ୍ ହଁସି ହଁସି ମିଥିଲାର୍ କଥା ଘାଏ
ଉଷତ୍ ହଇଁ ମନ୍‌ଚିତ୍ ଦେଇ ଶୁନନ୍ ଦୁହି ଭାଏ । ॥୩୧॥

ଘରଲ୍ ବିରଲ୍ ଦେଶ୍ ମିଥିଲା, ଚାଷ୍ ଲୁଙ୍କଲ୍ ବୃତ୍ତି
ଆଁଲସ୍ ନାଇଁ କାଲ୍ କାଲ୍ ଧରି ମନ୍ ସମ୍‌କଲ୍ ଫୁର୍ତି । ॥୩୨॥

ଡଙ୍ଗର୍ ଭାଟିଁ ଡୁଲି ବନାସନ୍ ନଙ୍ଗଲ୍ ଧତ ଚାଷ୍
ଭୁଇଁ ଗର୍‌ଭୁଁ ଲକ୍ଷୀର ଜନମ୍ ହେସି ବାରମାସ୍ । ॥୩୩॥

ଧାରା ଶରାବନ୍ କନ୍‌କନି ଶୀତ୍ ରଠଖରା ନାଇଁ ମାନି
ଦିହ୍‌କେ ସଁପି ମନ୍ ଅର୍‌ପି ଆନନ୍ ଫସଲ୍ ଛାନି । ॥୩୪॥

ଦିହ୍‌ଟା ନୁହେ ବଡ ଇତାକୁଁ ସଭେ ଆତମ୍ ଦରଶୀ
ହେଁଥିର୍ ଲାଗି ବିଦେହ ଦେଶ୍ ବଲି ନାଆଁ ପରସି । ॥୩୫॥

ଦିହର୍ ଦୁଖେଁ ନିଘା ନାଇଁ ମନ୍ ସୁଖେଁ ଅଘଉଛନ
ମର୍‌ତେଁ ଥାଇଁ ସରଗ୍ ଆତ୍‌କେ ଅନୁଖନୁ ଅଗଉଛନ୍ । ॥୩୬॥

ରଜା ପର୍‌ଜା ଗୁଟେ କଟେଁ କାଟ ନଉଛନ୍ ଦିନ୍
ହୀନ୍ ନୁହେ କାହାରି କବାର୍ ମନ୍‌ନୁହେ କା'ର୍ ଦୀନ୍ । ॥୩୭॥

ପର୍‌ଜାର୍ ଅନ୍‌ଭବ୍ ପାଏବେ ରଜା ଧରନ୍ ନଙ୍ଗଲ୍
ହଜାଇ ନେସନ୍ ନିଜ୍‌କେ ରଜା ଖୁଜିଁ ପର୍‌ଜାର୍ ମଙ୍ଗଲ୍ । ॥୩୮॥

ଘର୍ ଦୁଆରୀର୍ ଆଚାର୍ ବେଭାର୍ ରଷିର୍ ରକମ୍ ବିଚାର୍
ଦୁର୍‌ଦଶା ନାଇଁ ପର୍‌ଜାର୍, ନାଇଁ ରଜାର୍ ଅତ୍ୟାଚାର୍ । ॥୩୯॥

ବାହା ବର୍କସି ନାଇଁ ଚଲେ ନାଇଁନ ବଦ୍‌ମାସି
ରାବଣ୍ ବାଣାସୁର୍ ବାଗିର୍ ଲୋକ୍ ଡରେଁ ପଲାସି । ॥୪୦॥

ନଙ୍ଗଲ୍ ଗାରର୍ କମାନିନେ ନାଇଁନ ବେଇମାନି
ଲୁଟ୍‌ବା କିଏ ରଜା ପର୍‌ଜାର୍ ଯୋଟ୍‌କେ ନାଇଁ ମାନି । ॥୪୧॥

ଯେ ଯେନ୍ତା ଜାନ୍‌ସି କର୍‌ସି ଦେ' ଦେବ୍‌ତାର୍ ପୂଜା
ପୂଜାର୍ ପର୍‌କାର୍ ନେଇ ନାଇଁ କାହିଁ ଲଡା ଯୁଝା । ॥୪୨॥

ଗରିବ୍ ନାଏଁନ୍ ବିଲ୍‌କୁଲ୍, ନାଇଁ କେତ୍‌ନି କେତେ ଧନୀ
ଯେ ଯେନ୍ତା କହେସି ଥିସି ସେନ୍ତା ତାର୍ କରନି । ।।୪୩।।

ଜନ୍ କଏଲାନ୍‌କାରୀ ଜନକ୍ ପୁହୁଁଚି ଆଏଲେ ସେନ୍‌କେ
ଦେଖି ହେସି ଲେଖି ନୁହେ ମାଏନ୍ ଲେନ୍ ଦେନ୍‌କେ । ।।୪୪।।

ଆଏଁଖି ମିଟ୍‌କା ପରେ ନାଇଁ ରଜା ଦେଖିଁ ରାମ୍
ଯେତେ ଦେଖିଲେ ବି ନାଇଁ ଅଟ୍‌କେ ସେ ଦେଖିବାର୍ କାମ୍ । ।।୪୫।।

ବାଟ୍ ଦୁଆରେଁ ଦେଖାନ୍ ଜମା ଠାଡ୍ ପଟୁଆ ଲୋକ୍
ରାମ୍‌କୁଁ ଦେଖିଁ ମେଟେଇ ନେବେ ଆଁଖିର ଆଖ୍‌ରି ଭୋକ୍ । ।।୪୬।।

ସବୁଦିନେ ତ ପରଜା ଛାଡିଁ ନାଇଁ କରି କିଛି ଭୋଗ୍
ଆଏଜ୍ କାଁ କରି ଛାଡବେ ଯେବେଁ ଯୁଟି ଯାଇଛେ ଯୋଗ୍ । ।।୪୭।।

ରାମ୍‌ନେ ଅଛେ ଯେନ୍ ଅସରା ପସ୍‌ରା ସୁନ୍ଦରାପନର୍
ମୁଇଁ ତ ଦେଖେଁ ସାପୁଲ୍ ହଉ ଆଁଏଖି ମିଥିଲା ଜନର । ।।୪୮।।

ଦୁହି ଭାଇକୁଁ ଦେଖି କହନ୍ "ବାପା ମାନେ! ତୁମର୍
ପାହା ଧୂଏଲ୍ କେ ପାଏବାର୍ କେ ଆଶ୍ ଅଛେ ଆମର । ।।୪୯।।

ଇ ମିଥିଲା ଜାଗା, ଘାଏ ନାଇଁ ଆଏତ ବୁଲି ?
ଦେଖିତ ଲୁକର୍ ଚାଲି ଚଲନ୍ ଶୁନ୍ ତ ବାର୍‌ତା ବୁଲି ।" ।।୫୦।।

ଏତ୍‌କି ଶୁନି ଗୁରୁ ମୁହଁକେ ଦେଖିଲେ ଦୁଇ ଭାଏ
ମୁନି କହେଲେ 'ଯ' ବି ଯେ କିନ୍ଦ୍‌ରିଁ ଆଏବ ଘାଏ' । ।।୫୧।।

ସୟଂବର୍ ସଭା ଯିମା ବିଲମ୍ କରବ ନାଇଁ
ଶିବ୍‌ଧନୁକେ ଦେଖିମା ବଲିଁ ଆଇଛୁଁ ପରେ ଧାଇଁ । ।।୫୨।।

ଏତ୍‌କି ଶୁନି ରାମ୍ ଲକ୍ଷ୍ମଣ୍ ରାଜ ଡାଁଡ଼ନ ଠିଆ
ଠୁଁଡି ହେଲେ ଲୋକ ଶ'ଶ' ଯୁହାର୍ ଦିଆନିଆ । ।।୫୩।।

ସମ୍ ବଏସିଆ ସାଙ୍ଗ ସରସିଆ ପିଲା ଗୁହୁତା ଆସି
କଢେଇ ବୁଲନ୍ ଖୁଏଲକେ ଖୁଏଲ୍ ଉଷଦ୍ ସାଗ୍‌ରେଁ ଭାସି । ॥୫୪॥

କେ ମିଶିଁ ଯାଏ ଘଁଷିହଇଁ ତାମ୍‌ଡି ଦେଖେ ଦିହ୍
ଆଁଖିର୍ ହାତେଁ ଅଁଡାଲି ଆନ୍‌ଏ ସୁନ୍ଦର୍ ପନର୍ ନିହ୍ । ॥୫୫॥

ରାମ୍ ଦେଖୁଛନ୍  ଆଶ୍ରିୟ୍ ହଇଁ ସମାନ୍ ଘର୍‌ବାରି
କେନ୍‌ଟା ରଜାର୍ କେନ୍‌ଟା ପ୍ରଜାର୍ ନାଇଁ ହେବାର୍ ବା’ରି । ॥୫୬॥

ରାଜ୍ ଡାଙ୍‌ନେ ସଭେ ହାଜର୍ ଭିତ୍‌ରେଁ ନାଏଁନ୍ କିହେ
କିଏ ରହେବା ? ସୁନ୍ଦର୍ ପନ୍ ତ ମୂର୍‌ତି ଧରି ନିଏ । ॥୫୭॥

ସହର୍ ସାରା ଦେଖି ନିଅନ୍ ଛାଡି ନାରୀ ମୁହୁଁ
ନାରୀ କହନ୍ ଆମେମାନେ ଭାଏଗବାନୀ ତ ନୁହୁଁ । ॥୫୮॥

ରାମ୍ ଲକ୍ଷ୍ମଣ୍ ଗଲା ପରେଁ ଜନକ୍ କଉଶିକ୍ ଦୁହେ
ତାକର୍ ତାକର୍ କଥା ବାର୍‌ତା ଗହେରୁଁ ଗହେର ହୁଏ । ॥୫୯॥

ଜନକ୍ କହନ୍ ଜନମ୍ ସାରା ଯେନ୍ ରୂପ୍ ଥିଲି ସଁଚି
ରାମ୍‌କୁଁ ଦେଖିଲା ବେଲୁଁ ତାହା ହୁର୍‌ଦେଁ ଯାଏ ରଁଚି । ॥୬୦॥

କଲ୍‌ପନାକେ କଲ୍‌ବଲ୍ କରି ଲେଖୁଥିଲିଁ ଯେନ୍ ରୂପ୍
ରାମ୍‌କୁଁ ଦେଖି ଟେରେଷ୍ଟା ସବୁ ପଡି ଗଲେ ନ ଚୁପ୍ । ॥୬୧॥

ଦିହର୍ ବଫୁ ମନର୍ ବଲ୍ ଦେଖିବାର୍‌କେ ଯୁଖି
ରଖା ହଇଛେ ଶିବର୍ ଧନୁ ପନର୍ ଲେଖେଁ ଉଖି । ॥୬୨॥

ସୀତା ପାଏବାର୍ ଲୋଭ୍ ସାଙ୍ଗେଁ ବଫୁର୍ ଅଭିମାନ୍
ନେଇଁ ଆଏଲେ ବାଣା ରାବଣ୍ ପାଏଲେ  ଅପମାନ୍ । ॥୬୩॥

କା’ଣା କହେମି ତୁମ୍‌କୁଁ ଋଷି ! ତୁମେ ସବୁ ଜାନ୍‌ଅ
ତୁମେ ବି ତ ସବୁ ଦିହେଁ ମହାପ୍ରୁ ଥିବାର୍ ମାନ୍‌ଅ । ॥୬୪॥

ସତ୍‌କେ ସତ୍ ସୀତାର୍ ନେ ମୋର୍, ପର୍‌କୁତି ହଏ ଦୁରୁଶ୍
ପାଏବା ସଥେଁ ଆଏବା ଯଦ୍‌ରି କେଭେଁ ପରମ୍ ପୁରୁଷ୍ । ॥୬୫॥

ପରମ୍ ପୁରୁଷ୍ ବାଆରିବାକେ ଅଛେ ଶିବର୍ ଧୁନ୍
ପାଏବା ସୀତା ଯେ ପାର୍‌ବା ଚଢ଼େଇ ତାହିଁ ଗୁନ୍ । ॥୬୬॥

ସମିଆ ହେଲା ଋଷି ଏତ୍‌କେଁ ଯଜ୍ଞ ଠାନ୍‌କେ ଯିମା
ଉଦ୍‌ବେଗ୍ ଲାଗେ ଗୁନ୍ ଦେଇ କେ ନେବା ସୀତାର୍ ଜିମା । ॥୬୭॥

ରଜା ଋଷି କୁନୁଆଁ ମଏତର୍ ସମ୍‌କୁଁ ଦେଖ୍‌ସିଁ ଘାଏ
ମନାଗୁନା ନାମ୍ ବଦ୍‌ନାମ୍ ନିଜର୍ ହିଁ ତ ଥାଏ । ॥୬୮॥

ଦୁହି ଭାଇକୁଁ ଧରି ଆଏବ ପଠେଇ ନଉଛେଁ ରଥ୍
ରଜା ପିଲା ଆ'ନ୍ ଚଢ଼ିଥିବେ ଧୁନେ ସାମ୍‌ରଥ୍ । ॥୬୯॥

ବିଶ୍ୱାମିତ୍ର କହନ୍ ଇ ପାହେ ବାଟର୍ ଲାଗି
ରଥ୍ ଜରୁରତ୍ ନାଇଁ ଚାଲି ଚାଲି ଯିମୁଁ ଭାଗି । ॥୭୦॥

ବିହଟା ଏକେଁ ରଥ୍‌ଟେ ଆଏ ତାହାକେ କେନ୍ ରଥେଁ
ମୁ[illegible] ନ ଯିମୁଁ ଯଜ୍ଞନିକେ ଦର୍‌କାର ନାଇଁ ସତେଁ । ॥୭୧॥

ପୁଲ୍‌କିଲାମନ୍ ଜନକ୍ ରଜାର୍ ଗଲେ ମୁଲ୍‌କି ହଁସି
ଦୁହି ଭାଇ ଆସି କଉଶିକ୍ ପାଶେଁ ଗଲେ ବସି । ॥୭୨॥

ଋଷି କହେଲେ "ବାହାର ବାବୁ ! ଯିମା ସଭାଠାନ୍‌କେ
ଦେଖ୍‌ମା ହେଲେଁ ଶିବ୍ ଧନୁନେ ରଜାମାନ୍‌କର୍ ଟାନ୍‌କେ । ॥୭୩॥

ସୟଂବରର୍ ଆଡଂବର୍‌କେ କେନ ହେବା କହି
ଦେଖନ ହାରୀର୍ ଆଏଁଖ୍ ଯାହିଁ ଦେଖେ ଯାଏରହି । ॥୭୪॥

ମୁନି ଲାଗି କୁଶେଁ ବୁନି ପକା ହଇଛେ ଆସନ୍
ତପ୍-ସରବସ ଋଷି ଆସି ହରଷ ମନେ ବସନ । ॥୭୫॥

ରଜା ପର୍‌ଜା ସମ୍‌କର୍ ଲାଗିଁ ସଜା ହଇଛେ ଠାନ୍
କାହାରି ଲାଗି ବଡ଼୍ ନୁହେ କି କାହାରି ଲାଗି ସାନ୍ । ॥୭୬॥

ଶିବ୍ ଧୁନ୍ ଯେନ୍ ଥୁଆ ହଇଛେ ମରା ହଇଛେ ମଚା
ଯେ ଯେନ୍‌ଠାନେ ବସିଥିଲେଁ ବି ଦିଶୁଥିବା ପର୍ଛା । ॥୭୭॥

ବା'ରି ହଉଛେ ନାରୀ ମାନ୍‌କର୍ ବସି ଦେଖିବାର୍ ଠାନ୍
ସଜା ତାହିଁ ମୋତି ହୀରାନୀଲା ରତନ୍ ମାନ୍ । ॥୭୮॥

ସେ'ନୁ ଦିଶ୍‌ବା ସଭାର୍ ସବୁ ତାହାକୁଁ ନୁହେ ଦେଖି
କେତେ ସୁନ୍ଦର୍ କେନ୍ କଲ୍‌ମେ ହେବା ହେଲେଁ ଲେଖି । ॥୭୯॥

ଭିନ୍ ବଏସର୍ ନାରୀମାନେ ସିଡି ଚଢ଼ି ଯାଉଛନ୍
ଦେଖନ୍ ହାରୀ ଆଏଁଖିମାନେ ତଲ୍ ଉପର୍ ହଉଛନ୍ । ॥୮୦॥

ପରୀ ହାରିଁଯିବା ବାଗିର୍ ସୁନ୍ଦର୍ ସବୁ ନାରୀ
ସେଥିଁ କିଏ ଭାଏଲ୍ ଥିବେ ସୀତା ନୁହେ ବା'ରି । ॥୮୧॥

ଘେରି ରହିଛନ୍ ସଖୀ  ଚାରି ପାଖେଁ ଆଏଲେ ସୀତା
ବାକି କଥା ଛାଡ଼ ହୀରା ସୁନା ପଡ଼୍‌ବେ ଶିଠା । ॥୮୨॥

ଛାଆନିକେ ନାଇଁ ପଶୁନୁ ବେଲର୍ ଧାସ୍ ପାଇ
ଝଲ୍‌ମଲାଲା ସଭା ବିଜ୍‌ଲି ଗଲା ଲେଖେଁ ଛାଇ । ॥୮୩॥

ବଡ଼୍ ଭାଗିଆ ରଜା ମାନ୍‌କର୍ ଚେ଼ହେରା ଗଲା ଉତ୍‌ରି
ଧୁନର୍ କଥା ଶୁନି ଆଗୋ ମନ୍‌ମାନ୍ ଥିଲା ବୁତ୍‌ରି  । ॥୮୪॥

ଜାନ୍‌ଲା ଗୁନ୍‌ଲା ଲୋକ୍ ଭାବ୍‌ଲେ ଆଏ ଜଗତ୍-ଶକ୍ତି
ହଜ୍‌ଲେ ନିଜେଁ ଉଜ୍‌ରିଁ ଗଲା ନିଜର୍ ନିଲଜ୍ ବଡ଼୍‌ତି  । ॥୮୫॥

ରୂପ୍ ଲଲ୍‌ହିଆ ରଜାମାନ୍‌କର୍ ଥିପିଁ ପର୍‌ଲା ଲାଲ୍
ଏତା ସୁନ୍ଦର୍ ଦେଖାନାଇଁ, ନାଇଁ ଶୁନି କେନ୍ କାଲ୍ । ॥୮୬॥

ପାଏବାକେ ଜୀବନ୍ ଯଦ୍‌ରି ଯିବା ହେଲେଁ ଯାଉ
ରୂପ୍-ପୂଜାନେ ଜାନ୍ ଗୁଆଁବାର୍ କଥା ରହି ଆଉ । ।।୮୭।।

ଦେଖ୍‌ତେ ସାଏର୍ କେତେ ରଜାର୍ ଜାଙ୍ଗଲ୍ ଯାଏ ପଡି
ଆଶାର୍ ଗଛେଁ ଧଏଲା କଷିଁ ବଖ୍‌ଲିଁ ଗଲା ଝଡ଼ି । ।।୮୮।।

ଗିଆନୀ ଧିଆନୀ ମୁନିମାନେ ରହେଲେ ହାତ୍-ଯୁଡ଼ି
ଦେଖ୍‌ଲା ରୂପ୍‌କେ ସାଆଁଟିବାକେ ସାଜନ୍ ହୁରୁଦ୍-ଝୁଡି । ।।୮୯।।

ସୀତା ସମ୍‌କୁଁ ଅବଶ୍ କରି ଆବ୍‌ରି ନେଲେ ଆସନ୍
ରଜା ମାନ୍‌କର୍ ବୁଧି ବେଉସା ନାଇଁ ମାନ୍‌ଲା ଶାସନ୍ । ।।୯୦।।

ରଜାମାନେଁ ମନ୍ ଭିତ୍‌ରେଁ ହଇ ଯାଉଥାନ୍ ଆଉଟି
ରାମ୍ ପୁହୁଁଚି ମନ୍‌ଚିତ୍ ସବୁ ସାଏଁନୁ ନେଲେ ସାଉଁଟି । ।।୯୧।।

ବିଶ୍ୱାମିତ୍ର ରାମ୍ ଲକ୍ଷ୍ମଣ୍ ସଭାଠାନେ ଉଭା
ମର୍‌ତ ପାଶ୍‌ରିନେଲେ ଦେଖିଁ ମୂର୍‌ତି ମନ୍‌ଲୁଭା । ।।୯୨।।

ମୁନି-ମନ୍-ସମୁଦର୍‌ନେ ଉଛ୍‌ଲିଁ ଆଏଲା ଜୁଆର୍
ମନ୍ ଭିତ୍‌ରେଁ ସନ୍‌ମାନ୍‌ନେ ସଭେ କଲେ ଯୁହାର୍ । ।।୯୩।।

ରଜାମାନ୍‌କର୍ ସାଙ୍ଗେଁ ସମ୍‌କର୍ ନଜ୍‌ର ହଇଁ ଏକ୍
ରାମ୍-ରୂପ୍‌ନେ ଗୁଲେଇଁ ହେଲା ଘୁଲେଇଁ ଗଲା ଟେକ୍ । ।।୯୪।।

ସୁନ୍ଦର୍‌ପନର୍ ସାଙ୍ଗେଁ ଖେଁଚି ହଇଛେ ଅଙ୍ଗେ ଅଙ୍ଗେଁ
କେତେ ଯେ ବଲ୍ କିଏ କଲ୍‌ବା ଦିହର୍ ଶାମଲ୍ ରଙ୍ଗେଁ । ।।୯୫।।

ରାମ୍-ଲକ୍ଷ୍ମଣ୍ ଆଖି ପାଖି ମଝିଁ କଉଶିକ୍ ବାବା
ଆସ୍‌ତେ ସାଏର୍ ଦେଖି ଦେଖନ୍‌ହାରୀ ହେଲେ କାବା । ।।୯୬।।

ନାରୀ ବସ୍‌ବାର୍ ମଚା ଉପ୍‌ରୁଁ ଶ'ଶ' ଯୁଡ଼ି ଆଏଁଖି
ରାମ୍ ଆଡ଼୍‌କେ ଉଡ଼ିଁ ଆଏଲେ ବାଁଧିଲା ବାଗିର୍ ପଏଁଖି । ।।୯୭।।

ସୂରୁଯ୍ କୁଲର୍ ସୂରୁଯ୍ ଦେଖିବା ବଲି ଯାଉଛେ ଉ ଠି
ପୁରନି ବନ୍ଧ କାଣ୍ଡେଁ ପୂରନୁ ଯାହିଁ ପଦୁଁ ଯାଇଛେ ଫୁଟି । ।।୯୮।।

ଠିକ୍ ସମିୟା ଜାନି ଜନକ୍ ଶିବ୍ ଧୁନ୍‌କେ ଦେଖେଇଁ
କହେଲେ ଯେ ଗୁନ୍ ଚ଼ଢ଼ାବ ସଭା ଭିତରେଁ ଏଖେଇ । ।।୯୯।।

ତାହାର୍ ବାହା'ର୍ ବଲ୍‌କେ ଆଦ୍‌ରି ନେବା ମଏଥିଲୀ
ବନିହାଁ ଦିନୁ ଉନିଆ ନୁହେ ଇ'ପନ୍ କରିଥିଲିଁ । ।।୧୦୦।।

ଧୁନ୍ ଟାକିଛେ ଗୁନ୍ ଚ଼ଢ଼ାବ ଆସ ପାର୍‌ବ ଯିଏ
ସୀତା-ପାଏବାର୍ ଲୋଭ୍ ଜନ୍‌କେ ଜନ୍ କଢ଼େଇ ନିଏ । ।।୧୦୧।।

ଧନୁ ପାଶ୍‌କେ ଯାଇ କିଏ ଚୁପ୍ ଚାପ୍ ଫିରି ଆଏଲା
ଛିଇତେ ସାଏର୍ ମୂର୍‌ଛିତ୍ ହଇଁ ଘଡ଼୍‌କେଁ ଚେ଼ତା ପାଏଲା । ।।୧୦୨।।

ଧୁନ୍‌କେ ଠେଠେଇ ହଉନୁ କିଏ ଛିଛ଼ରି ପରେ ଭଠାକେ
ସଁଭ୍‌ରି ଫେର୍ ସୁମ୍‌ରି ନିନ୍ଦେ କପାଲ୍ ତାର୍ ଫଟା କେ । ।।୧୦୩।।

ଖନ୍ଦର୍ ପଛରା କମର୍‌ନେ କେ କଷି ହୁଏ ଭିରି
ବୀର୍-ବାଗିର୍ ଶିର୍‌କେ ଟେକି ଘାଏ ଆଏବାକେ ଫିରି । ।।୧୦୪।।

ଯେନ୍ ରଜା ତାର୍ ଆଖେଁ ପାଖେଁ ବଲାଏ ବଲ୍‌ବାନ୍
ହାତ୍ ଲଗାଇ ଧୁନ୍‌କେ ଫିରେ ହଇ ନ ହତ୍‌ମାନ୍ । ।।୧୦୫।।

ବର୍‌କଷ୍ କେନ୍ ରଜା ନିଜ୍‌କେ ଭାବିଁ ଯାଏ ତର୍‌ସର୍
ଧୁନ୍‌କେ ତଲୁଁ ନାଇଁ ଉଠାନ୍ତୁ ହେଲା ଝାଲ୍ ସର୍‌ସର୍ । ।।୧୦୬

ଅଁଟେ ଉପର୍ ଉଠେଇ କିଏ ପରେ ଗୁର୍ ମୁସେଇଁ
ଚିପି ଧୁନେ ଚି଼ପିଁ ହେଲା ନାଇଁ ହଏ ଖସ୍‌ରେଇଁ । ।।୧୦୭।।

ଚେ଼ରେଷ୍ଟା କଲେ ବନ୍‌ଏ ବନ୍‌ଏ ରଜା ଛନ୍‌ଏ ଛନ୍‌ଏ
ଯାହିଁ ତାହିଁ ହେଲେ କାହିଁ କିଏ ପାର୍‌ତା ଝନ୍‌ଏ ? ।।୧୦୮।।

ବଛା ବଛା ବୀର୍ ଆସିଁ ପଛା ପଛ୍ ସରୁଛନ୍
ବାକି ଯାହା ଅଛନ୍ ଆଏବାର୍ କାଯେଁ ଅପ୍‌ସରୁଛନ୍ । ॥୧୦୯॥

ସଖୀମାନେ କହନ୍ ଯେ ରାମ୍‌କୁଁ ପାରନ୍ ଦେଖି
ଜେମା କପାଲେଁ ଈଏ ପରେ ହଇଥିତେ ଲେଖି । ॥୧୧୦॥

କାଁ କର୍‌ବ ରଜା ଆମର୍ ଶିବ୍ ଧନୁ ପନ୍ ରଖି
ବିଗ୍‌ଡ଼େଇ ନେଲେ କହେ ଜନ୍‌ଏ ଆର୍ ଜନ୍‌ଏକେ ସଖି । ॥୧୧୧॥

ଏତେ କଅଁଲି ବଏସେଁ ପାଆଁଲି ଥିବା ହେତେ ବଲ୍ ?
ଧୁନ୍‌କେ ଗୁନ୍ ଚ଼ଢ଼ାଲେଁ ଯାଇ ? ରୂପ୍ ତ ପର୍‌ବଲ୍ । ॥୧୧୨॥

ମୋର୍ ଚ଼ଲେଁ ମୁଇଁ ଈ ପିଲାନେ ଜେମା ଦେଇ ସଁପି
କୁଆଁରୀ ହଇଁ ଯାପ୍‌ତିଁ ଜୀବନ୍ ଯୁଗଲ୍ ରୂପ୍ -ଜପିଁ । ॥୧୧୩॥

ମେଛା ତାମ୍‌ଡ଼ି କେ ଆଏଲେଁ ଧୁନର୍ ପାଶ୍‌କେ ପାଶ୍‌କେ
ସଖିମାନେ ହଁସନ୍ କହିଁ ଦେଖିତ ଇତାର୍ ଆଶ୍‌କେ । ॥୧୧୪॥

କେ କହେ ମା ଧର୍‌ତି ! ଜୁଏଁ କର୍‌ବୁ କା, ଈତାକେ
ଜାବ୍‌ଡି ଧରି ଥା ଧୁନ୍‌କେ ନାଇଁ ଛାଡ଼୍‌ନ ପୁତାକେ । ॥୧୧୫॥

ଧନୁର୍ ପାଖୁଁ ଫିରିଫିରି ରଜା ଗଲେ ନ ସରି
ହାଏ ! ଈନ ବୀର୍ ନାଏଁନ ସୀତାର୍ ସମ୍ ସରି । ॥୧୧୬॥

ଲାଜେଁ ସର୍‌ମେ ରଜାମାନେ ସର୍‌ମି ହେଲେ ମଉନ୍
ବଲବାନ୍ ଯେ ଭାବନ୍ ନିଜ୍‌କେ ହଇଁ ଗଲେ ନିଉନ୍ । ॥୧୧୭॥

ବାଲ୍‌ମିକୀ ଦେଖି ବେଲ୍ ବୁଢ଼ିଆ ଖରାର୍ ଲାଲିଆ ରଙ୍ଗ
କହେଲେ ଏଛନି ଏତ୍‌କେଁ ଈ ସଭା କର୍‌ମା ଭଙ୍ଗ । ॥୧୧୮॥

ଈନୁ ଈଆଡ଼େ ଯାହା ହେଲା କାଲିର୍ ସକାଲ୍ ବେଲେଁ
କଥା ବାର୍‌ତା ହେମା ବାବା ! ରାମ୍‌ର୍ ଦୟା ହେଲେଁ । ॥୧୧୯॥



# ପାଉଚ୍-୩

# ଶିବ୍ ଧନୁ ଭଙ୍ଗ୍

ମଙ୍ଗଲ୍ ଆଲ୍ତି ସଲା ସରି ପୂଜା ଉପଚ୍ତାର୍
ବାଲ୍ମିକୀ ଋଷି ରାମେନ୍ କହେବେ କରୁଛନ୍ ବିଚାର୍ । ।।୧।।

ଦେଖ୍ଲେ ଆଜିର୍ ମୁନି କୁମାରୀ ଭିଲେଁ ନାଏଁନ ସୀତା
ସେ ଦିଗ୍ କାଁ କରି ସାରା ସଭା ଦିଶୁଛେ ଶିଠା । ।।୨।।

କାଁ ହେଲା ମା' ନାଇଁ ଆଏଲେ ଖାଁଟ୍ ମୁନି ମନ୍
ସତାଲା କାଏଁ ସତେଁ ମା'ର୍ ସୟଂବର୍ ବର୍ଣ୍ଣନ୍ । ।।୩।।

ପୁଓ ଆଗେଁ ମା'ର୍ ବିହାର୍ କଥା ପର୍ବା ଜାନି
ମା' ମୋର୍ କାଏଁ ନାଇଁ ଆଏଲା ଶଉଚ୍ତା ତ୍ତାର୍ ମାନି । ।।୪।।

ବୁଢ଼ା ହଇଁ ବି ସୋକ୍ କଥାକେ ନାଇଁ ପାର୍ଲିଁ ଭାବି
ଜଗତ୍ ମାତା ମା'ର୍ ନ ମୋର୍ ସବୁ ଘରର୍ ଚ୍ତାବି । ।।୫।।

ଉଚ୍ତିତ୍ ଚ୍ତିତ୍ ଦେଖି ବାବାର୍ କୁଶ କହେଲା ଯାଇ
ସୟଂବର୍ କଥା ଶୁନ୍‌ବେ ସଭେ ରହିଛନ୍ ଚ୍ତାହିଁ । ।।୬।।

କୁଶର୍ କଥା ଶୁନି ଋଷି କହେଲେ "ଓମ୍ ରାମ୍ !
ସମ୍‌କର୍ ରାମ୍ ଶବଦ୍ ମିଶି ଘୁମ୍‌ରିଲା ସେଠାନ୍ । ।।୭।।

ଋଷି କହେଲେ ନାଇଁ ସର୍‌ନୁ ସୀତା ସୟବଂର୍
ଶୁନିଥିଲ ଶୁନ୍ ହଇଥିଲା ରଜା ଆଡ଼ମ୍ବର୍ । ।।୮।।

କିହେ ନାଇଁ ଆଏଲେ ଯହୁଁ ଶିବ୍ ଧନୁର୍ ପାଶ୍‌କେ
କେ ଜାନିଥିଲା ଏନ୍ତା ଢ଼ଙ୍ଗେଁ ଭାଙ୍ଗିବେ ସଭାର୍ ଆଶ୍‌କେ । ।।୯।।

ଧୀର୍ ଭାବେଁ କହେଲେ ଜନକ୍ ବୀର୍ ଶୂଇନ୍ କାଏଁ ମହୀ
କହେବାର୍ କେ ଲାଜ୍ ଶୁନ୍‌ଲେଁ ନାଇଁ ହଏ ସହି । ॥୧୦॥

ଜାନିଥିଲେଁ ଏନ୍ତା କାଏଁ ମାନିଥିତିଁ ପନ୍
ବୃଥା ମୋର୍ ଆଶ୍ ବିଶ୍ୱାସ୍ ସୀତାର୍ ସୁନ୍ଦର୍ ପନ୍ । ॥୧୧॥

ଏତ୍‌କି ଶୁନି ଲକ୍ଷ୍ମଣ୍ ତତ୍‌କ୍ଷଣ୍ ଉଠ୍‌ଲେ ଚମ୍‌କି
ସଭାକେ ମାନି ଟାନି ଘାନି କଥା କହନ୍ ଟାଙ୍କ୍‌କି । ॥୧୨॥

ସୂରୁଯ୍ କୁଲର୍ ସୁରୁ ଛୁଆଟେ ଥିଲେଁ ଧରତୀ ମାତା
ବୀର୍ ଶୂନ୍ ନୁହେ, ଆଏଜ୍ ତ ଅଛନ୍ ରାମ୍ ସାମ୍‌ରଥା । ॥୧୩॥

ସୂରୁଯ୍ କୁଲର୍ ସୂରୁଯ୍ ଆଦେଶ୍ ଦେଲେଁ ଶିବ୍‌ଧୁନ୍
ଗୁନ୍ ଚଢ଼ାବାର୍ ଛାର୍ ଭାଙ୍ଗି କର୍‌ମି ନୁହ୍ଁ ଚୁନ୍ । ॥୧୪॥

ରାମ୍ ଅଲ୍‌ପର୍ ହଁସି ହାତେଁ ଲକ୍ଷ୍ମଣ୍‌କେ ଦାବ୍‌ଲେ
କଉଶିକ୍‌କୁଁ ଦେଖି କା'ଣା କରି ହେସି ଭାବ୍‌ଲେ । ॥୧୫॥

ବିଶ୍ୱାମିତ୍ର କହେଲେ ବାବୁ ! ବିଶ୍ୱେଁ ଈ ଧୁନ୍‌କେ
ତୁମ୍‌କୁଁ ଛାଡ଼ି କେ ପାର୍‌ବା ଚଢ଼େଇ ତାର୍ ଗୁନ୍‌କେ । ॥୧୬॥

ନିର୍ଗୁନ୍ ହିଁ ଗୁନ୍ ଚଢ଼ାବା ଗୁନ୍ ଗୁନାଲେ ଋଷି
ଈଶ୍ୱର୍ ଇଚ୍ଛା ବିଶ୍ୱର୍ ମଙ୍ଗଲ୍ ଜାନିହେଲେ ଖୁସି । ॥୧୭॥

ଗୁରୁ ପାଦେଁ ହୁରୁଦ୍ ଭରି କରି ନମସ୍କାର୍
ରାମ୍ ଉଠ୍‌ଲେ ସାମ୍‌ନେ ହାତ୍ ଯୁଡ଼ି ବାରମ୍ବାର୍ । ॥୧୮॥

ହସି ହସି ଦଶି ଦିଗ୍‌କେ କରି କରି ଯୁହାର୍
ଶିବ୍ ଧନୁର୍ ମଚ୍‌ ଆଡ୍‌କେ ଧୀରେ ହେଲେ ବାହାର୍ । ॥୧୯॥

ଆନନ୍ଦ୍ ମୂର୍ତି ଧର୍‌ତୀ ଉପ୍‌ରେଁ ପକଉନ୍ ପାହେ ପାହେ
କଦ୍‌ମେ କଦ୍‌ମେ ପଦମ୍ ଫୁଲ୍ ଫୁଟି ଫୁଟି ଯାଏ । ॥୨୦॥

ସାଦା ସାଧାରଣ୍ ଲୁକର୍ ମୁହୁଁ ବାହାରେ କାହାରି
ଲୋକ୍ ଭିତରେଁ ଲୁକିଥିଲା ତେଜ୍ ନୁହୁଥାଇଁ ବାଆରି । ॥୨୧॥

ଇ ହଁସ୍ ହଁସ୍ ମୁହ୍ଁ ଏତ୍‌କି ତେଜ୍ ଏଡ଼େ ସୁନ୍ଦର୍
କିହେ କାହିଁ କେଭେଁ ଦେଖିନାହିଁ ଜୀବନ୍ ଭର୍ । ॥୨୨॥

ଦେଖନ୍ ଋଷି ମୁନି ଯୋଗୀ ତପୀ ଯତି-ବର୍‌ତୀ
ଜଗତ୍ ଯାକର୍ ଯେତେ ଜ୍ୟୋତି ହଇଛେ ଗୁଟେ ମୂର୍‌ତି । ॥୨୩॥

ନାରୀମାନ୍‌କର୍ ନଜର୍‌ମାନେ ନାଇଁ ପାରନ୍ ନାରି
ସୁନ୍ଦର୍ ବଏଲେଁ ଇଏ ନ ସୁନ୍ଦର୍ ସହଜେଁ ହୁଅନ୍ ବୀରି । ॥୨୪॥

ସୁନୟନା ରାନୀ ନୟନ୍ ମାତ୍‌ରେଁ ସାର୍ ଯ ।'ର୍
ରୂପ୍ ଅବିର୍ଯ୍ୟା ହଇଁ କହନ୍ ଆଏଁଖ୍ ଥିତା କାଏଁ ଆର୍ । ॥୨୫॥

ମଚ୍‌ଠାନେ ପୁହୁଁଚି ଧୁନ୍‌କେ କରି ନମସ୍କାର୍
ଶକ୍‌ତି ସୁମ୍‌ରୁଁ ତୁର୍‌ତି ନଜର୍ ଗଲା ଉପର୍ ପାର୍ । ॥୨୬॥

ସୀତା-ବଜର୍-ନଜର୍ ସାଙ୍ଗେଁ ହେଲା ମିଶାମିଶି
ଅଦୃଶ୍ ଉନିଆଁ ମାନ୍‌କୁଁ ଖାଲି ଦୁହେ ଦୁହିଁକୁଁ ଦିଶି । ॥୨୭॥

ନଜ୍‌ରେଁ ନଜ୍‌ରେଁ ମନ୍ ଆତ୍‌ମା ହଇଁଗଲେ ଗୁଟେ
ନିଜର୍ ନିଜର୍ ଏକ୍‌ତା ଭାବ୍ ସହଜେଁ ଖାଁଏଁ ଟୁଟେ । ॥୨୮॥

ନିର୍ଗୁନ୍ ନିରାକାର୍ ପରମ୍ ପୁରୁଷ୍ ଚ଼ରମ୍ ଶକ୍‌ତି
ଉତ୍‌ରି ଆଇଛନ୍ ମରତ୍ ଭୂଇଁ ନେଇ ମଧୁର୍ ମୂର୍‌ତି । ॥୨୯॥

ଶକ୍ତିମୟୀର୍ ଶକ୍ତି ଆସି ମିଶେ ପରମ୍ ପୁର୍‌ଷେଁ
ଦେଖନ୍ ହାରୀର୍ ମନର୍ ବଲ୍ ତାହିଁ ମିଶେ ହର୍‌ଷେଁ । ॥୩୦॥

କୁଶେର୍ ଡାଙ୍ଗେ ଧଏଲା ବାଗିର୍ ଧୁନ୍ ଧଏଲେ ରାମ୍
ତାଲି ପର୍‌ଲା ଚ଼ାରି ଦିଗୁଁ ଦୁଲ୍‌କେ ସଭା ଠାନ୍ । ॥୩୧॥

ଗୁଟେ ପାଖ୍‌କେ ତଳେଁ ଜାକି ଆର ପାଖ୍‌କେ ଧରି
ଗୁନ୍ ଲଗଉନ୍ ଧୁନ୍ ଭାଙ୍‌ଲା ମହାନ୍ ଶବଦ୍ କରି । ॥୩୨॥

ସେ ଶବ୍‌ଦେଁ ସଭା ସାରା ଜବ୍‌ଦିଁ ଗଲେ ଚମ୍‌କିଁ
ଆକାଶ୍ ପାତାଲ୍ ପୁର୍ଥୀ ତଲ୍ ଘାଏକେଁ ଗଲା ଧମ୍‌କିଁ । ॥୩୩॥

ନିର୍ଗୁନ୍ ନିରାକାର୍ ଦୁହେ ଧନୁର୍ ଦୁହି କୁତି
ଗୁନ୍ ଚ୍‌ଢୁନ୍ ସଗୁନ୍ ସାକାର୍ ପୁରୁଷ୍ ପର୍‌କୁତି । ॥୩୪॥

ଜଏ ରାମ୍ ଜଏ ସୀତା ଜଏ ଜଏ ସୀତାରାମ୍
ହରିବୋଲ୍ ହୁଲ୍‌ହୁଲି ପରେ ଉଛ୍‌ଲେ ମିଥିଲା ଧାମ୍ । ॥୩୫॥

ରଷି ମୁନିକର୍ ବେଦ୍ ମନ୍ତରେଁ ସଭା ଗଲା ଝଁକ୍‌ରି
ପୁଲ୍‌କିଁ ଗଲେ, ପୁରବାସୀକର୍ ରୁଆଁ ଗଲା ଟାଁକ୍‌ରି । ॥୩୬॥

ପାଶର୍ ପାଶର୍ ଗଛେଁ ଯେତେ ଫୁଟିଥିଲା ଫୁଲ୍
ଦେ ଦେବ୍‌ତାର୍ ଆଶିଷ୍ ମେତାଲ୍ ଗରେଇଁ ହେଲେ କୁଲ୍ । ॥୩୭॥

ସର୍‌ମେ ସର୍‌ମେ ଉଲ୍‌ମି ଗଲା ରଜା ମାନକର୍ ମୁହୁଁ
ରୂପ୍-ଜଗତର୍ ଜିଓ ସୀତାର୍ ଲାଏକ୍ ଆମେ ନୁହୁଁ । ॥୩୮॥

ଧୁନ୍ ଭାଙ୍‌ବାର୍ ସାଙ୍ଗେଁ ଭାଙ୍‌ଲା ରାଜାମାନ୍‌କର୍ ମାନ୍
ଜନକ୍ ରଜାର୍ ଡ଼ର୍ ଭୟେ ଉଲ୍‌ଟିଆ ଅନ୍‌ମାନ୍ । ॥୩୯॥

କେତେ ଢ଼ଙ୍ଗର୍ ବଜା ବାଜ୍‌ଲା ନାଚ୍ ତେତେହୁଁ ଜିତି
ଥିତିଁ ବଏଲେଁ ସେନେ, ବର୍‌ନି ପାର୍‌ତିଁ ସେ ଥିତି । ॥୪୦॥

ଜନ୍ ଯେନ୍ତା ଜନକ୍ ଜେମା ବର୍‌ନ୍ ମାଲା ଧରି
ରାମ୍‌କେ ଅର୍‌ପିଁ ନିଜ୍‌କେ ସଁପି ନେଲେ ଗୁଟା କରି । ॥୪୧॥

ଜନକ୍ ଶତାନନ୍ଦ୍ ବିଶ୍ୱାମିତ୍ର ତିନ୍‌ହି ରଷି
ବିଚ୍ୱାର୍ ଆଚ୍ୱାର୍ କଲେ ମନ୍ ମାନେ ମହାନ୍ ଖୁସି । ॥୪୨॥

ଦଶରଥ୍ ନିକେ ପଲେଇଁ ଗଲା ତୁରତି ଈ ବାରତା
ବିହା ବର୍‌ପନ୍ ଲାଗି ବାପ୍ କକା ସିନା କରତା । ॥୪୩॥

ଯେନ୍ ଦିନୁ ଗଲେ ରାମ୍ ଲକ୍ଷ୍ମଣ୍ ବିଶ୍ୱାମିତ୍ର ସାଙ୍ଗେଁ
ଅବଧ୍ ରଜା, ରାଏଜ୍‌ବାସୀ ଦୁଖିଦ୍ ଲାଗେଁ ଲାଗେଁ । ॥୪୪॥

ଜନକ୍ ରଜାର୍ ଖବର୍ ପାଇ ଉଷଦ୍ ମାରେଁ ଉଦ୍‌କିଲେ
ସାଙ୍ଗ୍ ସରସାକୁଁ କହେବେ ବଲିଁ ଯେ ଯେନ୍ତା ବିଦ୍‌କିଲେ । ॥୪୫॥

କୁଲ୍ ପୁରୋହିଦ୍ ବଶିଷ୍ଠ ରଷି କହେ ଅନ୍‌ସାରେଁ ରଜା
ମିଥିଲା ଯିବାର୍ କାଯେଁ କରାଲେ ସବୁ ସାଜ୍ ସଜା ॥୪୬॥

ସେ ବରାତିର୍ କଥା କେନ ବର୍‌ନି ହେବା ଘାଏ
ହେନ୍ତା ବରାତ୍ ନୁହେ ହଏ ଏତ୍‌କି ଦିନ୍ ଯାଏ । ॥୪୭॥

ଅଟ୍‌କିବାକେ ପଡ଼୍‌ଲେଁ ବି କାହିଁ ବାଟେଁ ଘାଟେଁ
ସମିୟା ନାଇଁ ମାନି ମିଥିଲା ପୁହୁଁଚି ଗଲେ ଠାଟେଁ । ॥୪୮॥

ଜନକ୍ ରଜାର୍ ରଷି ବିଚାରେଁ ରଜାର୍ ମାଏନ୍ ମିଶିଛେ
ପର୍ଘାନିକେ ଭଲ୍ ଉପ୍‌ଚାର୍ ଠୁଲାନ୍ ଯେତ୍‌କି ଦିଶିଛେ । ॥୪୯॥

ବରାତି ସାଙ୍ଗେଁ ପର୍ଘାନିର୍ ଦଲ୍ ସଦ୍‌ଭାବ୍ ନେଇ ମିଶ୍‌ଲା
ଦୁଇଟା ମହା ସମୁଦର୍ ଏକ୍ ହେଲା ଲେଖେଁ ଦିଶ୍‌ଲା । ॥୫୦॥

ବରାତି ଦଲର୍ ସଭେ ଭାବନ୍ ନିଜର୍ ପୁଓର୍ ବିହା
ପର୍ଘାନି କଲା ଲୋକ୍‌କର୍ କାଏଁ ଝି' ହଉଛେ ଦିଆ ? ॥୫୧॥

ମାର୍ ମର୍‌ଦନ୍ ଗାଲି ଝଗର୍ ମାନ୍ ଅଭିମାନ୍
କାହାରି କିଛି ନାଏଁନ ସଭେ ସଦ୍‌ଜନ୍ ସମାନ୍ । ॥୫୨॥

ସରିଁଗଲା ପରଘାନି କାମ୍,ମହାନ୍ ମନା ଗୁନା ଥିଁ
ଡ଼େରା ଦେଲେ ମହଲେଁ ବନା ହଇଥିଲା ସୁନାଥିଁ । ॥୫୩॥

ଜନକ୍ ରାଜର୍ଷିକର୍ ଭାଏ କୁଶଧ୍ୱଜ୍ ଆ'ନ୍
ସାଙ୍କାଶ୍ୟ ଦେଶେଁ ମହାରାଜା ହଇଁ ଥା'ନ୍ । ||୫୪||

ଡ଼କ୍‌ରା ପାଇ ଆସିଥିଲେ ଧନୁ ଉସବ ମେଲାକେ
ଭାଏ ବିରାଦର୍ ଆଏସନ୍ ତ ଭଲ୍‌ମନ୍ଦ୍ ବେଲାକେ । ||୫୫||

ଦୁଇଭାଇର୍ ସାଙ୍ଗେଁ ଥାଇ ଋଷି ଶତାନନ୍ଦ୍
ଦଶରଥ୍‌କର୍ ପାଶ୍‌କେ ଗଲେ ମନ୍ ମହାଆନନ୍ଦ୍ । ||୫୬||

ବଶିଷ୍ଠ୍ ସୁମନ୍ତ୍ ସାଙ୍ଗେଁ ଦଶରଥ୍ ବି ବସିଛନ୍
ମନ୍ ହର୍‌ଷେଁ ରାମ୍‌ରସେଁ ସର୍‌ସରାନୁ ରସିଛନ୍ । ||୫୭||

ଶତାନନ୍ଦ୍ କହେଲେ ଅଛେ ଚ଼ଲାଚ଼ଲ୍ ଧାରା
ବିହା ପୁର୍‌ବୁଁ ପଚ଼୍‌ରା ଉଚ଼୍‌ରା କୁଲ୍ ଗୋତ୍ ସାରା । ||୫୮||

ଗୋତ୍ ନେଇ ରକତ୍ ଆର୍ ବଅଁଶ୍ ନେଇ ବେଭାର୍
କୁଲ୍ ନେଇ ମୂଲ୍ ହଏ ଚ଼ାଲ୍ ଚ଼ଲନ୍ କବାର୍ । ||୫୯||

ହେଁଥିର୍ କାଯେଁ କହି ନଉଛେଁ ନିମି ବଅଁଶର୍ କଥା
ଈ କୁଲ୍‌ନେ ଜନ୍‌ମି ନିମି ମିଥି ସାମ୍‌ରଥା । ||୬୦||

ଦେବ୍‌ରାଜ୍ ଲେଖେଁ ରଜା ଯାର୍‌ନେ ଶିବ୍ ଥୁଇଲେ ଧୁନ୍
ସେ କୁଲେଁ ତ ଜନମ୍ ଜନକ୍ ଚ଼ରିତ୍ ଅନାଧୁନ୍ । ||୬୧||

ଦିହ୍ ଥାଇ, ନାଇଁ ଲେଖେଁ, ମହାନ୍ ଆତ୍ମିକ୍ ବିଚ଼ାର୍
ରଜା ହଇଁ ବି ପାଶ୍‌ରନ୍ ନାଇଁ କେଭେଁ ଋଷି ଆଚ଼ାର୍ । ||୬୨||

ଯୁଝି ଭୂମି ଯୁତ୍‌ଲା ବେଲେଁ ପାଏଲେ ନନୀ ଛୁଆ
ସର୍‌ଗେଁ ମହ୍‌ରଗ୍ ଯାହା ମର୍‌ତେଁ ଥିଲା ଥୁଆ । ||୬୩||

ନଙ୍ଗଲ୍ ସୀଆରୁଁ ଜାତ୍ ଜାନି ନାଆଁ ହେଲା ସୀତା
ଶିବ୍‌ଧନୁ ହେଲା ପନ୍ ବାଆରିଁ ଦେବା ଜଗତ୍ ଜିତା । ||୬୪||

ଇ ବଂଶେ ଜନମ୍ ବର୍ଲି ଶିବ୍ ଧନୁ ଥି ଗୁନ୍
ଚଢାଲେ ରାମ୍ ଗୁନ୍ ସମୁଦର୍ ନାଏଁନ କାହିଁ ଖୁନ୍ । ॥୭୬॥

ଶତାନନ୍ଦ୍ କହେଲେ "ମୁଇଁ ଥୁଏଁ ଗୁଟେ ବିଚାର୍
ଜାନ୍‌ଲା ଶୁନ୍‌ଲା କଥା କେତେ ହେମା ଗୁଟା ଉଚାର୍ । ॥୭୭॥

ରାଜ ରଷିକର୍ ନିଜର ଝି ' ନାଁ ତାର୍ ଉର୍ମିଲା
ଶୋଭା-ସାଗରର୍ ଉର୍ମି ସବୁ ସେଠାନେ ଉଲ୍‌ମିଲା । ॥୭୮॥

କେନ୍ତା ହେତା ତାହାକୁଁ ଦେଲେଁ ସଉମିତ୍ରିକୁଁ ସଁପି
ନିଦକ୍ ଲକ୍ଷ୍ମଣ ଦିନ୍ କାଟ୍‌ତେ ରାମ୍‌ନେ ଜୀବନ୍ ଅର୍ପି । ॥୭୯॥

ଲକ୍ଷଣ୍ ଦେଖିଁ ଜାନି ହେସି ଲକ୍ଷ୍ମଣ୍ କେନ୍ତା ପିଲା
ତାକର୍ ସଂସାର୍ ସଁଭ୍‌ଲାବାକେ ଲାଏକ୍ ଆ'ନ୍ ଉର୍ମିଲା । ॥୮୦॥

ବିଶ୍ୱାମିତ୍ର କହେଲେ ମନର୍ କଥା ଟୁଣ୍ଡୁ ଛଡେଇ
କହେଲ ଯୁଗି ! ହଅନି ଠାନ୍‌କେ ଯୋଗ୍ ଆନ୍‌ସି କଢେଇ । ॥୮୧॥

ଗୁଟେ ଜନମ୍‌ର୍ ନୁହେ ପରେ ବିହା ଚୂରା ଧନ୍ଦା
ଯାହାର୍ ଯିଏ ତାହାର୍ ସାଙ୍ଗେ ଆଗୁଁଥିସି ବନ୍ଧା । ॥୮୨॥

ଆଉର୍ ଗୁଟେ କଥା କହୁଛେଁ ସଭେ ଦିଅ କାନ୍
କୁଶଧ୍ୱଜ୍‌କର୍ ଦୁହି ଝି' ସୁନ୍ଦର୍ ସୁଜାନ୍ । ॥୮୩॥

ଭରତ୍ ଶତୃଘନ୍ ସାଙ୍ଗେ ସାନ୍ ବଡ ବାଆରି
ଦୁହି ଜେମାକୁଁ ଛନ୍ଦ୍‌ଲେଁ ଅମତ୍ ନାଇଁ ହେତା କାହାରି । ॥୮୪॥

ସଭେ ମିଶି 'ହୋ' କରି କହେଲେ ଏକା ସାଏର୍
ଇଟା ହିଁ କର୍‌ମା ହେଲେଁ, ଲଗନ୍ ନାଇଁ କାଏଲ୍ । ॥୮୫॥

କେତେ ଦିନୁ ବୁହିଁ ଆଉଛେ ସମିଆ ଅସ୍‌ରା ଧାର୍
ତାହାକେ ନେଇ କଲି ହେସି ବର୍ଲି ନାଆଁ କାଲ୍ । ॥୮୬॥

ଚିହ୍ନା ଧରି ଚାଲିଥିସି ଯାଏସି  ଯାହା ଘଟି
ଘଟ୍‌ନାମାନେ ଚଟ୍‌ନୁ ତାର୍ ଧାରେଁ ଯାଏସନ୍ ଅଁଟି । ॥୮୭॥

ଗର୍‌ହ ନଖତର୍ ଥିତି ଜାନି ଜାଗା ବନ୍‌ସି ଧାରେଁ
ବେଲେଁ କାଲେଁ  କବାର୍ କଲେଁ ଲିଖା ସୁନାର୍ ଗାରେଁ । ॥୮୮॥

ଆଏଜ୍ କାଏଲ୍ ଛାଡ଼ିଁ  ପର୍‌ଦିନ୍‌କେ ଅଛେ ଲଗନ୍
ସେ ବେଲା ବାଆରିଁ ବିହା ହେବା ସଭେ ଲାଗନ୍ । ॥୮୯॥

ଜନକ୍ ଲାଗୁନ୍ ତାକର୍ କାମେ ବରାତି ରଖୁନ୍ ବର୍ଁ
ବର୍‌କନିଆଁ ରହୁନ୍ ରୀତି ନିୟମ୍ ଅନ୍‌ସରି । ॥୯୦॥

ଏତ୍‌କି କଥା ବାର୍ତ୍ତା ସାରିଁ ଗଲେ ଋଷି ରଜା
ନିଦ୍-ରାଏଙ୍କେଁ ସମ୍‌କର୍ ଲାଗିଁ ଥିଲା ଶୁଇବାର ଖଂଜା । ॥୯୧॥

ରାମ୍‌ଧୁନ୍ ଗାଇ ପୂଜା ସାରି ଇନେ ଥାଉ କଥା
କହିଁ ମୁଜ୍‌ଲେ ପୁଥି ପତର୍ ଋଷି ସାମ୍‌ରଥା । ॥୯୨॥



# ପାଉଚ୍-୪

## ରାମ୍ ସାଙ୍ଗେଁ ଚାରିଭାଇକର୍ ବିହା ପର୍ଶୁରାମ୍ ଭେଟ୍

ବେଲହଉ ବେଲ୍ ହଏ ବେଲ୍ ଖେଲେଁ ତାର୍ ହେଲଉଛେ
ବିଖ୍‌ରା ଖରା ସାଆଁଟି ଦିଗ୍ ତରାକେ ପେଲ୍‌ହଉଛେ । ॥୧॥

ଚ଼ରା ସାରି ଚ଼ରେମାନେ ବାଁଧିବସ୍‌ଲେ ଦଲ୍
ଆକାଶେଁ ଉଠି ଗୁଡାକେ ଆଏବେ ଛାଡି ଧରା ତଲ୍ । ॥୨॥

ରାଏତ୍ ଫୁଟା ଯେନ୍ ଫୁଲ୍ ମାନେ କଢ଼ର୍ ଓଠ୍ ଫିଟେଇ
ଏଦେ ସେ' ଦେ ହସ୍‌ବେ ଲେଖେଁ ହୁଅନ୍ ପାଖ୍‌ଡା ହିଟେଇ । ॥୩॥

ପୂରୁବ୍ ଦିଗୁଁ ସୂରୁଯ୍ ଉଦୁଁ ହଁସେ ପଦୁଁ ଫୁଲ୍
ନୁହେ ଜାନ୍ଏ ହଁସିର୍ ପରେଁ ହଏ କାନ୍ଦିର୍ ମୂଲ୍ । ॥୪॥

ସେ ସମିଆ ଶମି ଆଉଛେ ନାଇଁ ପାର୍‌ବାର୍ ଜାନି
ଭଅଁର୍ ସାଙ୍ଗେଁ ଭରମି ଯାଏ ଇହାଛିନି ବି ପାନି । ॥୫॥

ବାଲ୍‌ମୀକି ନିଜର୍ ଲିଖା ରାମେନ୍ ଉଷଦ୍ ମନେ ଖୁଲିଁ
ସୀତା ବିହା କଥା କହୁଛନ୍ ହଏ ସଭାନେ ଗୁଲିଁ । ॥୬॥

ସରଗ୍ ନୁହେଁ ସରି ଆଏଜ୍ ମିଥିଲା ଯାହା ଦିଶୁଛେ
ସବୁ ମିତ୍‌ରେଁ ବନ୍ଏ ବଡ୍‌ରେଁ ବାହାରେଁ ଭିତ୍‌ରେଁ ହଁସୁଛେ । ॥୭॥

ସମ୍‌କର୍‌ମନ୍ ଆନନ୍ଦ୍ ହେଲେଁ କେନ୍ତା ଦିଶେ ରାଏଜ୍
ସେ ନମ୍‌ନା ସାମ୍‌ନେ ଅଛେ ଯେ ଦେଖ୍‌ବା ଆଏଜ୍ । ॥୮॥

କାହାରି ଉସ୍‌ନାକ୍ ନାଇଁ ଲାଗେ କାହାକେ ଅସ୍‌କଟ୍
କାହାରି ନଚା ଡେଗା କାହାକେ ନାଇଁ ଦିଏ ସଂକଟ୍ । ॥୯॥

ଜେମ୍ଆର ବିହା ସେମାନ୍କର୍ ଝି'ର ବିହା ଆଏ
ତତା ପନା ଆନାଯାନା ଉସ୍ତାର୍ ନାଇଁ ଘାଏ୍ । ॥୧୦॥

ଉତ୍ରା ନକ୍ଷତର୍ ଲଗନ୍ ଆଏ ବିହାର୍ ଲାଏକ୍
ଅଛେ ଯେନ୍ତା ବିହା ସର୍ବା ସକାଲ୍ ପୁଆ ଯାଏକ୍ । ॥୧୧॥

ଗର୍ହ ମାନେ ଯାହାର୍ ଯେନ୍ତା ବନ୍ଏ ଠାନ୍ ବାଆରି
ରାମ୍ ସୀତା ବିହା ଦେଖିବାର୍ ଲାଗି କରୁଛନ୍ ତିଆରି । ॥୧୨॥

ସୂରୁଯ୍ ଯାଇଛେ ଦୁସ୍ରା ଦିଗ୍କେ ଜନର୍ ପାଲି ପରିଛେ
ଜନମ୍ ନାଇଁ ଦେଖି ବିହା ଦେଖିବାର୍ ସୋର୍ ଧରିଛେ । ॥୧୩॥

ଜନମ୍ ନାଇଁ ଦେଖି ଜନ୍ ଦୁଖିମନା ତ ଥିଲା
ରାମ୍ କହିଥିଲେ ଦୁହିକର୍ ନାଁର୍ ରହୁ ଶିଲ୍ ଶିଲ୍ । ॥୧୪॥

ତଥାପି ଆଏଜ୍ ଜନ୍ ରହିଛେ ଶୁଦ୍ଧ୍ ମନେ ବସି
ସାଙ୍ଗ ସର୍ସିଆ ତରା ଧରି ଆକାଶ୍ ଦିହେଁ ହଁସି । ॥୧୫॥

ବର୍ପିଲାମାନେ ବେଦୀ ବସିଛନ୍ କନିଆଁ ଆସନ୍ ନୁହେ
ଖେଦି ଆନୁଛେ ବେଦୀ ନାଇଁ ବସିବାର୍ ତକ୍ ଦୁହେ । ॥୧୬॥

କଉଶିକ୍ କହନ୍ ରାଜରଷି ନାଇଁ ଆଏବାର୍ ସୀତା ?
ଜନକ୍-କହନ୍ ନାଇଁ ଭିର୍ବାର୍ ସାଜୋ ଲାଗେ ହିଟା । ॥୧୭॥

ରତନ୍ ଅଲଂକାର୍ ସବ୍ ସୀତାର୍ ବର୍ନେ ଶିଠା
ସଖୀ ମାନେ ହିଟେଇ କଢ଼େଇ ହଙ୍ଗଲେ ନ ଚିଟା । ॥୧୮॥

ବିଶ୍ୱାମିତ୍ର କହେଲେ ରଷି ! ବେଡ଼ା ହେଲ ତମେ
ସର୍ଗର୍ ରୂପେଁ ମର୍ତର୍ ସାଜୋ କେଭେଁ କାହିଁ ଜମେ । ॥୧୯॥

ହେଁ ଚେରେଷ୍ଟା ନାଇଁ କରନ ସାଜୋ ନୁହୁନ୍ ଅଥା
ବିନ୍ ସାଜୋନେ ସୀତାର୍ ରୂପ୍ ସହଜେଁ ଆଏଁଖିକେ ଲଠା । ॥୨୦॥

ରାଜକୁମାରୀ ମାନେ ଆସୁନ୍ ଲଗନ୍ ନୁହୁ ମାର୍
ପୁର୍ଥୀର୍ ଅଲଂକାର୍ ମାନ୍‌କୁଁ ସାଜୋ କାଏଁ ଦର୍‌କାର୍ ? ॥୨୧॥

ଏତ୍‌କି କହୁଁ ସଖୀ ମାନ୍‌କର୍ ସାଙ୍ଗେ ଆଏଲେ ସୀତା
ପଛେଁ ଆଏଲେ ତିନ୍ ବହନୀ ରୂପେଁ ଜଗଜିତା । ॥୨୨॥

ବସି ବେଦୀନେ ବେଦର୍ ନୀତି ନେଇ ମୁନିମାନେ
ଶ୍ଳୋକ୍ ପଢି ବୁଝେଇନେଲେ ବିହା ବର୍ପନର୍ ମାନେ । ॥୨୩॥

ବିଶେଷ କରି ବୁହିବାର୍ ନାଆଁ ଆଏ ବାବୁ ବିହା ।
ମନ୍‌ତନ୍ ସାଙ୍ଗେଁ କ୍ରିୟା କରମ୍ ପର୍‌ଛା ଦିଆନିଆ । ॥୨୪॥

ଦୁଇଟା ଜୀବନ୍ ଗୁଟେ ହେବା ଗୁଟେ ତନ୍ ମନ୍
ଜନ୍‌ଏ ପାଏଲେଁ ଦୁହେଁ ଭୁଗ୍‌ବ ବିପଦ୍ ହଉ କି ଧନ୍ । ॥୨୫

ଚାଲିଁ ଯାଉଥିବ ଯୁଲି ବାଧିଁ ଇ ସଂସାର୍ ବାଟ୍
ଝାଲି ନେବ ମନ୍ ସାଙ୍ଗେଁ ମନ୍ ନାଇଁ ଧର୍‌ବା ଫାଟ୍ । ॥୨୬॥

ଆର୍ ଜନ୍‌କର୍ ମୁଡ୍ ବଥାବା ଜନ୍‌ଏ ଭୁଗ୍‌ଲେଁ ଜର୍
ଜନ୍‌ଏ କୁଁଥାଲେଁ ଆର୍‌ଜନକର୍ ଶୁଖିଁଯାଉଥିବା ସର୍ । ॥୨୭॥

ଜନ୍‌ଏ ନାଇଁ ଦେଖିଲେଁ ଆର୍‌କ ହଉଥିବା ଅଥା
ଉନିଦ୍ରା ହେଲେଁ ଜନଏ ଆରକର୍ ନାଇଁ ପଡ୍‌ବା ପତା । ॥୨୮॥

ବାକି କଥା ଲୋକ୍ ରୀତି ଇଟା ନ ବିହା ଆଏ
ମୋର୍ କଥା ସୋର୍ ଥିବା ଜୀବନ୍ ଯିବାର୍ ଯାଏ । ॥୨୯॥

କୁଶ୍-ରଶିନେ ଋଷିମାନେ ହାତ୍ ବନ୍ଧନ୍-ପକାଲେ
ଦୁଇଟା ଜୀବନ୍ ବାନ୍ଧି ଏକ୍ କରି ଲାଖିଁ ଲଖାଲେ । ॥୩୦॥

ଶଁଖେଁ ପାଏନ୍ ଧରିଁ ରାଜା ରାନୀ କରି ଧ୍ୟାନ୍
ଉନିଆଁ ଧନ୍ ଦରବ୍ ସାଙ୍ଗେଁ କନିଆଁ କଲେ ଦାନ୍ । ॥୩୧॥

ତାକର୍ ସାଙ୍ଗେ ଲାଗେ ଲେଶର୍ ଯାହା ପାର୍‌ଲେ ଦେଲେ
ସେନ୍‌ହେ ସରାଗ୍ ଦେଇଁ ବଦ୍‌ଲେଁ ଦୁଖ୍ ଦରଦ୍ ନେଲେ । ।।୩୨।।

ଉଷତ୍-ଆନନ୍ଦ କଥା ହେଲେଁ ବି ସବୁ ଆଖିଁ ଲହ
ବାପ୍ ମା'ର୍ କଥା କେ କଲ୍‌ବା ? ସାଙ୍ଗ୍ ସର୍‌ସିଆ ଜହ । ।।୩୩।।

ବିହା ହୁମର୍ ଜୁଏ ଜଲେ ଘି' ଆହୁତି ପାଇ
ତାହାର୍ ଧାସେଁ ସୀତାର୍ ମୁହେଁ ଗହଦ୍ ହଏ ଛାଇ । ।।୩୪।।

ନାଇଁ ଥିପିଁ ଅଲ୍‌ଝି ରହେ ଗହଦ୍ ଥିପେ ଥିପେ
ସୀତାର୍ ମୁହେଁ କେ ଆନି କାଏଁ ମର୍କଦ୍ ମଣି ଲିପେ । ।।୩୫।।

ତାହିଁ ପରୁଛେ ସେ ଛନ୍‌କ ଜଲ୍‌ତା ଜୁଏର୍ ଛାଏ
ନଜର୍ ତାହିଁ ପର୍‌ଲା ବେଲୁ ରାମ୍ ଦେଖିବାରେଁ ବାଏ । ।।୩୬।।

ସୀତାର୍ ସୁନା ଦିହେଁ ଏକେଁ ଜଲ୍‌ତା ଜୁଏର୍ ତେଜ୍
ମୂର୍‌ତି ମାନ୍ ଶକ୍‌ତି ଶୁଏ ଦସେଇ ଜୁଏର୍ ଶେଯ୍ । ।।୩୭।।

ସୀତା ହାତର୍ ରତନ୍ ଚୂରି ଜୁଏର୍ ତେଜେଁ ଝଟ୍‌କେ
ସେ ଭିତରେଁ ରାମ୍ ମୂର୍‌ତିର୍‌ଛଏରା ଛନ୍‌କିଁ ଛଟ୍‌କେ । ।।୩୮।।

ଜଗତ୍ ଜିତା ରୂପ୍‌କେ ଦେଖିଁ ସୀତାହାରି ଗିଆନ୍ ।
ହାତ୍‌କେ ଟେକି ଚୂରି ଦେଖି ରହନ୍ ଏକ୍ ଧିଆନ୍ । ।।୩୯।।

ପୂରିତ୍ କହେଲେ ଉଠି ଟିକେ ଅଗ୍‌ନି ଭାଉଁରେ ଦୁହେ
ସାତ୍ ଥର୍ କରି କିନ୍ଦ୍‌ରି ଆସ ଜୁଏ ସାକ୍ଷୀ ହୁଏ । ।।୪୦।।

ଦୁହେ ଦୁହିଙ୍କୁ ସଁପି ହେବାର୍ ସେ ରହେଲା ସାକ୍ଷୀ
ଚରୁରଖ ଖାଏବ ରାତିଁ ବିଭୂତି ନିଅ ମାଖି । ।।୪୧।।

ଯେ ଯାହିଁ ଅଛେ ଜଗ୍‌ତେଁ ଜୁଏ ରହିଛେ ଜଡି
ତାହାର୍ ବାଗିର୍ ଅଭିନ୍ ରହେବ ନୁହିବ ଛଡା ଛଡି । ।।୪୨।।

ବର୍ କନିଆଁ ଚାରି ଯୁଲି ଭରି ସୁନ୍ଦର୍ ଭାବେଁ
ସଁସାର୍ ସାଗରେଁ ଝଁପେଇ ହେଲେ ଅଗ୍‌ବା ନୂଆ ନାବେଁ ।                    ||୪୩||

ବିହା ସରି ଖିଆ ପିଆ ଦିଆ ନିଆ ସର୍‌ଲା
ଜନକ୍ ଭାବ୍‌ଲେ କହେବାକେ ବାପ୍‌ର ପାଲି ପର୍‌ଲା ।                    ||୪୪||

ହାତ୍ ଯୁଡ଼ି କହେଲେ କା'ଣା କହେମି ଦଶରଥ୍
ଜାନି ଯଉତୁକ୍ ଦେବାର୍ କାଯେଁ ନୁହେଁ ସାମ୍‌ରଥ ।                    ||୪୫||

ଦଶରଥ୍ କହନ୍ କା'ଣା ଦେତ ? ଜନକ୍ ରାଜରଷି !
ଜନମ୍ ଜାଦ୍ କରି ଝି' ଦେଲ ପାଲି ପୁଷି ।                    ||୪୬||

ତାହାରୁଁ ଅଏଧିକା ଆଉର୍ କିଛି ନାଇଁ ଦରକାର୍
ଲଗ୍‌ତିଆ ହେଲୁଁ ଦେଲ ଯେତ୍‌କି ଶକ୍ତି ଅଛେ କା'ର୍ ?                    ||୪୭||

ଜନକ୍ କହେଲେ କାହିଁ ଚଲ୍‌ବା ନାଇଁ ଦେଲେଁ କିଛି
ବାପ୍‌ର୍ ଧନେ ଝିଅର୍ ହକ୍ ଟୁଟେଁ ଯିବା ଛି' ଛି ।                    ||୪୮||

ମୋର୍ ହେଲେଁ କାଣା ଅଛେ ? ଜପ୍ ତପ୍‌ର ସିଧି
ଯଦ୍‌ରି ଥାଏ ଦେଇନଉଛେଁ ନାଇଁନ ଉନିଆଁ ନିଧି ।                    ||୪୯||

ଦଶ୍‌ରଥ କହେଲେ ତମର୍ ଇଛା; ଯାଏସୁଁ ଋଷି
ଝି'କୁଁ ବିଦାୟ କର ଉଷଦ୍ ମନେ ହଁସି ଖୁସି ।                    ||୫୦||

ବିଶ୍ୱାମିତ୍ର ଗଲେ ସେ'ନୁ ହିମାଲଏ ପରବତ୍
ଜନକ୍ ରାଜର୍ଷିନୁ ନେଲେ ବିଦାୟ ଦଶରଥ୍ ।                    ||୫୧||

ପୁଓ ବହକୁଁ ଧରି ଧଏଲେ ଅଯୋଧ୍ୟାର୍ ବାଟ୍
ଧୂରିଆ ଠାନୁ ଦିଶେ ଚାଲେ ହର୍‌ବରେଁ କେନ୍ ହାଟ୍ ।                    ||୫୨||

ଜଏ ରାମ୍ ଜଏ ସୀତାର୍ ରାମ୍ ଡାକ୍ ପଡୁଛେ ହୁରି
ଭାର୍ଗବ୍ ଋଷି ପର୍ଶୁରାମ ଶୁନି ଯାନ୍ କୁହୁରି ।                    ||୫୩||

ପର୍‌ଶୁ ସାଙ୍ଗେଁ ବଏଷ୍ଣବୀ ଧନୁ ଧରି ଆଗେଁ ଠିଆଡ୍
ହଉନ୍ ଦଶ୍‌ରଥ୍ ଚିହ୍ନି ଡ଼ରେଁ ଇଆଡ୍ ସେ ଆଡ୍ । ॥୫୪॥

ସୁତର୍ ଭାବେଁ ମୁଡ୍ ଲୁହାଇ ଜୁଡ଼ି ଦୁହି ହାତ୍
ଦଶ୍‌ଦିଗ୍‌ଜୟୀ ଦଶ୍‌ରଥ୍ କଲେ ପ୍ରଣିପାତ୍ । ॥୫୫॥

ପିତାକର୍ ମାନ୍ ରଖିବାକେ ପୁଏ ଦେଲେ ସମ୍ମାନ୍
ପର୍ଶୁରାମ୍ ତବି ରିଶ୍‌ମିର୍ ମାରେଁ ଜାକର୍ ମାନ୍ । ॥୫୬॥

ପର୍ଶୁରାମ୍ କହେଲେ ''ରାମ୍ କିଏ ? ପର୍‌ସୁ ଝାଁପେଇ
ଜଲ୍‌ତା ଜୁଏ ନେ ନିଜେଁ ପରି, ମତେ ଦେସୁ ତପେଁଇ ।'' ॥୫୭॥

ଲକ୍ଷଣ୍ କହେଲ ତପୀ ! ତପ୍‌ବା ତୁମର୍ କାମ୍
ଯାହାକେ ଯେନ୍ତା ଚାହିଁ ଦିଅନ୍ ସରବ୍ ଜାନ୍ ରାମ୍'' । ॥୫୮॥

''ଦାବ୍ ଦଶ୍‌ରଥ୍ ପୁଓକେ ତୋର୍ ବଢ଼ିଁ କହୁଛେ କଥା
ନୁହେ ଚିହ୍ନେ ସାମ୍‌ନେ ପର୍ଶୁରାମ୍ ମହାରଥା । ''। ॥୫୯॥

ଦଦ୍‌ରା ଶିବଧନୁ ଭାଙ୍ଗି ଭଦ୍‌ରାମି ବି ଭାଙ୍ଗିଛ
କାଁ କର୍‌ମି ? ମୋହରି ହାତେଁ ମର୍‌ବାର୍ ତ ମାଗିଛ । ॥୬୦॥

ଲକ୍ଷ୍ମଣ୍ କହେଲେ ଖେଲେଁ ଭାଙ୍ଗୁ କେତେ ଧୁନ୍
ହେତ୍‌କି ବେଲେଁ କେ ନ ଥିଲ ପଡିଥିଲ ତ ତୁନ୍ ।''। ॥୬୧॥

ଏକୁଶ୍ ଥର୍ କ୍ଷେତ୍ରି ଶୂଇନ୍ କରିଛେଁ ଇ ପୁର୍‌ଥୀ
ନିଘା ନାଇଁ କେନ୍ ଛୁଆ କେନ୍ ଖେଲେଁ ଥିଲା ଭୁର୍‌ଥି । ॥୬୨॥

''ଆଏଜ୍ ବି ରାମ୍ ଭାଙ୍ଗଲେ ଧୁନ୍ ଛୁଆ ଖେଲ୍ ବାଗିର୍
ରାଗିଁ ଯାଉଛ କାଁ କରି ସେ ସୋଜ୍ କଥା ଲାଗିର୍ '' । ॥୬୩॥

ଲକ୍ଷ୍ମଣର୍ ଇ କଥା ଶୁନି ମୁନି ମହାନ୍ ରିଶ୍‌ମି
ଚିଙ୍ଗରି ଚିପ୍‌ଲେଁ ମୁଣ୍ଡେଁ ଗୁହ୍ ବଲ୍ କା'ଣା କଷ୍‌ମି ? ॥୬୪॥

ରାମ୍ କହେଲେ ‘‘ମୁନି ତୁମେ ବଏସେଁ ବନିହା ବଡ଼୍
ବାହ୍ମନ୍ ଅଂଶେଁ ଜନମ୍ ବ୍ରହ୍ମ କରିଥିବ ଜଡ଼୍ । ||୬୫||

ଜାନି ତମ୍‌କୁଁ ମହାପ୍ରୁ ଲେଖେଁ ଥିଲୁଁ ଅବ୍‌ତକ୍ ମାନି
ମାନ୍‌ବାର୍‌ଟାକେ ଡ଼ର୍‌ବାର୍ ଭାବିଁ ହୁଅ ଟାନିଘାନି । ’’ ||୬୬||

ଜାନିକରି କାଏଁ ଭାଙ୍ଗଲିଁ ଧୁନ୍, ଗୁନ୍ ଚ଼ଢ଼ଉ ଥିଲିଁ
ପନ୍‌ଥିଲା ଜନକ୍ ସଁପି ନେଲେ ମଏଥିଲୀ । ||୬୭||

ଗୁନ୍ ଚ଼ଢ଼ାଲିଁ କି ଧୁନ୍ ଭାଙ୍ଗ୍‌ଲା ମୁଇଁ ହେଲି କାଏଁ ଦୁଷୀ
କାଁ ହେଲା ଯେ ରିଷା ହଉଛ ହଇକରି ବି ଋଷି । ||୬୮||

ମୁନି କହେଲେ କ୍ଷେତ୍‌ରି ଛୁଆ, ଅସୁହା ନାଇଁ କହ
କଥା ଶୁନି ହୁର୍‌ଗୁନି ହଇଁ ହୁରୁଦ୍ ଜଲେ ଜହ । ||୬୯||

କେତେ ବର୍‌କଷ୍ ହାତେଁ ଅଛେ ଇ ବଏଷବୀ ଧନୁ
ଜାନ୍‌ମି ତତେ ମାନ୍‌ମି ସତେଁ ତାହିଁ ଚ଼ଢ଼ାଗୁନ୍ । ||୭୦||

ଶୁନି ରାମ୍ ଭୁଇଁନି ଗୋଡ଼ ଟିକେ ଦହଁପେଇ
ପର୍ଶୁରାମ୍ ହାତୁଁ ଧୁନ୍‌କେ ଆନ୍‌ଲେ ଲହଁପେଇ । ||୭୧||

ପଶୁରାମ୍ ଦିହେଁ ଥିଲା ଗୁନ୍ ସାଙ୍ଗେଁ ଯେନ୍ ବଲ୍
ରାମ୍ ନିକେ ଆସେ ଧନୁର୍ ବାଟେଁ ଅନର୍ଗଲ୍ । ||୭୨||

ଗୁନ୍‌ଚ଼ଢ଼ାଇ ଧୁନେ ରାମ୍ ଯୁଖ୍‌ଲେ ଗୁଟେ ଶର୍
କହେଲ ‘‘କେନ୍‌କେ ପେଶମି କହ ଭାର୍ଗବ୍ ମୁନିବର୍ ? ||୭୩||

କଷ୍‌ଲା ଶର୍ ଭାଷ୍‌ଲା କଥା ଫିରେଇ ନୁହେ ଜାନ୍‌ଅ
ପେଶ୍‌ଲେଁ ଯାହାକେ ଶେଷ୍ ହେବା ସେ ଇଟା ମନେ ମାନ୍‌ଅ । ||୭୪||

ଯେନ୍ ଗୁଣ୍ ଯେନ୍ ଶକ୍ତି ଥିଲା ପର୍ଶୁରାମ୍ ଠାନେ
ଉଭିଁଗଲାନ୍ ସେଟା ଇଛନି ବିର୍‌ଝିଁ ଅଭିମାନେ । ||୭୫||

ତାକର୍ ଧନୁ ରାମ୍ ହାତେଁ ଗୁନ୍ ନେଇ ହଏ ବଁକା
ଏତ୍‌କି ଦେଖିଁ ପର୍ଶୁରାମ୍ ମନେକଲେ ଶଁଖା । ॥୭୬॥

ଆନନ୍ଦ୍ ମଏକେ ନାଇଁ ଚିହ୍ନି ନିରାନନ୍ଦ୍ ଦେଲିଁ
ଈଶ୍ୱର୍ ଦେନ୍ ନିଜର୍ ବଲିଁ ସୋଉ୍ ଆଦ୍‌ରି ନେଲିଁ । ॥୭୭॥

ରାମ୍‌ର୍ କଥା କାଏଁ ଶୁଭ୍‌ତା କା'ଣା କହେତେ ଭାଏଲ୍
କୁନ୍ଦା ଭଏଁରା ବାଗିର୍ ସୋର୍ ନାଇଁ ପାଏବାର୍ ତାଏଲ । ॥୭୮॥

ନାଇଁ ଟାକି ରାମ୍ କହେଲେ "ଶୁନ୍‌ଅ ପର୍ଶୁରାମ୍
ସଂସାର୍ କାମ୍ ସାରି ଯାଇଥିତ ନିଜର୍ ଧାମ୍ । ॥୭୯॥

ଯେ'ନୁ ଆଇଛୁଁ ସେନ୍‌କେ ଯିମା ପର୍‌ମାତ୍ମା ଘର୍
ସେନ୍‌କେ ନାଇଁ ପୁହୁଁଚିବାର୍ ତକ୍ ଫିରୁଥିମା ଥର୍ ଥର୍ । ॥୮୦॥

ତୁମର୍ ତପିସାର୍ ବଲେଁ ତ ପାରିଥିବ ଫିରି
ଅଭିମାନ୍ ଥିଁ ହାନି ହେଲା ସବୁ ତପିସାର୍ ଶିରୀ । ॥୮୧॥

କଷ୍‌ଲା ଶର୍ ପେଷ୍‌ଲିଁ ଏବେ ତମର୍ ଫିର୍‌ବାର୍ ବାଟ୍‌କେ
ଅମର୍ ହଇଁ ରହେବ ଦେଖି ଅସାର୍ ସଁସାର୍-ହାଟ୍‌କେ । ॥୮୨॥

ପର୍ଶୁରାମ୍ କହେଲେ ଯାହିଁ ସୃଷ୍ଟିର୍ ହେବା ଭଲ୍
ତାହା ହିଁ କର ନାଇଁ ତ ଚିହ୍ନି ପାର୍‌ଲିଁ ମୁଇଁ ଖଲ୍ । ॥୮୩॥

ତୁମର୍ ଭାବେଁ ଫିରୁଥିଲି ତୁମର୍ ଏଛନିର୍ ଘରକେ
ନିଜର୍ ବାଟ୍ ବନ୍ଦ୍ ହଏ ବାଟ୍ ଛେଁକ୍‌ଲେଁ ପର୍‌କେ । ॥୮୪॥

ବାହ୍ମନ୍ ଅଂଶେଁ ଜନମ୍ ଦେଇଁ ଦେଲ ରଜୋଗୁନ୍
ମାଁକେ ମାରି ଭାଏକୁଁ ମାଏଲିଁ ମାଏଲିଁ ସହସ୍ରାର୍ଜୁନ୍ । ॥୮୫॥

ଝୁଜି ନୁରି କ୍ଷେତ୍ରି ମରାଲୁ ମତେ ସଚ୍ଚିଦାନନ୍ଦ୍
ମାନେ ତାଲେଁ ମାନେ ହାର୍‌ଲୁ ଜୀବନ୍ ଗୀତର୍ ଛନ୍ଦ୍ । ॥୮୬॥

କାହ୍ନ କହି କେଭେଁ କାହିଁ ଆନନ୍ଦ୍ ପାଏଲିଁ ରଁଚେ ?
ତତେ ଲୁକେଇ ନିଜ୍‌କେ ଦେଖେଇ ପ୍ରଚାର୍ କଲିଁ ପର୍‌ଚେ । ॥୮୭॥

ହୁର୍‌ଗୁନି ହଇଁ ଭୁର୍‌ଗୁମୁନି କହନ୍ ଆପେଁ ଆପ୍
ଅମ୍‌ରେଇ କରି ଆନନ୍ଦ୍ ମୟ୍‌କେ ନାଇଁ ଶୀତ୍‌ଲାଲିଁ ତପ୍ । ॥୮୮॥

କିଏ କହେ ମହାପୁରୁ ତତେ କିଏ ମହାପୁରୁଷ୍
ମୋର୍ ଆଁଖି ମୋର୍ ମନର୍ ମୁନୁଷ୍ ଆଜିର୍ ହଏ ଦୁରୁଶ୍ । ॥୮୯॥

ନାଇଁ ଯୁଗାଏ ମତେ ନାଇଁ ମାଗେଁ ଯୋଗର୍ ସିଧି
ଯେନ୍ ନିଶା ଦିଏ ଡ଼ର୍ ଲାଗ୍‌ସି ନାଇଁ ମାଗେଁ କେନ୍‌ନିଧି । ॥୯୦॥

କାମ୍‌ନାମାନେ ମରିଁ ଗଲେନ କା'ଣା ହେଲେଁ ମାଗ୍‌ମି ?
ଆନନ୍ଦ୍ ରସୁଁ ରଁଚେ ପାଏଲେଁ ବାକି ଜୀବନ୍ ପାଗ୍‌ମି । ॥୯୧॥

ମୁକ୍ତି ନାଇଁ ମାଗେଁ ଦର୍କାର୍ ନାଇଁ ମୋର୍ ନିର୍ବାଣ୍
ଯେତ୍‌କି ଜନମ୍ ଦେବୁ ଦେ, ଯେନ୍ ଇଚ୍ଛା ସେ ପ୍ରାଣ୍ । ॥୯୨॥

ହେ ଗୁଣାଧାର୍ ତୁଇଁ ନ ଆଉ ଏକ୍‌ଲା ଆନନ୍ଦ୍ ରସ୍ ।
ଅର୍କଲେଁ ପଡ଼ି କେନ୍‌ସି କାଲେଁ ନାଇଁ ହଉ ବିରସ୍ । ॥୯୩॥

ସେ ରସ୍‌ନୁ ରଁଚେ ମେତାଲ୍ ଦେତୁ ହେଲେଁ ଥିଁପେଇ ।
ନାଇଁ ତର୍‌ଲିତିଁ କେହେନି ତାପ୍ ଦଉଥିଲେଁ ବି ତପେଁଇ । ॥୯୪॥

ମୋର୍ ମାର୍‌ଗେଁ ମୁଇଁ ଯାଉଛେଁ ତୋର୍ ବାଟେଁ ତୁଇଁ
ପର୍ଶୁରାମ୍ ରହେଲା ତୁଇଁ ନେଇଁ ଯା ତାର୍ ମୁଇଁ । ॥୯୫॥

ପଥର୍ ଛେଁକା ଅଲ୍‌ଗେଇ ଯାଏ ଯେନ୍ତା ନଦୀର୍ ଧାର୍
ସେନ୍ତା ଗଲା ଲୋକ୍ ବାହିନୀ ଆନନ୍ଦ୍ ଅସୁମାର୍ । ॥୯୬॥

ଅବଧି ବାସୀ ସୋର୍ ପାଇକରି ସହର୍ ସାରା ସାଜିଛନ୍
ଯୁଲିଁକେ ଯୁଲି ପୁଓ ବହକୁଁ ଦେଖିବେ ଆଏଁଖି ମାଜିଛନ୍ । ॥୯୭॥

ସବୁ ବେଶିନେ ଝୁଁଟି ଲେଖା ତାହିଁ ସୁନାର୍ କଲ୍‌ସୀ
ଆମ୍‌ଡ଼ାଲ୍ ପରେଁ ନଡ଼ିଆ ଆଗେଁ ସୁନାର୍ ଜାଗର୍ ଜଲସି । ॥୯୮॥

ଖୁଏଲ୍ କେ ଖୁଏଲ୍ ଆମ୍ ତରନ୍ ତାହିଁ କେତେ ରଙ୍ଗର୍ ଫୁଲ୍
ଉଲା ହଇଛେ, ସମ୍‌କର୍ ମୁହେଁ ହଁସି ମୁଲ୍ ମୁଲ୍ । ॥୯୯॥

ଛୁଆମାନକର୍ ଉସ୍ତାର୍ ନାଇଁ ନଚାଡେଗା ଲାଗୁଛେ ।
କେତେ ଦୂରେଁ ଅଛନ୍ ବଲି ଆଗ୍‌କେ କେ ଭାଗୁଛେ । ॥୧୦୦॥

ଜଏ ରାମ୍ ଜଏ ସୀତାରାମ ଜଏ ଅଯୋଧ୍ୟାର୍ ଜଏ
ଶୁଭିଲା କି ଅବଧ୍ ଆକାଶ୍ ହେଲା ଆନନ୍ଦ୍ ମଏ । ॥୧୦୧॥

ଆସି ଗଲେ ନ ଏ ଦେ ବଲିଁ ବାର୍‌ତା ପଏଲେ ତୁର୍‌ତି
ରାଏଜେଁ ଜନ୍ଏ ନାଇଁ, ନାଇଁ ମନେ ଯାର୍ ଫୁରତି । ॥୧୦୨॥

ହୁଲ୍ ହୁଲି ଦେଇ ପୁଓ ବହକୁଁ ବନ୍ଦେଇଁ ରାନୀ ମାନେ
ମହଲ୍‌କେ ନଉନ୍ ଗହଲ୍ ଚ଼ହଲ ସୀମା ନାଇଁ ମାନେ । ॥୧୦୩॥

ଭୁଖା ଦୁଖା କେ ଥିଲା ଯେ କାହାକେ ଦେତେ ଦାନ୍
ନିଜର୍ ଗୀତେଁ ନିଜେଁ ଭୋଲ୍ କେ ଦେଖେ ନାଚ୍‌ଗାନ୍ । ॥୧୦୪॥

ସୂରଯ୍ ନାଇଁ ବୁଡ଼ନ୍ ବହ ଡୁକା ଦେଖିବେ ବଲିଁ
ବହ ଡୁକା ଶେଷେଁ ପଛିମ୍ ପୁର୍‌କେ ଗଲେ ଢଲିଁ । ॥୧୦୫॥

ରାଏଦ୍ ଆଏଲା ଅବଧ୍ ସାରା ସଭେ ଧଏଲେ ଦଶ୍‌ନା
ଆମେ ବି ଯିମା ସଁଖିଲ ନିଜର୍ ନିଜର୍ ପଟି ମଶ୍‌ନା । ॥୧୦୬॥

ରାମ୍ ଧୁନ୍ ଗାଇ ବାଲ୍‌ମିକୀ ମୁନି କଥା କଲେ ବନ୍ଦ୍
ରାମର୍ ନାମେ ଆଏଜ୍ ଗୁମ୍‌ରେ ନୂଆଁ ରକମର୍ ଛନ୍ଦ୍ । ॥୧୦୭॥



# ପାଉଚ୍-୫

# ରାମ ରଜା ହେବାର ପ୍ରସ୍ତାବ୍। କୈକେୟୀ-ମନ୍ଥରା କଥା

ସକାଲ୍ ସଭା ଚାଲେ, କଅଁଲି ଖରା ଆସେ ବିଖ୍ରି
ମୁନି-ମୁହୁଁ ରାମେନ୍ କଥା ଅଥକ୍ ଆସେ ନିଥ୍ରି । ॥୧॥

ସୀତା ନାଏଁନ ଗୁତା ଉଚାର୍ ହୁଅନ୍-ମୁନି ଚୁକ୍ଲେ
ସବୁ ମନେ ସଁଶ୍ଏ କାହାରି ମୁହେଁ ନାହିଁ ଉଖ୍ଲେ । ॥୨॥

ମୁନି ଜାନନ୍ କାଁ କରି ଯେ ସୀତା ନାଇଁ ଆସନ୍
ସେଥିର୍ ଲାଗି ନାଇଁ ମାନି ରାମେନ୍ କହି ବସନ୍ । ॥୩॥

ରାମ୍ ସୀତାର୍ ପହେଲା ଭେଟ୍ ମହୁଶଯ୍ୟା ଘରେଁ
କେନ୍ ଭାବ୍‌ନେ କହେବେ ରଷି ପଡ୍‌ଲେ ହର୍‌ବେରେଁ । ॥୪॥

ସୁରୁ ନୁହେ ଗୁରୁ କହେବେ ଘର୍ ଗୃହସ୍ଥିର୍ କଥା
କେନ୍ ଭାଷାନେ କହେବେ ମୁନି ନୁରି ନୁରି ଅଥା । ॥୫॥

ସଭାକେ ସୀତା ନାଇଁ ଆସ୍‌ବାର୍ ସେ କଥାକେ ଡରି
ଆହୁରି ଡରେଁ କୁହୁରି ମୁନିର୍ ମନ୍‌ଯାଏ ଥରି । ॥୬॥

ରାମ୍‌କୁଁ ସୁମ୍‌ରି କହନ୍ ତମର୍ ସବୁକଥା ସୁନ୍ଦର୍
ବନ୍‌ଏ ନାଇଁ ଲାଗେ ଯାର୍ ମନ୍ ଥିବା ମନ୍ଦର୍ । ॥୭॥

କହେଲେ ମୁନି "ଶୁନ୍‌ଅ ରାଏତ୍ ଧୀରେ ବଢି ଆଉଛେ
ପଦମ୍ ବନ୍‌କେ କାକର୍ ପବନ୍ ଅଦମ୍ କରି ନଉଛେ । ॥୮॥

ସୀତାର୍ ପଦମ୍ ମୁହଁ ଶେଥା ଦିଶେ ଲାଇଜ୍ -କାକ୍‌ରେଁ
ରାମ୍-ଚନ୍ଦ୍ରକେ ଆଏଁଖ୍-କଏଁଫୁଲ୍ ଟାକେ ଆଦ୍‌ରେଁ । ॥୯॥

ହାତୀ ଦାଁତର୍ ପଲଙ୍କ୍ ତରେଁ ସୁନା-ପୁତ୍‌ଲି ଥୁଇ
ରତନ୍ ଦୀପର୍ ଉକିଆ ତରେଁ ସମିଆ ରହେ ଜୁହି । ॥୧୦॥

ଏ'ଦେ ଆଏବେ ସେ'ଦେ ଆଏବେ ରୂପ୍-ରାଏଜର୍ ରଜା
ରୂପ୍‌ମାନେ ସବ୍ ଚୁପ୍ ଅଛନ୍ ଦିହେଁ ରହି ସଜା । ॥୧୧॥

ନିରାକାର୍ ଆକାର୍ ନିଏ ଗୁନ୍ ଧରେ ନିର୍ଗୁନ୍
ହକାବାଦୀ ହଇଁ ରୂପ୍‌ମାନେ ହୁଅନ୍ ରୁଣ୍ । ॥୧୨॥

କବାଟ୍ ହିଟ୍‌ଲା ଫିଟ୍‌ଲା ସୀତା ହିଆ କୁରିଆର୍ ବାଟ୍
ରାମ୍ ମୂର୍‌ତି ର୍ କେଭୁଁ କେଭୁଁ ତାହିଁ ଲାଗିଛେ ନାଟ୍ । ॥୧୩॥

ସୀତା-ରୂପ୍-ଅମୃତ୍ ପିଆନ୍ ଆଁଖିର୍ ମୁହେଁ ରାମ୍
ରାମ୍-ରୂପ୍ ଦେଖିଁ ସୀତା ହେଲେ କାଏଁ ନିସ୍‌ପ୍ରାଣ୍ । ॥୧୪॥

ହଜ୍‌ଲା ରାମ୍ ନିଜ୍‌କେ ସାଆଁଟି ସୀତାକୁଁ ଦେଲେ ଛିଇଁ
ସୂର୍ଯ୍ୟ ବଂଶୀର୍ ତାପେଁ ତର୍‌ଲେ ସୀତାର୍ ଦିହ୍-ଘିଇ । ॥୧୫॥

ତର୍‌ଲିଲା ଘି' ଛଲ୍‌କିଲା ଲେଖେଁ ଜାନ୍‌କୀ ଗଲେ ଛନ୍‌କି
ଲାଜ୍ ଆସି ରାଜ୍ କର୍‌ଲା ଭାବ୍‌ନା ଗଲା ଅଟ୍‌କି । ॥୧୬॥

କୁଇଲି ସୁର୍‌କେ କୁଇଲା ଲେଖେଁ କରି ଦେଇଁ ଖାର୍
କଥା କହି ବଇଦେହୀ ଗୋ କରିଦିଅ ନିସ୍ତାର୍ । ॥୧୭॥

ହିରନ୍ ଆଖିଁ ସୁନା ବର୍‌ନି ! ଦେଖ୍‌ନିଅ ପଲ୍‌କେ
ଧୀରଯ୍ -ଗଛ୍ ଦମ୍ ନାଇଁ ଧରେ ଡାହିକେ ଡ଼ାହି ଫଲ୍‌କେ । ॥୧୮॥

କଥା କାଏଁ ଅଥା ହଇଁ ବେଲୁଁ ଥିଲେ ବସି
ଉକ୍‌ବୁକେଇ ଉପ୍‌କିଁ ଆଏଲେ ଚଣେ ହଇଁ ହଁସି । ॥୧୯॥

ମୁଲକ୍ ଜିତା ମୁଲ୍‌କି ହଁସି ମୂଲ୍ କେତେ ? କହ
କଷି କରି ବେଶୀ ଦେଲେଁ ବି ହଁସି ହେବା ଜହ । ॥୨୦॥

ଭୂଇଁସୁତା ତାମ୍ବର୍ତି ରାମ୍ ପାହାତଲର୍ ଭୂଇଁ
ମୁଣ୍ଡେଁ ମାରି ଟୁଣ୍ଡେଇ ନାଇଁ ପାରି ରହେଲେ ଲୁହିଁ । ||୨୧||

ଆନନ୍ଦ୍ ମୂରତି ରାମ୍ ତୁରତି ଆଉଜି ଧଏଲେ ଛାତି
ଦୁହିକର୍ ଦୁହେ ସାକ୍ଷୀ ରହେଲେ କେ ଥିଲା ଆର୍ ରାତି ? ||୨୨||

ଦୁଇଟା ଜୀବନ୍ ଏକ୍ ହେଲା ଏକ୍ ଜନ୍ ମନ୍
ଭେଦ୍ ଭଦ୍ରି ବିଦ୍ରି ହଇଗଲା ରନ୍‌ଭନ୍ । ||୨୩||

"ଦେହ୍ ନେଇଛେଁ ବିଦେହ୍-ଜେମା କାଲ୍ କାଲ୍‌କେ ଦୁକାଲ୍
କା'ଣା କହେମି ରହେଲା ତୁମର୍ ଏକ୍‌ଲାର୍ ଅଧିକାର୍ ।" ||୨୪||

ଅଲ୍‌ପର୍ ହଁସି କହେଲେ ସୀତା "କେତେ କଲ୍‌ପର୍ ତପ୍
ସାଫୁଲ୍ ହେଲେ ଆକୁଲ୍ ମନର୍ ଯେତେ ଜନ୍‌ମର୍ ଜପ୍ । ||୨୫||

ଦିହ୍-ଫୁଲ୍‌ଟାକେ ସଁପି ନେତି ଯେ ଯିବା ଦିନ୍‌ଏ ଝରି
ପାହାନେ ତାହା ଅର୍‌ପିନିଏଁ ଏତ୍‌କି ନ ମୋର୍ କରି । ||୨୬||

କଲା କାମେ ଭଲ୍ ହେବା ଯାହା ସବୁ ହେବା ତମର୍
ଅନ୍‌ଭଲ୍ ଯାହା ଅଜେଇ ନେବ ଭୁଗ୍‌ମି ଜୀବନ୍ ଭର୍ । ||୨୭||

ଦୁହେ କହି ପାରନ୍ ନାଇଁ ଆଖି ଆଏଁଖି ମିଶି
ସୀତା-ନକ୍‌ରେଁ ରାମ୍ ନାଚନ୍ -ରାମକୁଁ ସୀତା ଦିଶି । ||୨୮||

ପାଶ୍ ମହଲେଁ ଲକ୍ଷ୍ମଣ୍ ଉର୍ମିଲାର୍ କଥା ବାର୍‌ତା
ରାଏତ୍-ସର୍‌ତା ଚାଲେ ଘଡେ ଛନ୍‌ଏ କେ କାଏଁ ସର୍‌ତା । ||୨୯||

ଉର୍‌ମିଲା ଲେଖେଁ ନାଇଁ ହେବ ଭର୍‌ମିଲା! କଥା ଶୁନି
ଚିରୁଥିମି ଦୁହୁଦ୍ ନାଇଁ ପାରୁଥିମି ତୁନି । ||୩୦||

ମୋର୍ ବଲିଁ କିଛି ନାଇଁନ ଅର୍‌ପି ନେଇଛେଁ ରାମ୍‌କେ
କା'ଣା ଅଛେ ଯେ ଦେମି ? ନାଇଁ ଆସେଁ ତମର୍ କାମ୍‌କେ । ||୩୧||

ତୋର୍‌ନେ ମୋର୍ କୋର୍ କପଟ୍ ନାଇଁ, କହେଁ ସାଫ୍
ଢ଼ାଁଡ଼୍‌ଲେଁ ସହେମି ଭଷଦ୍ ହେମି କରି ପାର୍‌ଲେଁ ମାଫ୍ ।'' ।।୩୨।।

ଉର୍‌ମିଲା କହନ୍ ଭଲମି ପରି ସଉମିତ୍ରୀ ଉପ୍‌ରେଁ
''ତୁମେ ଯଦ୍‌ରି ଅର୍‌ପି ହେଲେଁ ମୁଇଁ କାଏଁ ନାଇଁ ପାରେଁ । ।।୩୩।।

ନାଇଁ ପାର୍‌ଲେଁ ହେମି କାଏଁ ତୁମର୍ ପତ୍ନୀ ଲାଏକ୍
ତୁମର୍ ବାଟେଁ କଁଟାନି ହଏଁ ଜୀବନ୍-ଥିବାର୍ ଯାଏକ୍ । ।।୩୪।।

ଆର ଘରେଁ  ମାଣ୍ଡବୀ ଆର୍ ଭରତ ଦୁହେ ବସି
କଥା ବାର୍‌ତା କରନ୍ ସେନେ ଝଲ୍‌କେ ଖୁସିର୍ ହଁସି । ।।୩୫।।

ଭରତ୍ କହନ୍ ଭରି ରହିଛେ ସେନ୍‌ହେ ଆର୍ ଭକ୍‌ତି
ସେନ୍‌ହେଁ ଦେର୍ସି ଶତ୍ରୁଘନ୍‌କେ ଭକ୍ତି ରାମ୍‌ର ପର୍‌ତି । ।।୩୬।।

ଆର୍ କିଛି ନାଇଁ ମାଣ୍ଡବୀ କହ  କା'ଣା କର୍‌ମି ?
ଦେବାର୍ ନାଏଁନ, ଦେଲେଁ ଝୁଲାମୁନା କରି ଭର୍‌ମି । ।।୩୭।।

ମାଣ୍ଡବୀ କହନ୍ ଦୁହେ ଅଭିନ୍ ଦିଆନିଆ କାହିଁ ?
ଦୁହେ ହଇଁ ଗୁଟେ ଜୀବନ୍-ଗୀତ୍ ଯିମା ଗାଇଁ । ।।୩୮।।

ଶତ୍ରୁଘନ୍ କହନ୍ ମାଁର୍ ଦୁଇଟା ପୁଓ ଆମେ
ମତେ ଦିଅନ୍ ଭରତ୍ ସେବା ଲକ୍ଷ୍ମଣ୍‌କୁଁ ରାମେ । ।।୩୯।।

ଶ୍ରୁତକୀର୍ତ୍ତି ! ତମର୍ ଭାଗେଁ  ନାଇଁ ନ କିଛି ମୋର୍
ପୁରାହର୍ ଲେଖେଁ ଯିମା ବିହି ବାନ୍ଧ୍‌ଲା ତୋର୍ । ।।୪୦।।

ଶ୍ରୁତକୀର୍ତ୍ତି କହନ୍ ''ନାଇଁ ଅଡୁଁ କିଏ କାହିଁ
ଯୁରି ହେଲାଁ ଦୂରିଆ ଯାଇ ବି ନାଇଁ ହଉଁ ଯାହିଁ ତାହିଁ । ।।୪୧।।

କୁଲ୍ ଭୁଆଷେନ୍ ଉଠ୍‌ଲେ କିନି ସୂରୁଯ୍ ଆଏଲେ ଦେଖି
ଉଠ ବଲିଁ ଚିଠି ପଠାଲେ ଲାଲ୍ ମୁରୁଜେଁ ଲେଖି । ।।୪୨।।

ମିଥିଲା ନେ ଥିଲା ବେଲେଁ ଆସି ଯୁଧାଜିତ୍
କଇକେୟୀକର୍ ଭାଏ ଧୀର୍ ବୀର୍ ପ୍ରସନ୍‌ଚିତ୍ । ॥୪୩॥

କଇକେୟ ଇ ବଏସେଁ ଭର୍‌ତକୁଁ ହ'ନ୍ ଝୁରି
ଖିନ୍ ଦେହେନେ ଦିନ୍ କାଟୁଛନ୍ ଝି' ନାତିକେ ନୁରି । ॥୪୪॥

କହେଲେ ଦଶ୍‌ରଥ୍ ଯାଉ ଭରତ୍ ନେଇ ସାଙ୍ଗେ
ଶତୃଘନ୍‌କେ, ଯିବାର୍ କାଯେଁ ସୁବିଧା ହଉ ଆଗେଁ । ॥୪୫॥

କଇକେୟୀ କହନ୍ ଭରତ୍ ଗଲେଁ ରାମ୍ ପାଶେଁ
ଥାଉ, ରାମ୍ ଗଲେଁ ପ୍ରାଣ୍ ଯିବା ରାନୀ ବାସେଁ । ॥୪୬॥

ବିହା ସର୍‌ଲା ପର୍‌ଲା ସବୁଆଡେଁ ରାମର୍ କଥା
ତାଡ୍‌କାମରାନୁ ଧୁନ୍‌ଭଙ୍ଗା ତକ୍ କହିଁ ନୁହନ୍ ଅଥା । ॥୪୭॥

କିଏ କହେ ''ଦଶ୍‌ମୁଡିଆ ରାବଣ୍ ପରେ ଆସି
ଧୁନ୍ ଦେଖିଁ ତୁନ୍ ପରିଁ ଗଲା ଲାଜ୍-ସଗ୍‌ରେଁ ଭାସି ।'' ॥୪୮॥

ଆଉର୍ ଜନ୍‌ଏ କହେଲା ''ଆଏଲା ପରେ ବାଣାସୁର୍
ଡର୍‌ହେଁ ପଲାଲା ବର୍‌ଡା ବାଁଧି କେଦ୍‌ନି କେତେ ଧୂର୍ । ॥୪୯॥

ସାରା ପୁର୍ଥୀର୍ ବଛା ବଛା ବୀର୍ ବର୍‌କଷ୍ ରଜା
ଜମି କରି ଯେନ୍ ହଟ୍‌ହଟା ଯେ କେ ଦେଖେ ସେ ମଜା । ॥୫୦॥

ସଭେ ଘାଏ ଝଁପେଇ ହଇ ଯାଆନ୍ ପରେ ହଟି
ହରାପନର୍ ଗହେରା ଚେହେରା ଯାଉଥାଏ ଚହଟି । ॥୫୧॥

ଥିଲା ଥିଲା ମିଥିଲା-ରଜା କଲା ଗୁଟେ ଜବାବ୍
ପର୍‌ମାନ୍ କଲା ଆମର୍ ରାମ୍ ପୁର୍ଥୀର ପାର୍‌ବାର୍ । ॥୫୨॥

କହେଲାଜନ୍‌କ ଫୁଲେ ସଥେଁ ନିଜେଁ ଆଏ ରାମ୍
ନିଜେଁ କଲା ଲେଖେଁ ଲାଗେ ରାମ୍ କଲା କାମ୍ । ॥୫୩॥

ରାମ୍ ସାଙ୍ଗେଁ ନଜର୍ ପନ୍‌କେ ନଉଥାଏ ନଥିଁ
ରାମ୍‌ର ଗୁନ୍ ନିଜର୍ ଗୁନ୍ ଭିତ୍‌ରେଁ ଦେଇ ପଁଥି । ॥୫୪॥

ରାମ୍ ସୀତାର୍ ହୁରୁଦ୍ -ଖେତେଁ ଭଲ୍ ପାଏବାର୍ ବିହନ୍
ତେଜ୍ ପାଏନ୍ ପବନ୍ ପାଇ ହଏ ବୁର୍‌ଷାଲ୍ ଗହନ୍ । ॥୫୫॥

ଯାହାକେ ପାଏଲେ ତାହାକେ କରି ନିଅନ୍ କେତେ ନିଜର୍
ଲେଟା ନାଇଁ ଛିଡ଼େ ସବୁ ଦିନ୍‌କେ ପାଲ୍‌ଟେ ବଜର୍ । ॥୫୬॥

ଘର୍‌କୁଟୁମ୍ ରାଏଜ୍ ବାସୀ ଗାଏ ଘୁଡ଼ା ହାତୀ
ପଶୁ ପକ୍ଷୀ ଗଛ୍ ପତର୍ ସଭେଁ ଯାଆନ୍ ମାତି । ॥୫୭॥

ସମ୍‌କୁଁ ଘାରେ ହରୁମେଷା ଭଲ୍ ପାଏବାର୍ ନିଶା
ଅଯୋଧ୍ୟାର୍ ପୁର୍ଥୀ ଆକାଶ୍ ସରାଗ୍-ରାଗ୍ ମିଶା । ॥୫୮॥

ସେ ରାଗ୍ ଆଲାପ୍ ଧରେ ଦଶ୍‌ରଥ୍‌କର୍ ମୁଡ଼େଁ
ଧୁବ୍‌ଲା ରଙ୍ଗେଁ ଉପ୍‌କେ କାନ୍ ପଟିଆ ବାଲର୍ କୁଡେଁ । ॥୫୯॥

କାନ୍ ପାଶେଁ ସେ କଲେଁ କଲେଁ କହେ ଶୁନ୍‌ଅ ରଜା
ବଲ୍ ବଏସର୍ ସାଙ୍ଗେଁ ଯାଏ ରାଜ୍‌କର୍‌ବାର୍ ମଜା । ॥୬୦॥

ଏଡ଼େ ସୁନ୍ଦର୍ ସୁଧାର୍ ସୁତର୍ ପୁଓ ରାମ୍-ମେତାଲ୍
ଥାଇ କେନ୍ତା ରାଜ୍ ପଣିଆଁ- ମଦେଁ ରହ ମାତାଲ୍ । ॥୬୧॥

ରାମକୁଁ ରାଏଜ୍ ସଁପି ଆଏଜ୍ ଯ' ଝାର୍
ସାର ଈପାରର୍ ବେପାର୍ ସାର୍‌କର ଆର ପାର୍ । ॥୬୨॥

ରାମ୍-ରସେଁ ସର୍‌ସର୍ ହଇଁ ଭିଜିଁ ଗଲେ ମଜି
ରାମ୍‌କୁଁ ଯୁବ୍‌ରାଜ୍ କର୍‌ବାର୍ ସପନେ ଗଲେ ହଜି ॥୬୩॥

ବଶିଷ୍ଠ୍ ଅଛନ୍ ସାଙ୍ଗେ ସବ୍ ମନ୍ତ୍ରୀ ସଭାସଦ୍
ରଜା କହେଲେ ଉଷତ୍ ଭାବେଁ ଭାଷା ଗଦ୍ ଗଦ୍ । ॥୬୪॥

କେନ୍ତା ହେବା କଥା ଗୁଟେ କହେଁ କର ବିଚାର୍
ବିର୍ଝେଇ କରି ବଏସ୍ ମତେ କହେ ବାର୍‌ବାର୍ । ॥୬୫॥

ରାଜ୍ ମୁକୁଟ୍ କାଏଁ କେଭେଁ ତତେ ନାଇଁ ଲାଗେ ବୋଝ୍
ସିଂହାସନ୍ କଁଟାର୍ ଆସନ୍ ସୁଖ୍ ଲାଗେ କାଏଁ ରୋଜ୍ ? ॥୬୬॥

ପାର୍‌ଲା ପୁଓକୁଁ ଦେଖ୍‌ବି ଯେ ଆପେଁ ଆବ୍‌ରେ ସଂସାର୍
ସେ ଆଏ ମହାମୂରୁଖ୍ ତାର୍ ବୁଦ୍ଧି ବୁର୍‌ତି ଅସାର୍ । ॥୬୭॥

କେନ୍ତା ହେତା ରାମ୍ ହାତେଁ ଦେଇ ନେଲେଁ ରାଜ୍‌ପାଟ୍
ସେ ପାର୍ କଥା ହେଜ୍‌ତିଁ ଇନିର୍ ସର୍‌ଲା ହାଟବାଟ୍ । ॥୬୮॥

ଜନ୍ ଏ ଜନ୍ ଏ ସଭେ କହେଲେ ବନ୍ ଏ ବିଚାରର୍ କଥା
ତୁମର୍ ଲାଏକ୍ କଥା କହେଲେ ଖୁଲିଁ ମନର୍ ବଥା । ॥୬୯॥

ମନ୍ତିରୀ ସବ୍ କହେଲେ ଅଁତ୍‌ରି ଉଠ୍‌ଲା ଦିନୁ ରାମ୍
ସବୁ ହୁର୍‌ଦେଁ ବାସ୍ ସମ୍‌କର୍ ମୁହେଁ ତାକର୍ ନାମ୍ । ॥୭୦॥

ଜଏସେଁ ବଡ୍ ବେଭାର୍ ଭଲ୍ ସମ୍‌କର୍ ମନ୍ ଜିତା
ରାମ୍-ହେବେ ରାଜା ରାଜ୍‌ରାନୀ ହେବେ ସୀତା । ॥୭୧॥

ଖବର୍ ରଥେଁ ଆନନ୍ଦ୍ ବୁଲିଁ ଆଏବା ଦୁଆର୍ ଦୁଆର୍
ରାଏଜ୍ ସାରାର୍ ମାନ୍-ସାଗ୍‌ରେଁ ହେବା ପୂନିର୍ ଜୁଆର୍ । ॥୭୨॥

ବଶିଷ୍ଠ କହେଲେ ଶିଷ୍ଟ୍ ଶାନ୍ତ୍ ସୁଧାର୍ ସୁନ୍ଦର୍ କଥା
ଯେନ୍ତା ହେବାର୍ ଥିସି ହେସି ସୋଜ୍ ହେସୁଁ ଅଥା । ॥୭୩॥

ଭଲ୍ କଥାକେ ବିଲମ୍ ନାଇଁ ଜଲ୍‌ଦି କଲେଁ ଯାଇ
ପର୍‌ଦିନେ ତ ପୁଷ୍ୟା ନକ୍ଷତର୍ ଭାଗେଁ୍ୟ ପାଇ । ॥୭୪॥

ଅଭିଷେକ୍‌କେ ଏନ୍ତା ଦିନ୍‌ଟେ ନାଇଁ ନ ଆର୍ ପାଶେଁ
ରାମ୍ ସୀତା ରହୁନ୍ ଆଜହୁଁ ରୀତମତ୍ ଉପାସେଁ । ॥୭୫॥

ରାଏଜ୍ ସାରା ଯାରି ହେଲା ହେବେ ରାମ୍ ରଜା
ବାଡ଼ି ଗୁବେଁ ଗୁବେ ନାଇଁ ନାଇଁଥିବାର୍ ସାଜ୍ ସଜା । ॥୭୬॥

ସଭେ ସମ୍କୁଁ କହନ୍ କାଏଲ୍ ରଜା ହେବେ ରାମ୍
ସଜା ବୁଜାନେ ଲାଗ୍‌ଲେ ସଭେ ଛାଡ଼ି ସବୁ କାମ୍ । ॥୭୭॥

ବାପା ଦେଇଥିଲେ କଇକେୟୀ ସାଙ୍ଗେଁ ଦାସୀଟେ
ଦାସୀ ନୁହେ ସୁଖ୍ ଦାଏସି ସତେଁ ସତ୍ୟାନାଶୀ ଟେ । ॥୭୮॥

ଦିହ୍‌ଟା ବଁକା ଟେଁକା ତାର୍ ପିଠିଁ କୁଜ୍ ବଢେ
କଥା ମଥିଁ ମନ୍ ଥରାସି ନାଇଁ ଲାଗେ ବି ଘଢ଼େ । ॥୭୯॥

ମଝିଲୀ ରାନୀର୍ କାୟାର୍ ଛାୟା ନାଆଁ ତାର୍ ମନ୍ଥରା ।
କହେଲା କଇକେୟୀ ରାନୀକୁଁ କଥା ବନ୍‌ଏ ମନ୍-ଥରା । ॥୮୦॥

''ରାମ୍ ପରେଲୋ ! ରଜା ହେବା ଶୁନ୍‌ଲୁ କି ନି ରାନୀ ।''
ଶୁନୁନ୍ ରାନୀ ବେଁକର୍ ହୀରାହାର୍ ଦେଲେ ଆନି । ॥୮୧॥

''କାଁ କରି ଲୋ ଉପ୍‌ଲି ପରୁ ? ଆଉ ଅଗ୍‌ବା ବେଡ଼ୀ
କା'ଣା ଭାବୁ ? ହାତେଁ ଲାଗ୍‌ଲାନ କଡା ଗୁଡ଼େଁ ବେଡ଼ି । ॥୮୨॥

ଭରତ୍ ଅଛେ ମାମୁଁ ଘରେଁ ରଜା ହଏ ରାମ୍
ରାମ୍ ଭରତ୍ ଜନ୍‌ମେ ଘଡ଼େ ଛନ୍‌ଏ ବଡ଼୍ ସାନ୍ । ॥୮୩॥

ବନ୍‌ଏ ଠକେ ରଜା ହେବୁ କଉଶଲ୍ୟାର୍ ଦାସୀ
ରଜା ରାମ୍‌କେ ଖଜା ମିଠେଇ ଭରତ୍ ଭାଏଗେଁ ବାସି । ॥୮୪॥

ରଜା ପରେଁ ରଜା ହେବେ ରାମ୍‌ର୍ ପୁଓ ନାତି
ଭରତର୍ ଛୁଏ ଭୁଖ ର୍ ମାରେଁ ନାଇଁ ଶୁଉଥିବେ ରାତିଁ । ॥୮୫॥

ହୀରାର୍ ହାର୍ ଦଉ କା'ଣା ରଖିଥା ଯା ସାଉତି
କାମ୍‌କେ ଆଏବା ଭୁଖେଁ ଯେବେଁ କୁଟୁମ୍ ହେବେ ଆଉଟି ।'' ॥୮୬॥

ଘୁଡା ମୁହାଁ ପୁଡା ମୁହାଁ ଲୋ, ତୁଇଁ କାଏଁ ଚିହ୍ନବୁ ରାମ୍‌କେ
ନର୍କର୍ ଅସ୍‌କଟ୍ କୀରା, ଜାନ୍‌ବୁ ଆନନ୍ଦ ଧାମ୍‌କେ ? ॥୮୭॥

ଗୁହୁରି ଢୁଡାର୍ ପୁହୁରୀ ମାଛି ସରଗ୍ ଗଙ୍ଗାର୍ ପାଏନ୍
ରୁଚ୍‌ବା କାଏଁ ଘୁଚ୍‌ବା ନାଇଁ ? ଦେଲେଁ ଅଏନ୍ ମାଏନ୍ '' । ॥୮୮॥

ତୁଇଁ ଜାନିଛୁ ହେଲେଁ ଯେନ୍ତା ଜାନ୍ଥୁ ସେନ୍ତା କର୍
ତୋର୍ ଭଲ୍‌କେ କହେଲିଁ କର୍‌ଲେଁ କର୍ ନାଇଁ ତ ମର୍ । '' ॥୮୯॥

କଇକେୟୀ ଭାଲି ବସ୍‌ଲେ ଗାଲେଁ ହାତ୍ ଦେଇ
କାଁ ବଲିଁ ସେ ଝୀଲନ୍ ରାମ୍‌କେ ଭାବନ୍ ଗହରେଁଇ । ॥୯୦॥

କିଏ ରାମ୍ ? କାହିଁ ଆଇଛନ୍ ? ଜାନନ୍ କାଏଁ ଦଶ୍‌ରଥ୍ ?
ଖାଲି ଜାନିଛନ୍ କେନ୍ତା ପୂର୍‌ବା ନିଜର୍ ମନୋରଥ୍ । ॥୯୧॥

ରସ୍ ବଏଲେଁ ସେ ହିଁ ଆଏ କେବଲ୍ ଆନନ୍ଦ୍ ରସ୍
ଯାର୍ ଆଶେଁ ଇ ଜୀବନ୍ ଯେତ୍‌କ ଦଉଡନ୍ ବିବଶ୍ । ॥୯୨॥

ଚେତ୍‌ନାଥିଁ ଥିଲେଁ ଥିପେ ଜଗତ୍ ଯାତ୍‌ନା ଯାଏ ।
ମନ୍ ଭିତ୍‌ରୁଁ ମୁନି ମାନେ ନାଇଁ ଅଲ୍‌ଗାନ୍ ଘାଏ । ॥୯୩॥

ଚିତ୍-ଫରୁଆ ଭିତ୍‌ରେଁ ରଖି ଅନନ୍ତ କାଲୁଁ ଯୁଗୀ
ଆନନ୍ଦ-ରସେଁ ପହଁରନ୍ ଅସରା ଅମଦ୍ ଭୁଗିଁ । ॥୯୪॥

ଦାନା ବାଁଧିଛେ ସେ ରସ୍ ଆଏଜ ନିଏ ମୁନୁଷ୍ ରୂପ୍
ରଜା ଚାହୁଁଛନ୍ ଅବଧ୍ ଭିତ୍‌ରେଁ ରହିଆଉ ସେ ଚୁପ୍ । ॥୯୫॥

ଖୁଟିଁ ବେଁଧା ଗର୍‌ରା ଛୁଆ ବାଗିର୍ ଅବଧ୍ ସୀମ୍‌ନା
ନାଇଁ ଡେଗି କିନ୍ତ୍ରୁ ଥାଇ ଇନେ ସାରା ଜମାନା । ॥୯୬॥

ବାକି ଜଗତ୍ ଅଁଧାର୍ ଥାଉ ଅବଧ୍ ଦିଶୁ ଉକିଆ
ଚୁକୁନ୍ ସବ୍ ନିଜେଁ ଢୁକୁନ ସେ ରସ୍ ହୁର୍ ମୁଖିଆ । ॥୯୭॥

ନାଇଁ ବୁଝନ୍  ରଜା ଥାଇ ଜନମାର୍ଜିତ୍ ଗିଆନ୍
ବ୍ରହ୍ମ ଋଷି ବଶିଷ୍ଠ୍ ବି କାଏଁ ବୁଝି ନାଇଁ ଥାଆନ୍ । ॥୯୮॥

ଭଲ୍ ମନ୍ତ୍ରଣାର୍ ଲାଗି ମନ୍ତ୍ରୀ ସୁମନ୍ତକର୍ ନାମ୍
ସେ ବି ଘାଏ ନାଇଁ ଜାନ୍‌ବାର୍ ବାନ୍ଧି ରଖ୍‌ବେ ରାମ୍ । ॥୯୯॥

ରଜା ଯଦ୍‌ରି ଜିଦ୍ ଧରିଛନ୍ ପୁଓଟେ ବାଁଧ୍‌ଲେଁ ଯାଇ
ମୋର୍ ପୁଓକେ ବାନ୍ଧନ୍ ନିଳେ ବାଧା ମୋର୍ ନାଇଁ । ॥୧୦୦॥

ଅବୁଝା ରଜା ମନ୍ତ୍ରୀ ଗୁରୁ ନାଇଁ ପାର୍‌ବାର୍ ବୁଝି
ଅବଲାର୍ ବଲ୍ ନେଇ ମୁଇଁ ହେଲେଁ ଦେଖ୍ମି ଯୁଝି । ॥୧୦୧॥

ଛି' ଛି' ଥୁ' ଥୁ' କର୍‌ବେ ପଛେଁ ମତେ ସବୁଲୋକ୍
ତ'ବି ଜଗତ୍ ପାଇପାର୍‌ବା ଆନନ୍ଦର୍ ଆଲୋକ୍ । ॥୧୦୨॥

ମନ୍ଥରା ଆଡେଁ ଲେହେଁଟି କହେଲେ ''ତୁଇଁ କହୁଥିଲୁ ବନ୍‌ଏ
ତୋର୍ ଛଡା ମୋର୍ ନିଜର୍ କିଏ ଅଛେ ଆର୍ ଜନ୍‌ଏ । ॥୧୦୩॥

କେନ୍ତା କଲେଁ ହେବା ତୁଇଁ ଚିନ୍ତା କରି କହ
ବିଗ୍‌ଡ଼ିଁ ଯିବା ଥିତି ଯଦ୍‌ରି ବିଲମ୍ କର୍‌ମା ଜହ ।'' । ॥୧୦୪॥

ମନ୍ଥରା କହେ ''ମୋର୍ ଥାଆତ୍ କେଁ କାଏଁ ଚିନ୍ତା ତୋର୍
ମୋର୍ ବଡ଼ାଲା ବାଟେଁ ଚାଲ୍‌ଲେଁ ରଜା ନାଇଁ ପାଏ ସୋର୍ । ॥୧୦୫॥

ସୋର୍ କରିଛୁ କି ନି ଶମ୍ବର୍ ଅସୁର୍ ସାଙ୍ଗର୍ ଲଢେଇ
କାନ୍‌ଖିଲା କରିଥିଲୁ ରଥର୍ ଚିନି ଆଙ୍ଗୁଟ୍ ବଢେଇ । ॥୧୦୬॥

ରଜା କହିଥିଲେ ଦେମି ଯାହା ମାଗ୍‌ବୁ ବର୍
ତୁଇଁ କହେଲୁ ପଛେଁ ମାଗ୍‌ମି ଏଛନ୍ କାଏଁ ହର୍‌ବର୍ । ॥୧୦୭॥

ଲଢେଇ ଜିତି ଆଏଲ ପତି ପତ୍‌ନୀ ଦୁହିଜନ୍
ରଜାର୍ ଗୁଡେଁ ଲଢେଇର୍ ଘା ସେବାର୍ ଆୟୋଜନ୍ । ॥୧୦୮॥

ପୋଲ୍‌କେ ମୁହେଁ ଶୁଖି ଘା' ବନ୍‌ଏ କଲା ବେଲେଁ
କହେଲେ ''ରାନୀ ! ଶୁଝି ହେବା କହ କା'ଣା ଦେଲେଁ ।'' ॥୧୦୯॥

ତୁଇଁ କହେଲୁ "ତୁମର୍ ହଇଁ କେନ୍‌ଟା ମୋର୍ ନୁହେ?
ନିଜର୍ ଟାକେ ନିଜେଁ ମାଗ୍‌ବାର୍ କେବେଁ ସୁନ୍ଦର୍ ହୁଏ ?" ॥୧୧୦॥

ରଜା କହେଲେ "ରହେଲା, କେଭେଁ ହେଲେ ନେବ ମାଗି
ବନ୍‌ଏ ନୁହେ ଜନ୍‌ଏକର୍ ଲାଗ୍ ରହିଥିବାର୍ ଲାଗି । ॥୧୧୧॥

ସେ ଦୁହିଁବର୍ ସେନ୍ତା ଅଛେ ଇଛନ୍ ପଡ଼ିଛେ ବେଲା
ଆମର୍ କବାର୍ ହେବା ଖାଲି ମାଗି ଜାନ୍‌ଲେଁ ହେଲା । ॥୧୧୨॥

ସତ୍ କରାଇ ଆଗୁଁ ସବ୍ କଥା ଦେବୁ ସୁର୍‌ତେଇ
ତାକି ତର୍‌କି ଥିବୁ ରଜା ଦେବା ତତେ ଭୁର୍‌ଥେଇ । ॥୧୧୩॥

ସହଜ୍ ସୁତର୍ କଥା ଛାଡ଼ି ହେବୁ ଝାରି ଫାରି
ଏଛନି ନାଇଁ କଲେଁ ସାରାଜୀବନ୍ ହେବୁ ଘାରି । ॥୧୧୪॥

ପହେଲା ବର୍ ମାଗ୍‌ବୁ ମୋର୍ ଭରତ୍ ହଉ ରଜା
ଦୁସ୍‌ରା ରାମ ଚ଼ଉଦ ବରଷ୍ ତାକୁ ବନ୍‌ବାସ୍ ମଜା । ॥୧୧୫॥

ଘାଏ ନାଇଁ ଯାଏ ରଜା ଆଏବା ରହ' ତିଆର୍
ମୁଇଁ ଯାଉଛେଁ କହେଲିଁ ଯାହା ଥିବୁ ହୁସିଆର୍ ।" । ॥୧୧୬॥

ମନ୍ଥରା ଗଲା ଏତ୍‌କି କହି କଇକେୟୀର୍ ମନ୍ ଦୁଖ୍
ଦାସୀର୍ କଥା ପୁରୁଁଚାବା କାଏଁ ମୋର୍ ମନେ ସୁଖ ? ॥୧୧୭॥

ସୁଖ୍ ଦୁଖ୍ ତ ଗୁଟେ ଆଏ ନ ଖାଲି ମନର୍ ବିକାର୍
ମୋର୍ ସାଙ୍ଗେ ରାଏଜର୍ ଦୁଖ୍ ନେବା ବଢ଼େ ଆକାର୍ । ॥୧୧୮॥

ହେଲେଁ ଜଗତ୍ 'କୁରୁତ୍ କୁରୁତ୍ ହେବା ନିସ୍ତେ ଜାନେ
ରାମ୍ ମୋର୍ ତ ବୁଝିବା ଅନ୍ତର୍ଯ୍ୟାମୀ ଆଏ ମାନେ ।" ॥୧୧୯॥

ଏତ୍‌କି ଭାବିଁ ମଝିଆଁ ରାନୀ ଦୁଖର୍ ମଝିଁ ରହେଲେ
ଏତ୍‌କେଁ ସଭା ସାର୍‌ମା ଚାଲ ବାଲ୍‌ମିକୀ ମୁନି କହେଲେ । ॥୧୨୦॥



# ପାଉଚ଼-୬

# କୈକେୟୀର୍ ବର୍‌ମଗା

ପଛିମ୍ ଦିଗର୍ ବେଲ୍‌କେ ଛେଁକେ କଲା ବାଦଲ୍ ମୁଡ଼େ
ଉକିଆ ସାଙ୍ଗେଁ ଅଁଧାର୍ ଆନି ଘାଉଁ ଘାଏକେ ଯୁଡ଼େ । ।।୧।।

ରଷି ଭାବନ୍ ଅଯୋଧାର୍ ଉଷତ୍ ଆନନ୍ଦ୍ ଦିନ୍
ଆଶା ନିରାଶ୍ ମେଶା ଗୁଲାନେ ହଇଥିବା ଛିନ୍ ଭିନ୍ । ।।୨।।

ଅଧାପନ୍ତରିଆ ପାର୍ ଛିଡିଥିବା ଗା'ନା ବାଜ୍‌ନା ଠାନେ
ହାଚ୍‌କି ହଇଁ ଅଟ୍‌କି ଥିବେ ନାଚ୍‌ଲା ପାଦ୍‌ମାନେ । ।।୩।।

ଆନ୍‌ମନା ମୁନିକୁଁ କୁଶ କହେଲେ ପାହେଁ ପରି
କଇକେୟୀ କଥା ଜଲ୍‌ଦି କହ ନାଇଁ ହଏ ଦମ୍ ଧରି । ।।୪।।

କଇକେୟୀ କା'ଣା କହେଲେ କେନ୍ତା କଲେ ଅବଧ୍ ରଜା
କାବା ଲାଗୁଛେ ବାବା ! ରାମ୍‌ର୍ କଥା ବଢ଼େ ମଜା । ।।୫।।

ରାମ୍ ରାମ୍ ସୀତା ରାମ୍ କହି କହେଲେ ମୁନି
ଏକ୍‌ମନ୍ ଏକ୍ ଚିତ୍ ହଇଁ ସଭେ ବସ୍‌ଲେ ଶୁନି । ।।୬।।

ଇଥିଁ ତାହିଁ କଇକେୟୀ ମନ୍ ନାଏଁନ ଭଲ୍
"ଅବଧର୍ ଈ ଆନ୍‌ନ୍ଦ -ସାଗର୍ ଦେବା ହଲାହଲ୍ । ।।୭।।

ସେ ହଲାହଲ୍ ତାର୍ ଭାଗେଁ, ଆନନ୍ଦ୍ ନେବା ଜଗତ୍
ନିଜେଁ ହେବା ରାମ୍ ଅଏରି ଉନିଆଁ ସଭେ ଭଗତ୍ । ।।୮।।

ଏବେ ରଜା ଆସୁଥିବେ କେନ୍ତା କର୍‌ସିଁ ? ମୁଇଁ
ଅନ୍ ମୁନ୍‌ଷିଆ କଥା ମନର୍ ହେବା କାଏଁ ଥିଇଁ ? ।।୯।।

ଦୁଖେ ସାନି ହଇ ରାନୀ ଶୁଇଲା ଘରେ ପର୍‌ଲେ
ହରୁହର୍‌ଦମ୍ ହୁର୍‌ଗୁନି ହଇଁ ଗୁଡୁମୁଦ୍‌କେ ଥର୍‌ଲେ । ॥୧୦॥

ଆନନ୍ଦ-ରସେ ଭାସିଁ ରଜା ପୁହୁଁ ଚିଲେ ରାନୀବାସ୍
ବାହାରୁଁ ଡାକ୍‌ଲେ ମଝିଆଁ ରାନୀ ପୂର୍‌ଲା ତୁମର୍ ଆଶ୍ । ॥୧୧॥

ଆମର୍ ପରୁହାଁ ପୁଓ ରାମ୍ ରଜା ହେବା କାଏଲ୍
ଶୁଇଲା ଘରେ ଗୁଇଁ ଯାଇଛ ନୁହେ ଶୁନ୍‌ଅ ଡାଏଲ୍ । ॥୧୨॥

ତୁମର୍ ନିକେ ଧାଇଁ ଆଏଲିଁ କହେମି ବଲିଁ ଆଗ
ମୋର୍ ମନ୍ ଆଏଲ୍ ଆନନ୍ଦ୍ ଅଛେ ଯାହା ମାଗ୍‌ବ ମାଗ । ॥୧୩॥

କହି କହି ଛମିଗଲେ ରାନୀ ଶୁଇଲା ଘର୍‌କେ
ରାନୀର୍ ରକମ୍ ଦେଖି ଡାକର୍ ହୁରୁଦ୍ ଭିତର୍ ଦର୍‌କେ । ॥୧୪॥

''ପଲଙ୍କ୍ ଛାଡି ତଲେଁ ଶୁଇଛ ? ପାରିଁ ପନତ୍ କାନି
ଛାତି ପଲଙ୍କ୍ ମୋର୍ ମେଲା ପରିଛେ ଆସ ମହାରାନି । ॥୧୫॥

ଦିହ୍ ରୂପର୍ ନିହା ପରିଛେ ମନ୍ ଅପର୍‌ସନ୍
ଭାବ୍ ରାଏଜର୍ ରାନୀ ହେଲା କେନ୍‌ଅଭାବ୍ ଦର୍‌ଶନ୍ । ॥୧୬॥

କା'ଣା ଅଭାବ୍ ମାଗ ନିଶ୍ଚେ ଦେମି କରେ ସତ୍
ଦହଲି ହୁଏ ଦେହ ସ ।ଙ୍ଗେ ମନ୍ ନାଇଁ କର ଦହସତ୍ । ॥୧୭॥

ଝାରି ଫାରି ହଇଁ କଇକେୟୀ କହନ୍ କଥା
ଧୁନ୍ଦ୍‌ରାଲା ମେଘୁଁ ଚଡକ୍ ପଡେ ରଜା ହେଲେ ଅଥା । ॥୧୮॥

''ସତ୍ କଲା ବର୍ ବାସି ମାଗ୍‌ମି କା'ଣା ନୂଆଁ
ଶୁଖେ ହେଲେଁ ବି ଯିବା କିଏ ପାଏନ୍ ନାଇଁ ଯେନ୍ ଚୂଆଁ । ॥୧୯॥

ସତ୍ କର୍‌ବାର୍ କେତେ ସହଜ୍ ଜାନିଛନ୍ ଦଶରଥ୍
ସତ୍‌କଲେଁ କାଏ ଶଧ୍ ଯାଏସି ନାଇଁ ଥାଇଁ ସାମ୍‌ରଥ୍ ।'' ॥୨୦॥

ରଜା କହେଲେ ''ମାଗ ବଲି କହିଥ୍‌ଲିଁ ଥର୍ ଥର୍
ତୁମେ କହିଥ୍‌ଲ ପରେ ପରେଁ ମାଗ୍‌ମି ବର୍ । ॥୨୧॥

କା'ଣା ମାଗ୍‌ବ ମାଗ୍ ନିଯେ ପ୍ରାଣ୍ ବଏଲେଁ ବି ନିଅ
ଶୋଷ୍ ଅଛେ ତ ପିଇବ ହେଲେଁ ରକତ୍ ଦେଉଁଛେ ପିଅ । ॥୨୨॥

କେନ୍ ଭୁକେଁ ଜାବନ୍ ତମର୍ ହଉଛେ କଲ୍‌ବଲ୍
ମୋର ମାଉଁସେ ମେଟ୍‌ବାତ କାଟି ଦେମି ପଲ୍ ପଲ୍ । ॥୨୩॥

ଶୁନା ନାଇଁନ ଉନା ଇନେ ଥିବାର୍ କେହେନି ଦରବ୍
ସର୍‌ଗେଁ ଥିଲେଁ ବି କହେବ ହେଲେଁ ଆନ୍‌ମି ସେ ସରବ୍ । ॥୨୪॥

ଶୁନି ରାନୀ ଆଁଖିର୍ ପାନି ସାନି କହେଲେ କଥା
ଦଶରଥ୍ କା'ଣା ହଇଥ୍‌ବେ ଶୁନ୍‌ଲା ଲୋକ୍ ତ ଅଥା । ॥୨୫॥

''ଜହ ନାଇଁ କହ, ଦିଅ ଆଗର୍ ଦୁଇଟା ବର୍
ସତ୍ କର ମାଗ୍‌ଲେଁ ଭାଗ୍‌ବ ସତୁଁ ଲାଗେ ଡର୍ । ॥୨୬॥

ପହେଲା କହେ ଭରତ୍ ମୋର୍ ରାଏଜେଁ ହେବା ରଜା''
ରଜା କହନ୍ ''ରାମ୍ ଦୁଖ୍‌ମନା ନୁହେ, ହେବେ ପରଜା । ॥୨୭॥

ଜାନିଛତ ଦୁଖ୍ କା'ଣା ରାମ୍ ନୁହେ ଜାନ୍‌ଏ
ମନ୍‌କେ ଆନନ୍ଦ୍ ରାଏଜ୍ ବିନା ଆନ୍ ନାହିଁ ମାନ୍‌ଏ । ॥୨୮॥

ସେ ହେଲେଁ ରଜା, ରାଏଜ୍ ହେବା ଆନନ୍ଦ୍ ଭୂଇଁ
ରାଏଜ୍-ବାସୀ ସାଙ୍ଗେଁ ସେଟା କହୁଥ୍‌ଲିଁ ମୁଇଁ । ॥୨୯॥

ଚ଼ଉବରଗ୍ ଭରା ରାଏଜେଁ ଭରତ୍ କା'ଣା ଭର୍‌ବା
ଯଦି କିଛି ଭରିବସେ ଠାନ୍ କାହିଁ ଯେ ଧର୍‌ବା ? ॥୩୦॥

''ଭୁର୍‌ଥାବାର୍ ସବୁ, ବୁର୍‌ଥା ଛାଡ କହେଁ ଦୁସ୍‌ରା କଥା
ଚଉଦ ବରଷ୍ ବନ୍‌ବାସ୍ ଯାଉ ରାମ୍ ମହାରଥା । ॥୩୧॥

ଚଉଦ ବର୍ଷେ ଚଉଦ ଭୁବନ୍-ଦୁଃଖ୍ ଯାଉଥିବା ପଲେଇ
ଦାଁତେ ଜିଭ୍ କାବି କହୁଥିଲେ କଇକେୟୀ । ॥୩୨॥

ଜନ୍‌ବାସେଁ ସୁଖ୍ ରହିଥାଉ ଦୁଖ୍ ପାଉ ବନ୍‌ବାସୀ
ରଜା ତାହାଁନ୍ ଝାର୍‌ପତ୍‌ରାକେ ଦୁଖ୍ ଥାଉ ଗ୍ରାସି । ॥୩୩॥

ଝାର୍ ପତ୍‌ରାନେ ଋଷିମୁନି ତପେଁ ହଉନ୍ ଦହି
ରାମ୍ ପାଏବାର୍ ଭର୍‌ସାନେ ବର୍‌ଷା କାକର୍ ସହି । ॥୩୪॥

ଜାନ୍ ପଛେଁ ଯାଉ ଯାହା ହଉ ମାଗଛେଁ ଠିକ୍
ରଜା ନାଇଁ ବୁଝ୍‌ଲେଁ ତାର୍ ରଜା ପଣିଆ ଧିକ୍ । ॥୩୫॥

ଲେହେଁଟି ଦେଖିଲେ ରଜା ଆତ୍‌କେ କା'ଣା କହେବେ ବଲି
ରଜା ଶୁନି କେତେବେଲୁଁ ତଲେଁ ପରିଛନ୍ ଢଲିଁ । ॥୩୬॥

କଥା ବାର୍‌ତା ହେବାର୍ ବାଗିର୍ ଦିହେଁ ନାଇଁନ ଗିଆନ୍
ରାନୀ ଘାଟିଁ ସାନି ହେଲେ ହଜେ ଧୀରଯ୍ ଧିଆନ୍ । ॥୩୭॥

ଶଗ୍‌ଡେଁ ଲଦ୍‌ଲେଁ ଏତେ ବୋଝ୍ ସଁଭଲାବା କେନ୍ ଧୁରୀ
ଅଯୋଧାନୁ ଗଲେଁ ରାମ୍ ଯାଏସି ଲାଖ୍ ଦୁରୀ । ॥୩୮॥

ଜଗତ୍ ପାଏବା ଜଗତ୍ ପତି ଗଲେଁ ଯ ।ଉନ୍ ପତି
ମତେ ଦୁର୍ମତି ବଲୁନ୍ ମୋର୍ ଗତିକେ ଦୁର୍ଗତି । ॥୩୯॥

ବିବେକ୍ ବଲେ ଇଟା ସିନା, ମନ୍ ମାନ୍‌ଏ କାଏଁ ମନା
କେନ୍ତା ଫିର୍‌ତା ରଜାର୍ ଚେତା ରାନୀ ଥିଲେ ବିମନା । ॥୪୦॥

ରାନୀ ବିଚାରୀର୍ ଉପ୍‌ଚାର୍‌ନେ ଫିରି ପାଇଲେ ବିଚାର୍
କହନ୍ ''କଇକେୟି ! ଏତେ ନିର୍ଦ୍ଦୟୀ ନୁହ ଆର୍ । ॥୪୧॥

ରଜା ହଉ ପୁଓ ତୋର୍, ରାମ୍ ନାଇଁ ଯାଉବନ୍
ରାମ୍ ମୋର୍ ଧନ ରାମ୍ ତନ୍ ମନ୍ ଆଏ ରାମ୍ ମୋର୍ ଜୀବନ୍ । ॥୪୨॥

ଗଛର୍ ତଳେଁ ବାସ୍, ବସ୍ତୁର୍ ହେବା ଗଛର୍ ଛାଲି ।
ଧଏନ୍ ହେବା ଗଛ୍ ସଂସାର୍ ନାଇଁ ହେବାର୍ ଭାଲି । ।।୪୩।।

ତୋର୍ ଛାତି ମେତାନ୍ ଟାନ୍ ଉଠାର୍ ଚ଼ଟାନ୍ ପଥର୍
ଶୁଇ ପାର୍‌ବା କାଏଁ ରାମ୍ ଚେତୁଥିବା ଥର୍‌ଥର୍ । ।।୪୪।।

କହୁଥିବା ମା ମାଉଲୀ ମେତାଲ୍ ପୁରେ ପଛେଁ ଲାଗି
ଅମଙ୍ଗଲ୍ କରି ପାର୍‌ସି ବାପ୍‌କେ କରି ଭାଗୀ । ।।୪୫।।

କେନ୍ତା ବାପ୍ ସେ ବେଲ୍‌ବୁଡା ତକ୍ ପୁଓକେ କରି ରଜା
ସକାଲ୍ ପୁଆକେ ଅକାଲ୍ ଚ଼ଡକ୍ ଦେସି ବନ୍‌ବାସ୍ ସଜା । ।।୪୬।।

କେନ୍ତାବାପ୍ ? ବୁଢ଼ାକାଲେଁ ମାଏଝି-ବୁଧିଆ ହଇଁ
ଆର୍‌ଗୁଟେ କଥା କରି ପାର୍‌ସି ଗୁଟେ କଥା କହି । ।।୪୭।।

ଛାଡ ଇ ରଟ୍ ଭରତର୍ ମା ! ମା ବୁଆକୁଁ ତୋର୍ ଯୁହାର୍
ଭିକ୍ଷା କରେଁ ରକ୍ଷା କର୍ ତୋତେ ମାନୁଛେଁ ହାର୍ । ।।୪୮।।

ମତେ କହେବୁ ତ ବନ୍ ବାସ୍ କାଣା ନରକ୍ ବାସ ବି କର୍‌ମି ।
ବନ୍ ଗଲେଁ ରାମ୍ ଜୀବନ୍ ନାଇଁ ରହେ ନିଶ୍ଚେ ହାର୍‌ମି । ।।୪୯।।

ରାନୀ କହନ୍ ରହି ରହି ଜନମ୍ ସୂରୁଯ୍ କୁଲେଁ
ବିହି ଦେଲା ଜାନି କରି ବି ଅସତିଆ ବଲିଁ ଭୁଲେଁ । ।।୫୦।।

ଧିକ୍ ରଜା, ଠିକ୍ ସମିଆନେ ନାଇଁ ଉଦେ ଆର୍‌ବେଲ୍
ଲାଜେଁ ହେବା ତାର୍ ବଅଁଶେଁ ଦେଖି ଅସତ୍-ଖେଲ୍ । ।।୫୧।।

ରାନୀର୍ କଥା-ଶରେଁ ଶୁଖିଗଲା ରଜାର୍ ସର୍
ଚେଷ୍ଟା କଲେଁ ବି ହେତା ଚେତା ବୁଡେ, ଥର୍‌କେ ଥର୍ । ।।୫୨।।

ରଜା ଚେତା ନାଇଁ ପାଏବାର୍ ସକାଲ୍ ପାଏବା ଏତ୍‌କେଁ
ରାନୀ ହାନିଛନ୍ କଲ୍‌ଜା ଦେଖା ସଁଭ୍ରିରି ପାର୍‌ନ୍ କେତ୍‌କେଁ । ।।୫୩।।

ରାମ୍ ଅଭିଷେକ୍ ହେବେ ବଲିଁ ମନ୍ତ୍ରୀ ବଢେ ପୁରୁଁ
ଆଏଲେ ରାଜ୍ ସଭା ଧରି ବଶିଷ୍ଠ କୁଲ୍ ଗୁରୁ । ॥୫୪॥

ରଜାକୁଁ ସେ ନାଇଁ ଦେଖି ଆଏଲେ ରାନୀ ବାସ୍
ନୁହେ ଉଠ୍‌ବାର୍ ରଜା, ନର୍‌ଦେ ସବୁ ପାର୍ ନଏରାଶ୍ । ॥୫୫॥

ରାନୀ କହନ୍ ମହାରାଜ୍ କର୍ ମନର୍ ସୁଖ୍ ନାଇଁ
ତୁର୍‌ତି ଯାଇ ରାମ୍‌କୁଁ ଫୁର୍‌ତି ଡାକି ଆନ୍‌ଲେଁ ଯାଇ । ॥୫୬॥

ରାମ୍ ଆସି ପାହେଁ ପର୍‌ଲେ ରଜା ରାନୀ ଦୁହିକର୍
ରାମ୍ ଆଏବାର୍ ଜାନି ରଜା ପାଏଲେ ଚେତା ଘଡ୍ କର୍ । ॥୫୭॥

ଚେତାଟିକ ପାଏନ୍ ଫାଟି ବୁହେ ଆଖିର୍ ଲୁହେଁ
ଭିତ୍‌ରେଁ ଭିତ୍‌ରେଁ କୁହୁରି କହି ନାଇଁ ପାରନ୍ ମୁହେଁ । ॥୫୮॥

ରାମ୍ କହନ୍ କାଁ ହେଲା ମା' ବାପାକର୍ ମନ୍ ଖାଁଟ୍ ।
କତା କଥା ହେଲେ ''ବି କହ ମନ୍‌କେ କରି ଆଁଟ୍ । ॥୫୯॥

ଆଏଜ୍ କାଁ କରି କାନ୍ଦନ୍ ମତେ ଦେଖିଲେଁ ଉଷଦ୍ ହ'ନ୍
ଉନିଆଁ ଦିନେ ଦୁଖ୍ ଦରିଆନେ ଭାସୁଥିଲେଁ ବି ମନ୍ । ॥୬୦॥

ରାଣୀ କହନ୍ ମତେ କହୁ ଯେ କା'ଣା କହେମି କହ
ସତ୍ କଥା କହେମି ହେଲେଁ ଦୁର୍ନାମ୍ ହେବା ଜହ । ॥୬୧॥

ଅଜାନ୍‌ବାର୍ ନୁହୁ, ଅଜାନ୍ ବାହୁ ତୋର୍ ପିତା
ଯାହା ଚାହୁଁଥିଲେ ମତେ ଲାଗେ ବିଷ୍ ପିତା । ॥୬୨॥

ପୂର୍ବେ ଥରେ ଶମ୍ୱର୍ ଅସୁର୍ ସାଙ୍ଗେଁ ଥିଲା ଲଢେଇ
ସାଙ୍ଗେ ଥାଇଁ ଯେନ୍ କାମ୍ କଲିଁ ମତେ ଦେଲେ ବଡେଇ । ॥୬୩॥

କହେଲେ ମହାରାନି ! ମତେ ଯାହା ମାଗ୍‌ବ ମାଗ
କହିଥିଲିଁ ପଛେଁ ମାଗ୍‌ମି ଘର୍ ପୁହୁଁଚୁଁ ଆଗ । ॥୬୪॥

ଘର୍ ପୁହୁଁଚୁଁ ଲଢେଇର୍ ଘା' ବଜ-ବଜାଏ ପୂଯେଁ
ମୁହେଁ ଶୁଷିଁ ଘା' ଛଡାଲିଁ ଦେବ୍‌ତା ମେତାଲ୍ ପୂଜେଁ । ॥୬୫॥

ଆଉର୍ ଥରେ କହେଲେ ରାନି, ନାଇଁ ନ ମୋର୍ ମନା
ମାଗିନିଅ ପୂରା କର୍‌ମି କାମ୍‌ନା ମନ୍‌ମାନା । ॥୬୬॥

ସେ ଦୁହିବର୍ ବାକିଁ ଥିଲା ମାଗ୍‌ଲି ଗଲା ରାତିଁ
ବର୍ ଦେତେ କାଏ କାନ୍ଦନ୍ ଜବର୍ ଫାଟେ ମୋର୍ ଛାତି । ॥୬୭॥

ଗୁଟେ ପାଖେଁ ସେନ୍‌ହେ ମମ୍‌ତା ଆର୍ ପାଖେଁ ସତ୍
ଗୁଟେ ଧଏଲେଁ ଗୁଟେ ପଲାବା ହଉଛନ୍ ଦହସତ୍ । ॥୬୮॥

ତୁଇଁ ତ ଆଉ ବୁଝ୍‌ବାର୍ ଛୁଆ ବୁଝ୍ ଏତେକେଁ ତୁଇଁ
ତୋର୍ କର୍‌ତବ୍ ତୋର୍ ହାତେଁ କବାର୍ ସାର୍‌ଲିଁ ମୁଇଁ । ॥୬୯॥

ରାମ୍ କହୁଛନ୍ କାଁ ବର୍ ଯେ ? ବାପା ହୁଅନ୍ ଅଥା
ଫଟିକ୍ କରି କହ ନି ଯେ କା'ଣା ସଠିକ୍ କଥା । ॥୭୦॥

ବାପାର୍ କଥା ପାଳି ପାର୍‌ବାର୍ ପୁଓର୍ ଆଏ ବେପାର୍
ଝଟ୍ କହ ସତ୍ ନାଇଁ କରି ଟିଖେ ଇପାର୍ ସେବାର୍ । ॥୭୧॥

ପିତାର୍ ମନ୍ ଭାବ୍ ଜାନି ପୁଓ ପାର୍‌ଲେଁ କରି
ସେ ପୁଓକେ ବେଦ୍ ପୁରାନ୍ ଉତ୍ତମ୍ ନିଅନ୍ ଧରି । ॥୭୨॥

ବାପା ବର୍‌ଗିଲେଁ କର୍‌ବାର୍ ପୁଓ ମଧମେ ଗନାଯାଏ
ବର୍‌ଗିଲେଁ ବି ନାଇଁ କଲେଁ ପୁଓ ଅଧମ୍ ଆଏ । ॥୭୩॥

ପିତାର୍ ସତ୍ ମାତାର୍ ମତ୍ ଧରି ରଖେ ଯେନ୍ କାମ୍
କହ ମା' ମହତ୍ କାମ୍‌କେ ନାଇଁ କଧିରେ ରାମ୍ । ॥୭୪॥

ଇ ପାର୍ ସେ ପାର୍ ନାଇଁ କର ମା ' ପାର୍‌ଲା କଥା କର୍‌ମା
ତୁମର୍ ମାଫିକ୍ ମା ପାଇଁ ରାମ୍ ନୁହେ ହୀନ୍ କର୍‌ମା ''। ॥୭୫॥

ବଡ଼୍ କଥା ନୁହେ କହନ୍, ଭରତ୍ ହଉ ରଜା
ଅଭିଷେକ୍ କାଯେଁ ହଇଛେତ ସବୁ ଖେଁଳା । ॥୭୬॥

ଗଦ୍‌ଗଦେଇ କହେଲେ ରାମ୍ ଖଦ୍ ଖଦେଇ ହଁସି
କେତେ ଭଲ୍ କହେଲ ମା ! ଅମୃତ୍ ଆସେ ଖସି । ॥୭୭॥

ଭରତ୍ ହେଲେଁ ରାଜ୍‌କାମେ ରତ୍ ଯିବା ରାଏଜର୍ ଦୁଖ୍
ପର୍‌ତେ କର ପର୍‌ଶଁସାନେ ପଏରେନ୍ ପର୍‌ବା ସୁଖ୍ । ॥୭୮॥

ଭରତ୍ ଉପ୍‌ରେଁ ବାପାକର୍ କାଏଁ ନାଏଁନ ସେ ବିଶ୍ୱାସ୍
ଅସ୍ଥିର୍ କାଁ କରି ମାର୍‌ତେ ସୁସ୍ଥିର୍ ନିଶ୍ୱାସ୍ । ॥୭୯॥

ରାନୀ କହନ୍ ବାବୁ ! ଆଝୁଁ ଯିବୁ ବନ୍‌ବାସ୍
ମୁଡେଁ ଜଟା ଦିହର୍ ପିଁଧିନା ସକଲ୍ ବକଲ୍ ବାସ୍ । ॥୮୦॥

ରାମ୍ କହନ୍ "ବନ୍‌ବାସେଁ ମନ୍ ଖାସ୍ ସୁଖ୍ ପାଏସି
କହେବ ବଏଲେଁ ସାରା ଜୀବନ୍ ହେମି ବନ୍ ବାସୀ ।" ॥୮୧॥

ଋଷି ଧରମୁଁ ଲକ୍ଷ୍ମଣ୍ ସାଙ୍ଗେଁ ବନସ୍ତର୍ ମାନ୍ ବୁଲି
ପାଇବୁଁ ଯେନ୍ ସୁଖ୍ କେବେଁ ନାଇଁ ହେବାର୍ ଭୁଲି । ॥୮୨॥

ସତ୍ କହୁଛେଁ ମତେ ତୁମେ ପାଏସ ଯେତେ ଭଲ୍
ମୁଇଁ ଜାନେ ଆଉର୍ ଜାନନ୍ ଦେ' ଦେବତାର୍ ଦଲ୍ । ॥୮୩॥

ଗୁଟେ ପେଟର୍ ଜିମା ଦେଇଁ ମତେ ପଠାଅ ଝାର୍
ଉଲ୍‌ଦି ନେଇ ଭରତ୍ ଉପ୍‌ରେଁ ଅବଧ୍ ଧର୍‌ତୀ ଭାର । ॥୮୪॥

ଯେହେଲେଁ ବି କହେବେ ତୁମ୍‌କୁଁ ମୋର୍ ପଟିଆ କେତେ
ନିଜର୍ ପୁଓ ଛାଡ଼ି ପର୍‌କେ ସେନ୍‌ହୋ ଦେସି ଏତେ ? ॥୮୫॥

ବେଲା ଘଡି ନାଇଁ ଯାଉ ଗଡି ଝାର୍‌କେ ଯିମି ବାହାରି
ବାପାକୁଁ ବୁଝାଇ ରଖିବ ମା! ଇଟା ନ ମୋର୍ ଗୁହାରି । ॥୮୬॥

ଏନ୍ତାନେ ରାମ୍ ଅକାମ୍ ହେଲେଁ କେନ୍ ପୁଏଁ ଗନା
ଈ ବଅଁଶର୍ ଇତିହାସ୍ ପଢ଼୍‌ବାର୍ ହେବା ମନା । ॥୮୭॥

ବାପାର୍ ପାହା ଧୂଏଲ୍ ମାଖି କହନ୍ ଯାଉଛେଁ ଝାର୍
ରଜା କହନ୍ ବଝା ବାପର୍ କଥା ନୁହେ ମାନ୍‌ବାର୍ । ॥୮୮॥

ନାଇଁଯା ଧନ ବନ୍‌ବାସ୍ ବଲିଁ ଅହିରୁଦନ୍ ହଇଁ କାନ୍ଦ୍‌ଲେ
ଚେ଼ତା ହେତାକେ ଦୁଖ୍ ଦରଦ୍ ରଶି ବାନ୍ଧି ଛାନ୍ଦ୍‌ଲେ । ॥୮୯॥

ରାମ୍ ଗଲେ ଚାଲି ମା କଉଶଲ୍ୟାର ପୁର୍
ଆଜିର୍ ଥାଉ କାଏଲ୍ କହେମା ଆଏବ ବଢ଼େପୁର୍ । ॥୯୦॥

ବାଲ୍‌ମିକୀ ମୁନି ପୁଥି ବାନ୍ଧି ରାମ୍‌ନାମ୍ କଲେ ଗାନ୍
ପାଲିଆ ଧଏଲା ଲବକୁଶର୍ ମଧୁର୍ ବୀଣା -ତାନ୍ । ॥୯୧॥



# ପାଉଚ଼-୭

# ରାମ୍ ବନ୍ ଯିବାର୍ ସଜ୍‌ବାଜ୍

ପହଟିଆ ତରା ଲିଭିଆଏଲା ମହକି ଉଠେ କୁରେ
ଚହର୍କି ଆସେ ଫୁଲ୍‌ଚୁହୀ ଚରେ ଫୁଟ୍‌ଲା ଫୁଲ୍ ନୁରେ । ।।୧।।

ଝାର୍‌କୁକ୍‌ରାର୍ ଡାକ୍ ଲୁକେ କହଲେ ଚଂପା ବହଲେଁ
ରାମେନ୍ ଶୁନ୍‌ବା ବର୍ଲି ଆଶ୍ରମ୍ ମଗ୍‌ମଗାଏ କହଚେଁ । ।।୨।।

କୁଶ୍ କାଏଁଶର୍ ଆସନ୍ ପାରି ଲବକୁଶ୍ ବସ୍‌ଲେ
ବୀନା ତାର୍ ଚଢା ଉତାର୍ କରିଁ ବଦ୍‌ରେଁ କଷ୍‌ଲେ । ।।୩।।

ଚେଲା କିଏ ଖଁଜ୍‌ନି ଧରେ କିଏ ଭାଏଲ୍ ରାମ୍ ତାଲି
ଜନାଦୁ ଗାଆନ୍ ଭଜନ୍ ପଦ୍ ବାକୀ ଧରନ୍ ପାଲି । ।।୪।।

ଘଡେ ହଉଛେ ହୁମ୍ ସରିଛେ କୁହୁଲା ନୁହେ ଯାଏ
ଧିଆନେ ବସିଛନ୍ ମୁନି ହେଲା ବନ୍‌ଏ ଘା ? । ।।୫।।

ମୁନି କୁମାରୀ ଭିଲିଁ ସୀତା ଆଏଲା ବାଟ୍‌କେ ଫିରି
ହେତାନ୍, ଜୀବନ୍ ବହିର୍ ପତର୍ ଉଲଟେ ନୁହେ ଚିରି । ।।୬।।

ସେନ୍ତା ଦିଶେ ସେ ଅଯୋଧ୍ୟା ସେନ୍ତା ବଡଖା ଶାଶ୍
ଇହାଦେ ବାଜେ ବାଗିର୍ ଲାଗେ ତାକର୍ ତପ୍‌ଲା ଶ୍ୱାସ୍ । ।।୭।।

ସୁରୁ ଶାସ୍‌କର୍ ଗେରୁରଙ୍ଗର୍ ଗାଲେଁ ଲୁହଧାର୍
ଏହ୍ନି ବି କାଏଁ କାଟେ ଛାତିଁ ଦୁଖର୍ ଗୁଡିଆ ଗାର୍ । ।।୮।।

ଶୁନି ହେବା ? କାଏଁ ମୁନି କହେବେ କେ ନ ହେବା ଛିନି
ଦରଦର୍ ରଦ୍‌ରଦା ହୁର୍‌ଦେଁ କେ'ନ ହେବା ଛିନି । ।।୯।।

ତାକର୍ କୁଟୀର୍ ଆଡ଼୍‌କେ ମୁହାଁଇ ଧୀରେ ଯାଆନ୍ ଉଠି
ସାଙ୍ଗ ମାନ୍‌କର୍ ମନ୍ ମାନକୁଁ ପଛେଁ ଲୁଟି ଲୁଟି । ॥୧୦॥

ଓଁ କରି ମୁନି ଆଏଁଖ୍ ଫିଟାଲେ ମୁହଁ ଫିଟ୍‌ଲା ସାଙ୍ଗେଁ
"ରାମ୍ ଯାଇତ ପୁହୁଁଚି ପର୍‌ଲେ କଉଶଲ୍ୟା ମାଁ ଆଗେଁ ॥୧୧॥

ମା ମହାପୁରୁ ପୂଜାନେ ଥିଲେ ରାଜା ହେବେ ରାମ୍
"ରାମ୍ ପାଶେଁ ପୁହୁଁଚିଲେନ ତାହିଁକେ ନାଇଁ ଧାନ୍ । ॥୧୨॥

ହୁରୁଦ୍ ଭିତ୍‌ରେଁ ଯାହାକେ ରଖିଁ ଧାନ୍ କରନ୍ ରାନୀ
ତୁରୁତ୍ ଆସିଁ ଆଗମୁଡେଁ ଠାଡ୍ ନାଇଁ ପାର୍‌ବାର୍ ଜାନି । ॥୧୩॥

ସାନ୍‌ରାନୀ ଜାନି "କହେଲେ ନାନୀ ଦେଖ କେ ପାଶେଁ ?
ପଚାର ଏ' ଦେ ରାମ୍ ଆଇଛନ୍ କେନ୍ ଜିନିଷର୍ ଆଶେଁ" ॥୧୪॥

ଦୁହି ମା'କୁ ଗୁଟେ ପାଇ ମୁଇଁ ଭାଏଗ୍‌ବାନ୍
ଜନନୀ ମାନେ ଗୋ ଜନାଏ ନିଅ ରାମ୍‌ତାର୍ ପ୍ରଣାମ୍ । ॥୧୫॥

ମଝିଆଁ ମାଁକୁଁ ଗୋଡ୍ ତଲେଁ ପରିଁ ଆଇଛେଁ ଯାଉଛେଁ ବନ୍
ବାପ କର୍ ପାହେଁ ପରିଁ ଧଏନ୍ କରିଛେଁ ଇ ଜୀବନ୍ । ॥୧୬॥

ମଝିଆଁ ମାଆଁ ବର୍ ମାଗିଛନ୍ ବାପା କରିଛନ୍ ସତ୍
ଚଉଦ ବରଷ୍ ବନ୍‌ବାସ୍ ମୋର୍ ରାଇ୍ ପଦେଁ ଭାଏ ଭରତ୍ । ॥୧୭॥

ଇଥିରୁଁ ଆର୍ ବନ୍ ଏ କଥାଟେ କା'ଣା ହେବା ଗୋ କହ
ଭେଟ୍ ହେବାକେ ଆଏଲିଁ ସିନା ସମିଆ ନାଇଁ ନ ଜହ । ॥୧୮॥

ସୁମିତ୍ରା ଶୁନି ରାମ୍ କହେବାର୍ ଅଶ୍ରିଯ୍ ହେଲେ ମନେ
ଅଭିଷେକ୍ ପରେ ହେବାର୍ ଥିଲା କହ୍‌ନ୍ ଯିବେ ବନେ । ॥୧୯॥

କଉଶଲ୍ୟାର ମନ୍ ରନ୍‌ଭନ୍ ଉଲ୍‌ଟିଆ କଥା ଶୁନି
ମାସ୍‌ଦୁଏ ଲାଗି ପାଶୁଁ ନେଇଥିଲେ ଥରେ କଉଶିକ୍ ମୁନି । ॥୨୦॥

ରାମ୍-ବିଛେଦ୍ କେନ୍ତା କର୍‌ମି ହୁରୁଦ୍ ଭିତ୍‌ରେଁ ଛେଦ୍
ସେତ୍‌କି ବେଲେଁ ସେ ଜାନିଛନ୍ କେ ପାଏବା ଭେଦ୍ ? ॥୨୧॥

ସୁମିତ୍ରା କହନ୍ ମଜାନେ ରାମ୍ କଉତୁକ୍ କରନ୍ କାଏଁ ?
ନୁହେ ସମ୍ଭବ୍ ସତ୍ ହର୍‌ମେଷ୍ ରାମର୍ ପନ୍ଥେଁ ଧାଏଁ । ॥୨୨॥

କୋଶଲ୍ କେମା ରାମର୍ ମା ଯୋଗ୍ ଯୋଗ୍‌ନେ ପାଚିଛନ୍
ଉନିଆଁ ମା ତ ମୂର୍ଚ୍ଛା ଯାଏତା ସେ ଯେ ଧୀରଯ୍ ସଁଚି ଛନ୍ । ॥୨୩॥

କଉତୁକେଁ ବି ପୁଓ ତାକର୍ ନାଇଁ କହନ୍ ମିଛ୍ କଥା ।
ମୁନୁଷ୍ ଆଏ କଥା ସର୍‌ବସ ହାରି ହେବେ କାଏଁ ଅଥା ? ॥୨୪॥

କହେଲେ ବାପା, ବାପର୍ ସତ୍ ରଖିବାର୍ ଆଏ ବନ୍ଏ
ପୁଓର୍ ଲାଗିଁ ସେନ୍ତା ମାଏନ୍‌ତା ମାଁ ବି ତ ଆଏ ଜନ୍ଏ । ॥୨୫॥

ମା ଯଦ୍‌ରି ମନା କର୍‌ବା କର୍‌ବାକେ ବନ୍‌ବାସ୍
ସତ୍ ସାଙ୍ଗେଁ ତୋର୍ ପିତାର୍ ଆଶ୍ ହେବା ସରବ୍ ନାଶ୍ । ॥୨୬॥

ପିତା ହେଲେଁ ତୋର୍ ଅସତିଆ ମୁଇଁ ହେମି ଅସତୀ
ଚାରିଯୁଗେଁ କହନ୍ ନାରୀର୍ ସତ୍ ହିଁ ସଂପତି । ॥୨୭॥

ମନା ନାଇଁ କରେଁ ବାବୁ ଯିବୁ ତ ଯା’ ବନ୍
ସାଙ୍ଗେଁ ଯିମି ମନା ନାଇଁ କର୍‌ବୁ ଜୀବର୍ ଧନ୍ । ॥୨୮॥

ପିଆଛୁଆ ଗଲେଁ ନର୍‌ଦି ଥାବେଁ ଥାଏ କାଏଁ ଗାଏ ?
ତୁଇଁ ଗଲେଁ କେ’ନ କାହିଁ କେନ୍ତା ରହେମି ଘାଏ । ॥୨୯॥

କେନ୍ ବନ୍ ଯିବୁ ? ମା’ ପୁଓ ଚାଲ୍ ଜଲ୍‌ଦି ଯିମା
ସାନ୍ ମାଆଁ ତୋର୍ ଅଛେ ପାଏଲା ମହାରାଜ୍ କର୍ ଛିମା । ॥୩୦॥

ସୁମିତ୍ରା ଆଖିଁ ଝରେ ପାଏନ୍ ଭାଙ୍ଗେଁ ଲହର୍ ଘାଇ
ପର୍‌କର ନାନି ! ଅର୍‌ଦା ଦର୍‌ଦେଁ ଶରେଁ ଶର୍‌ପର୍ ଘାଇ । ॥୩୧॥

ତୁମେ ନାନି ! ପରିବାର୍‌ନେ ସମ୍‌କରୁଁ ଅ' ବଡ୍
ଇ' ଆଡ୍ ସେ ଆଡ୍ ହେଲେଁ ହେବା ସବ୍ କଥା ଗଡ୍‌ବଡ୍ । ॥୩୨॥

ରାମ୍‌ର୍ ମା, ସତୀର୍ ଶାଶ୍, ସୂରୁଯ୍ କୁଲର୍ ରାନୀ
କାଆଁଥିର୍ ଲାଗି ଅଧୀର୍ ଅଥର୍‌ନାଇଁ ପାର କାଏଁ ଜାନି ? ॥୩୩॥

କଇକୟୀ ହଇଁ ବର୍ ମାଗେ ଯେ ଦଶ୍‌ରଥ୍ ହଇଁ ଦିଏ
ରାମ୍ ହଇଁ ଯେ ବନ୍ ବାହାରିଛେ ଏଖେଇ ଜନ୍‌ଏ ସିଏ । ॥୩୪॥

ତୁମେ ତାହାକେ ନାଇଁ ଜାନ୍‌ଅ କାଏଁ ଯୋଗ୍ ଯଦ୍‌ରି ଜାନ୍‌ଅ
ଯୋଗ୍ ଯୋଗ୍‌ନେ ପାଚିଁ ରଚିଁ ଦୁର୍‌ଯୋଗେଁ ମନ୍ ହାନ୍‌ଅ । ॥୩୫॥

ପତି ଦେବର୍ ଗତି ଦେଖ ଭଲ୍ ଅନ୍‌ଭଲ୍ ତାକର୍
ତାହାକୁଁ ଛାଡ଼ି ଯାହିଁକେ ଗଲେଁ ନାଇଁ ହଉ  କଡ଼ାକର୍ । ॥୩୬॥

ରାମ୍ କହେଲେ ସୁରୁମା ଗୋ ! ଗୁରୁ ଗଉରବ୍ ତୁମେ
ସିଆନ୍ ସୁଜନ୍ ଜିତିଁ ଗିଆନ୍ ଖେଲେ ରୁମେ ରୁମେ । ॥୩୭॥

ଦେଖ୍‌ବ ଯ'ତ ବାପା ପଡିଛନ୍ ମୂର୍ଚ୍ଛିଦ୍ ନିର୍ଘାତ୍
ଅଭିଷେକ୍ ବନ୍‌ବାସ୍ ଭିତ୍‌ରେ ନାଇଁ ଦେଖେଁ ତଫାତ୍ । ॥୩୮॥

ତାହାକୁଁ ଛାଡ଼ି ନାଇଁ ଗଲେଁ ମତେ ଛାଡ୍‌ବେ ଧରମ୍
ଜନନୀ ଗୋ ! ଜନମ୍ ଦେଇଛ ନାଇଁ ଦେଇତ କରମ୍ । ॥୩୯॥

ତୁମର୍ ମେତାଲ୍ ମାଁ ପାଇଁ ମୁଇଁ ମୁନ୍‌ଷେଁ ଗନା
ସର୍‌ବ ସହା ଗୁନ୍ ମାଁ ପନର୍ ସରବ୍ ସାଧନା । ॥୪୦॥

ଗନି ଗନି ଚଉଦ୍ ବରଷ୍ ଏବେ ଯିବା ଚାଲି
ତୁମର୍ ପାହା ତଲ୍‌କେ ଫିର୍‌ମି କାଏଁ ହଉଛ ଭାଲି । ॥୪୧॥

ବିଦାୟ ଦିଅ ବଲି ରାମ୍ ମାଁକର୍ ପାହେଁ ପର୍‌ଲେ
କଉଶଲ୍ୟାର୍ ବିଶାଲ୍-ହୁରୁଦ୍-ପୁର୍‌ଥୀ ହେଲା ପର୍‌ଲେ । ॥୪୨॥

ମାଁର୍ ମୁହଁ ନାଇଁ ଫିଟ୍‌ଲା ଶରୀର୍ ହେଲା ଜଡ୍
କୁଡ଼ର୍ ଛୁଆ ରାମ୍ ଦିଶ୍‌ଲା ଘାଁଉ ଘାଏକେ ବଡ୍ । ॥୪୩॥

ନାଇଁ ଧରାଏ ପୂରା ପୁରୁଥୀ ନାଇଁ ସଁଭ୍‌ଲାଏ ଆକାଶ୍
ଜାନିନାଇଁ ପାରନ୍ ପୁଓ କୁଡେଁ କେଡ଼େ ଉଶାସ୍ । ॥୪୪॥

କେଡେ ବଡ୍ ଦିଶିଥିତା ନାଇଁ ପାର୍‌ଲେ ଦେଖି
ଆଁଖିର୍ ପାଏନ୍ ଅଟ୍‌କି ଦେଖ୍‌ବାର୍ ବାଟ୍ ଦେଲା ଛେଁକି । ॥୪୫॥

ସେତେବେଲେଁ ସୀତା ପାହେଁ ପରି କଲେ ମାଏନ୍
ମାଏନ୍ ଦେଲେ ବି ପାଶେଁ ଦେଖି ପତି ଗୁନର୍ ଖାଏନ୍ । ॥୪୬॥

ରାମ୍ କହେଲେ ବନ୍ଏ ହେଲା ଜନକ୍ ଜେମା ଆଏଲ
ଯାଉଛେଁ ମୁଇଁ ବନ୍‌ବାସ୍‌କେ ମାଁ ବାପାକୁଁ ପାଏଲ୍ । ॥୪୭॥

ମଝିଆଁ ମାଁର୍ ମନ୍ ରହେବା ବାପା ରଖ୍‌ବେ ସତ୍
ଅବଧ୍ ରାଏଜ୍ ଭରତ୍-ପାଲ୍‌ବା ରାଜ୍‌ପଣେ ହଇଁ ରତ୍ । ॥୪୮॥

ଚ଼ଉଦ ବର୍ଷର୍ କଥା ସବୁ ଦିନର୍ ଲାଗି ନୁହେ
ଘାଏକର୍ ମାଏନ୍ ଛଡ଼ାଛଡ଼ି ଫେର୍ ମିଶ୍‌ମା ଦୁହେ । ॥୪୯॥

ଖିସେଇ ଲାଗେ ଏକ୍‌ଲା କର୍‌ବ ମାଁ ବାପାକର୍ ସେବା
ଧରମ୍ ପତ୍‌ନୀ ଅ'ତ ସେଥିଁ ମୋର୍ ଭାଗ୍‌ତ ରହେବା । ॥୫୦॥

ପତି କଥା ଶୁନି ହେଲେ ଅକାବକା ସୀତା
କେନ୍ତା କହନ୍ ତାହାକୁଁ ଛାଡ଼ି ଜୀବନ୍ କାଏ ଥିତା ? ॥୫୧॥

ମା ବାପାକର୍ ସେବା କର୍‌ତା କେନ୍ତା ସୀତାର ଶବ୍
ଏନ୍ତା କଥା କେନ୍ତା କହେଲେ ଜାନୁଛନ୍ ତ ସବ୍ । ॥୫୨॥

ପତି ପଦ୍‌କେ ଆବ୍‌ରି ଧରି ସତୀ -ରାଏଜ୍ -ରାନୀ
କହି ନାଇଁ ଦିଏ ଦୁହିଁକୁଁ ବୁହିଲା ଆଖିର୍ ପାନି । ॥୫୩॥

ମୁହଁ ସଲ୍‌ଖେଇ ଏଖେଇ ପଦେ କହେଲେ ଜନକ୍ ଜେମା
ଅନ୍ତର୍ ନାଇଁ କର ଅନ୍ତର୍ଯ୍ୟାମୀ କର କ୍ଷେମା । ॥୫୪॥

ତୁମେ ଯାହିଁ ମୁଇଁ ତାହିଁ ରାମ୍ ବିନା ସୀତାର୍
ଥିତି ହେବା, ପବନ୍ ନାଇଁ  ନାଇଁ ଥାଇ ପୁର୍ଥୀ ମେତାଲ୍ । ॥୫୫॥

ଇ ପାଦେଁ ମୋର୍ ସରଗ୍ ଇ ପାଦେଁ ମୋର୍ ମୁକ୍ତି
ଅଗନା ଦିନୁ ଅଜନା ଦିନ୍‌କେ ହଇସାରିଛେ ଚୁକ୍ତି । ॥୫୬॥

ମତେ ଛାଡ଼ିଁ କେନ୍‌କେ ଯିବ ଇ ପାଦ୍ ନାଇଁ ଛାଡେଁ
ରାମ୍ ନାଇଁ ଥିବାର୍ ଠାନ୍ ଭର୍‌ମେ ବି ନାଇଁ ମାଡେଁ । ॥୫୭॥

ରାମ୍ କହେଲେ ଜନକ୍-ଜେମା ! ଜନ୍ ମେତାଲ୍ ମୁହେଁ
ସାନ୍‌ଅ ନାଇଁ ମାନ୍‌ଅ କଥା ଆର୍ ତପ୍‌ଲା ଲୁହେଁ । ॥୫୮॥

ଝାର୍ ନୁହେ ରଜାର୍ ମହଲ ନୁହେ ମଜାର୍ ଠାନ୍
ପାଦ୍ ଯେତ୍‌କି କଅଁଲ୍ ତମର୍ ବାଟ୍ ସେତ୍‌କି ଟାନ୍ । ॥୫୯॥

ଅଁତ୍ ନାଏଁନ ଜଁତ୍ ଜାନୁଆର୍ କେତେ ଅଛନ୍ ତାହିଁ
ସିଂହ୍‌ତ ତମର୍ ଅଁଟା ଦେଖି ଦେଖିବା ଅଁଟ୍‌ରାଇ । ॥୬୦॥

ହାତୀ ଦେଖି ପାଦର୍ ଗତି ମନେ ମର୍‌ବା ଭାଲି
ଭର୍‌ସା ନାଇଁ ଈର୍ଷାକେ ତାର୍ କେ ପାରେ ସଁଭାଳି । ॥୬୧॥

ଚାହାଁନି ଦେଖି ହରିନ୍ ହେବା ମର୍‌ମେ ମର୍‌ମେ ହାନି
କେନ୍ ବାଟେଁ ସେ ସୁତର୍ ଜୀବ୍ ବି ଘଟାବା ଅଶୁଭ୍ ଆନି । ॥୬୨॥

ଖରା ବର୍‌ଷା ଶୀତ୍ କାକର୍ କଟ୍‌ବା ଗଛର୍ ତଳେଁ
ବଲ୍‌କଲ୍ ଦିହେଁ କଲ୍‌ବଲ୍ ନୁହି ରହେବ କଳେଁ କଳେଁ । ॥୬୩॥

ବଇଦେହି ଗୋ ଇ ଦେହି ମୋର୍ ବୁଲ୍‌ଲେଁ ବୁଲୁ ନିଯେ
ପାଶ୍ ତମର୍ ପାଶ୍‌ରେ ନାଇଁ ଆତ୍‌ମା ପୁରୁଷ୍ ନିଜେ । ॥୬୪॥

ମୁଇଁ ଦେଇଥିଲିଁ ଦିହ୍‌କେ ସଁପି ତମେ ସଁପ୍‌ଲ ଜୀବନ୍
ଦୁହେ ମିଶିକରି ଏକ୍ ରହେମା ଘର୍ ହଉ କି ବନ୍ । ॥୬୫॥

ମାଁ ବାପ୍ କର୍ ସେବା ଆଗ ପଛେଁ ବୁଲା କିନ୍ଦରା
ତାହାକୁଁ ଛାଡ଼ି ଯାହିଁକେ ଗଲେ କାହିଁ ଲାଗ୍‌ବା ଝୁମ୍‌ରା । ॥୬୬॥

ମା ସେବାନେ ରହ ସୀତା ପିତା ସତେଁ ମୁଇଁ ଯାଏଁ
ମନ୍ ରାଏଙ୍କେଁ ଥିବ ଗୋ ମୋର୍  ଚଉଦ ବରଷ୍ ଯାଏଁ । ॥୬୭॥

ଏତ୍‌କି ଶୁନି ଚମ୍‌କି ଉଠି କଉଶଲ୍ୟା କହନ୍
ମୋର୍ ସେବାନେ ରହେବା ବହ ? ପୁଓ ବନ୍ ଗହନ୍ ? ॥୬୮॥

ଛତାର୍ ଖଁଡ଼୍‌ଏ ପଁଢେଇର୍ ଖଁଡେ ବି ହେଇ ପୁଓ ବହ
ସହେବା କେନ୍ ମା ଡ଼ାକ୍‌ନୀ ତୁଇଁ ହେଲେଁ ପୁଓ କହ । ॥୬୯॥

ମତେ ନାଇଁ ନିଏଁ ବଏଲୁ ଆର୍ କିଛି ନାଇଁ ମାଗେଁ
ନାଇଁ ମାନୁଛୁ ଯିବୁ ଯଦ୍‌ରି ସୀତା କେ ନେଏ ସାଙ୍ଗେ । ॥୭୦॥

ଜନକ୍ ଜେମା ସୀତା ମୋର୍ ବହ୍  ନୁହେ ଆଏଝି'
ସାରା ସୁକୃତ୍ ଗୁରସ୍ ହଁଡିର୍ ସଏଦ୍ ମାଏଲା ଘି' । ॥୭୧॥

ସୀତାନେ ମୁଇଁ ଥିମି ପୁତା ! ତାହାକେଁ ହେଲେଁ ଦୁଖ୍
ମୋର୍ ସାଙ୍ଗେଁ  ମା ଜାତିର୍ ମଉଲିଁ ଯିବା ମୁଖ୍ । ॥୭୨॥

କଂଟା ଝଁଟା ଦାଁଦ୍‌ରୀ ପଥର୍ ଆବ୍‌ରି ଥିବା ପଥ୍
ଝାର୍ କରୁଥିବା ଝାଏଁ ତାହିଁ ଜଁଦ୍ ଧରିଥିବେ ଘଦ୍ । ॥୭୩॥

ତୁଇଁ ଚାଲୁଥିବୁ ଆଗେଁ ଆଗେଁ ପଛେଁ ସୀତା ମୋର୍
ପଛ୍ ପାଟୁଁ ଭାଏଲ୍ ପୁହୁଁଚି ଆଏବା ବିପଦ୍ ଘନ୍ ଘୋର । ॥୭୪॥

ତାକର୍ ପଛେଁ ମୁଇଁ ଥିମି ମା' ନାଇଁ ରଖ୍‌ନ ଡର୍'
କହି ତତ୍‌କ୍ଷଣ୍ ପୁହୁଁଚି ପର୍‌ଲେ ଲକ୍ଷ୍ମଣ୍ ବୀର୍‌ବର୍ । ॥୭୫॥

ତୁହିଁ ମା ସାଙ୍ଗେ ଜନକ୍ ଜେମାର୍ ଗୋଡ଼୍‌ଶାଳେ ପରିସାରି
ରାମ୍ ପାହାନେ ମୁଡ୍ ଥୁଇଲେ ଆଖିଁ ଲହ ଝାରି । ||୭୬||

ଶୁନ୍‌ଲିଁ ବଡ଼େ ପୁରୁଁ ଯିବେ ମହାପୁରୁ ବନ୍‌ବାସ୍
ବାସ୍ କର୍‌ବା ରାଜ୍ ଉଆସେଁ କେନ୍ତା ତାକର୍ ଦାସ୍ ?'' ||୭୭||

ଉର୍ମିଳା ନେ ଉଲ୍‌ଦି ଆଇଛେଁ ମାଁ ମାନ୍‌କର୍ ସେବା
ମୋର୍ ସାଙ୍ଗେ ଆର୍ ନାଇଁ ଗୁଡ଼ାଏ ମୋର୍ କହେଁ ସେ ରହେବା । ||୭୮ ||

ମୋର୍ ଭିତରେଁ ଥାଇ କହେଲ ଯିମା ଲକ୍ଷ୍ମଣ୍ ଚାଲ୍
ବାହାର୍‌ଲିଁ କା'ର୍ 'ହଁ' 'ନାଇଁ' କେ ନାଇଁ ଟାକେଁ ନ ଆର୍ । ||୭୯

ମାକୁଁ ନୁରି ଆଏଲିଁ ଇନ୍‌କେ ମାଗ୍‌ବାକେ ଆଦେଶ୍
ଆଦେଶ୍ ସାଙ୍ଗେ ଆଶିଷ୍ ଦେବେ ସଁଶ୍‌ଏ ନାଇଁ ନ ଲେଶ୍ । ||୮୦||

ସୁମିତ୍ରା କହନ୍ ସୁମ୍‌ରି ମନେ ଆଗର୍ କଥା ମାନେ
''ଲକ୍ଷ୍ମଣ୍ ! ତୋର୍ ଜନମ୍ ବଡ଼୍‌ଖାନାନୀର୍ ଚରୁ ଦାନେ । ||୮୧||

ରାମ୍‌କୁଁ ଛାଡି ରହି ପାର୍‌ବୁ କେ'ନ ଛନ୍‌ଏ କାହିଁ ?
ରାମ୍ ଆନ୍ ତୋର ଅନ୍ତରାତ୍ମା ନୁହନ୍ ଖାଲି ଭାଇ । ||୮୨||

ମୁଇଁ ପାର୍‌ଲେଁ ରାମ୍ ସେବାନେ ସାର୍‌ତିଁ ଜୀବନ୍ ସାରା
ଆତ୍ମାର୍ ଅଧେ ପଠେଇ ରଖିମି ଜାରି ସେବାର୍ ଧାରା । ||୮୩||

ରାମ୍‌ଥିବାତକ୍ ଅବଧ୍ ସୁନ୍ଦର୍ ନାଇଁ ଥିଲେଁ ସେ ପିତା
ଆହୁରି ହତ୍‌ଶିରି ସାଙ୍ଗେଁ ନାଇଁ ଥିଲେଁ ସୀତା । ||୮୪||

ସେ ଠାନ୍ ଆଏ ସରଗ୍ ଯାହିଁ ଥିବେ ସୀତାରାମ୍
ସାଙ୍ଗେଁ ଯ ।' ଲକ୍ଷ୍ମଣ୍ ତୋର୍ ସାଫୁଲ୍ କର୍ ପ୍ରାଣ୍ । ||୮୫||

ରାମ୍‌କୁଁ ଦେଖ୍‌ବୁ ବାପ୍ ବାଗିର୍ ସୀତା ମାଁ ସମାନ୍
ବନ୍‌ବାସେଁ ନ ପାଏବୁ ଧନ ! ମରତ୍-ମହରଗ୍ ମାନ୍ । ||୮୬||

ଆପେଁ ବାହାର୍‌ଲୁ ଭକ୍‌ତ୍‌ଲୁ ରାମ୍‌ର ସେବା ଲାଗି
ନିଜ୍‌କେ ନେହେଲେଁ ଭାବିଥିତିଁ ନିଷ୍ଠୁତ୍ରୀ ହତ୍ ଭାଗୀ । ॥୮୭॥

ରାମ୍ ବନ୍‌ବାସ୍ କାଏଁ ଥିଲେଁ ଥିବା କେନ୍‌ସି ଉଖି
ତାର୍ ଭିତ୍‌ରେଁ ଦେଖେଁ ଥିବାର୍ ଭାଏଗ୍ ତୋର୍ ଲୁକି । ॥୮୮॥

ଚଉଦ୍ ଚ଼ଉଦ୍ ବରଷ୍ ରହେବୁ ରାମ୍ ସାଙ୍ଗେଁ ଖାସ୍
ସୀତା ରହି ପାର୍‌ବେ କିନି ନାଇଁ ହଏ ବିଶ୍ୱାସ୍ । ॥୮୯॥

ତୋର୍ ଭାଏଗ୍ ଦେଖିଁ ନିଜ୍‌କେ ଭାବେଁ ଭାଏଗ୍‌ବାନୀ
ଆଏଜ୍ ଜାନ୍‌ଲିଁ ଭାଏଗ୍ ଆଏସି ତାର୍ ସମିଆ ଜାନି ” । ॥୯୦॥

ରାମ୍ କହେଲେ ‘ସତ୍ କଥା ମା’ ସବୁ ସମିଆ ଜାନି
ସମିଆକେ ଜଗ୍‌ଲେଁ ଲାଭ୍ ହେଲାଲେଁ ହେସି ହାନି । ॥୯୧॥

ସମିଆ ଜାନି ମଝିଆଁ ମା’ର୍ କଥା ରଖିଲେଁ ଯ ।ଇ
ସମିଆ ଭାଗ୍‌ଲେଁ କୁଦାଲେଁ ବି ନାଇଁ ହଏ ପୁହୁଁଚାଇ । ॥୯୨॥

ଆଏଜ୍ ନୁ ମୋର୍ ଚଉଦ ବର୍ଷର୍ ବନ୍‌ବାସ୍ ହେଲା ମୂଲ୍
ଲମି ଯିବାର୍ ବିଲମ୍ ହେଲେଁ ନାଇଁ ହେବା କାଏଁ ଭୁଲ୍ ? ॥୯୩॥

ବାପା ସାଙ୍ଗେଁ ଗଲା ବେଲର୍ ଦେଖା ସାକ୍ଷାତ୍ ସାରି
ଝାର୍‌କେ ଯିବେ ବଲିଁ ରାମ୍ ଝଟ୍ ଗଲେ ବାହାରି । ॥୯୪॥

ତାକର୍ ପଛେଁ ସୀତା ପଛା ପଛ୍ ରାନୀମାନେ ।
ଦଶରଥ୍ ଅଛନ୍ ଅଶକତ୍ କଇକେୟୀ ଠାନେ । ॥୯୫॥

ରାମ୍ ପୁହୁଁଚି ପ୍ରଣାମ୍ କରୁନ୍ ତାହାକୁଁ ଛାତିଁ ଧରି
ନାଇଁ ପାରନ୍ କହି କିଛି ଦେଖନ୍ ଲହଭରି । ॥୯୬॥

ସେ ଦେଖାନେ ବାହାରି ପରନ୍ ମନ୍ ଭିତରର୍ ବଥା
ହେତ୍‌କି ଫଟିକ୍ କାହିଁ ଦିଶ୍‌ତେ କହି ପାର୍‌ଲେଁ ବି କଥା । ॥୯୭॥

ସୀତା ଲକ୍ଷ୍ମଣ୍ ପାହେଁ ପତୁନ୍ ଇମାନେ ବି ବନ୍
ଯିବେ ବଲିଁ ରଜା ଭାବି ବସ୍‌ଲେ ମନେ ମନ୍ । ॥୯୮॥

ଦୁହିଁକୁଁ ଦେଖି ବୁହିଲା ଆଖୁଁ ଲହ ଅନର୍ଗଲ୍
ଦେଖଲା ଛଟେଁ ଦେଖି ରହେଲେ କେବଲ୍ ବଲ୍‌ବଲ୍ । ॥୯୯॥

କୁନ୍ଦା ଲେଖେଁ ରହେଲେ ସବ୍ କନ୍ଦା ବୁବା କାହିଁ ?
କଇକେୟୀ କୁଁ ଦେଖି ରାମ୍ ପାଶ୍‌କେ ଗଲେ ଧାଇଁ । ॥୧୦୦॥

ପାହେଁ ପରି କହେଲେ ମା! ଯାଉଛୁଁ ଆମେ ଏତ୍‌କେଁ
ବକଲ୍ ନାଇଁ ପିନ୍ଧେଇ ରାନୀ ଛାଡ଼ି ନଉଛନ୍ କେତ୍‌କେଁ । ॥୧୦୧॥

ପାଟ୍ ପହରନ୍ ବାହାର୍ କରି ବକଲ୍ ଆନି ପିନ୍ଧାଲେ
ରାମ୍ ପିନ୍ଧ୍‌ବାର୍ ଦେଖି ଲକ୍ଷ୍ମଣ୍ ପିନ୍ଧ୍‌ବାକେ ଶଧାଲେ । ॥୧୦୨॥

କପ୍‌ସି ଯାଉଛନ୍ ରାନୀ କର୍‌ବାକେ ଇ କବାର୍
ଲୋକ୍ ସହଜେଁ ଭାବନ୍ ମତେ ରାଏଜ୍ ବାହାରର୍ ଲବାର୍ । ॥୧୦୩॥

ପଛେଁ ତ ଫେର୍ ରାମ୍‌କେ ମୋର୍ କର୍‌ବେ ବଦ୍‌ନାମ୍
ବନ୍‌ବାସ୍‌ନେ କର୍‌ବା ଯେଭେଁ କେତେ ଅଲୋକିତ୍ କାମ୍ । ॥୧୦୪॥

କହେବେ ଲୁକେ ଲୁକେଇ କିଛି ନେଇଥିବେ ଗୁପ୍‌ତେଁ
ସେ ବଦ୍‌ନାମ୍ ରାମ୍ କାଏଁ ମୂଲେଇନେବା ମୁଫ୍‌ତେଁ । ॥୧୦୫॥

ସଏନ୍ ସାମେଁତ୍ କିହେ ନାଇଁ ଯା'ନ୍ ଲକ୍ଷ୍ମଣ୍ ଛାଡିଁ
କାଏଁ କଲ୍‌କଲ୍ ବଲ୍ କଲ୍ ପିଁଧାଲିଁ ସବୁ ଝାଡିଁ । ॥୧୦୬॥

ସେ ସର୍‌ପଟ୍ ଭୂମିସୁତାର୍ ଶାଢ଼ୀକେ ଗଲା ହାତ୍
ବସ୍‌ଲା ଠାନୁ ବଶିଷ୍ଟ୍ କହନ୍ ଅଶିଷ୍ଟ୍ ଆଏ ନିହାତ୍ । ॥୧୦୭॥

ରାମ୍ ସିନା ଗୋ ସତ୍ ପାଲୁଛନ୍ ସୀତା ନୁହନ୍ ଭାଗୀ
କେନ୍ ସଂପତି ହେଲେଁ ନେବେ କହ କାହାର୍ ଲାଗି ? ॥୧୦୮॥

ତାକର୍ ସବୁ ସଂପତି ତ କେବଲ୍ ସତୀ ପନ୍
କାନି ପନ୍‌ତେଁ କେଭେଁ ବଁଧା ଥିସି କାଏଁ ସେ ଧନ୍ ?'' ||୧୦୯||

ଇ ସବ୍ ନାଇଁ ଦେଖିପାରି ରଜା ଆଏଁଖି ମୁଜି
କହନ୍ ମୁଇଁ କା'ଣା ଦେଖେଁ ନାଇଁ ପାରେ ବୁଝି । ||୧୧୦||

ସୁମନ୍ତକୁଁ କହେଲେ ମନ୍ତ୍ରୀ ! କର ଗୁଟେ କାମ୍
ପୁଓ ବହୁକୁଁ ରଥେଁ ନେଇ ଛାଡି ଅବଧ୍ ଧାମ୍ । ||୧୧୧||

ବନ୍ ରାଏଜେଁ ପୁହୁଁଚେଇ କରି ବୁଝେଇ ପାର୍‌ଲେ ଫିରେଇ
ଜୀଇଁଥିବାର୍ ତକ୍ ଗାଏମି ଗୁନ୍ ତୁମର୍ କେତେ ଧୀରେଇ । ||୧୧୨||

ସମ୍‌କୁଁ ନାଇଁ ପାର୍‌ଲେଁ ଫିରେଇ ଆନ୍‌ବ୍ ସୀତା ମୋର୍
ତାହାର୍ ହାତେଁ ଜାଗ୍‌ବା ଜୀବନ୍ ଭାଗ୍‌ବା ବିପଦ୍ ଘୋର୍ । ||୧୧୩||

ଭରତ୍ ଶତୃଘନ୍ ଆସନ୍ ନୁହେ ପାଇଛନ୍ ଖବର୍ ?
ନିଘା କର ଇ କଥାକେ-ଜରୁରୀ ଆଏ ଜବର୍ । ||୧୧୪||

ରଜାର୍ କହେଁ ମନ୍ତ୍ରୀ ଗଲେ ରଜା ଛଟପଟ୍
କହେଲେ ଜୀବନ୍ ଯାଏତା ହଏ କେତେ ଯଦ୍‌ଖଦ୍ । ||୧୧୫||

ଇସାରା ପାଇ ରାଜ୍ ପରିଚାର୍ ବଡରାନୀକର୍ ପୁର୍
ରାଜାକୁଁ ନେଲେ ସେ ଚାହୁଥା'ନ୍ କଇକେୟୀ ନୁ ଦୂର୍ । ||୧୧୬||

ରଜା କହେଲେ ରାନି ମତେ ନାଇଁ ଲାଗ୍‌ବାର୍ ବନ୍‌ଏ
ସୁନାରୀ ଠୁକୁର୍ ଠାକୁର୍ ସରେ ଏତେକେଁ ଲୁହ୍‌ରାର୍ ଘନ୍‌ଏ । ||୧୧୭||

ରାମ୍ ଗଲା କି ଲାଗ୍‌ଲା ମତେ ପ୍ରାଣ୍ ପଲାଲା ଲେଖେଁ
କହେଲେ କଉଶଲ୍ୟା ଶ୍ରବଣ୍ କୁମାର୍ ଚେହେରା ଦେଖେଁ । ||୧୧୮||

ପୁଓ ନାଇଁ ଥାଇଁ ଭିନ୍‌ଏ ଦୁଖ୍, ଥାଇଁ ଗଲେଁ ପଲେଇ
ମତେ ଲାଗ୍‌ସି ଜଲ୍‌ତା ଯୁଏକେ ଡେଲା ଲେଖେଁ ପେଲେହଛ । ||୧୧୯||

ଚଉଦ ବର୍ଷର୍ ବିଚ୍ଛେଦ୍ ଯଦି ନାଇଁ ହଏ ସହି
ସବୁ ଦିନିଆଁ ବିଛେଦ୍ କିଏ ପାର୍‌ବା କହି ? ॥୧୨୦॥

ଅନ୍ଧ ଋଷିର୍ ବରକନିଆଁର୍ ହୁରୁଦ୍ ଭିତର୍ କଥା
ଏଛନି ବୁଝି ହଏ ସୁଜି ହୁଙ୍ଗ୍ କରେ ଅଥା । ॥୧୨୧॥

ଅନ୍‌ମାନେ ଦୁଖ୍ ନୁହେ ବୁଝି ଅନ୍‌ଭବ୍ ନାଇଁ କଲେଁ
ଅନ୍ଧ ମୁନି ଜାନି ପକାଲେ ପଡ଼ି ଦୁଖ୍-ଅର୍ କଲେଁ । ॥୧୨୨॥

ରାମ୍ ତ ଆଏ ପ୍ରାଣାରାମ୍ ମନର୍ ଆନନ୍ଦ୍ ସାରା
ସେ ଆଶ୍ରାନେ ଜୀବନ୍ ଜାଁଏ ଗଲେଁ ଯାଏ ମାରା । ॥୧୨୩॥

କଉଶଲ୍ୟାଗୋ ! ସଲା ସବୁ ଗଲା ବେଲୁଁ ରାମ୍
ହେତା ହେଲେଁ ଚେତା ଥିଲେଁ ଶୁନାବ ତାର୍ ନାମ୍ । ॥୧୨୪॥

ଆନନ୍ଦ୍-ସମୁଦରେଁ ପହଁରି ଶେଷେଁ ଯାଏତିଁ ବୁଡ଼ି
ଉନିଆ ବାଟ୍ ନାଇଁ ଧର୍‌ତିଁ ତାହାରି ବାଟ୍ ହୁଡ଼ି । ॥୧୨୫॥

ରାନୀ କହନ୍ କାଁ କରି ଗୋ ! ହେସ ଅଜାନ୍‌ବାର୍
ଦୁଖ୍ ଦେସି ଯେ ତାହାକେ ଦେଖାଲେଁ କରି ପାର୍‌ସି ପାର୍ । ॥୧୨୬॥

ଧନେଇ ନାଇଁ ହଇ ତାହାକେ ଜନେଇ ମନେଇ ରହୁଁ
କଉଶଲ୍ୟାକର୍ କଥା ଶୁନି ତୁନ୍ ପଡ଼ଲେ ତହୁଁ । ॥୧୨୭॥

ଦଶରଥ୍ ରହେଲେ ଅଚେତ୍ କଉଶଲ୍ୟା ଜୁଗ୍‌ଲେ
ପୁଓ ବିଚ୍ଛେଦର୍ ଦୁଖ୍ ଦୁର୍ଦ୍ଦଶା ଦୁହିଁଲୁକ ଭୁଗ୍‌ଲେ । ॥୧୨୮॥

ବାଲମିକୀ କହନ୍ ଯିମା ଏତ୍‌କେଁ ସମିୟା ଆସି ହେଲା
ରାମ୍ ବନ୍‌ବାସ୍ କଥା ହେମା ବସି ବେଲ୍‌ହଉ ବେଲା । ॥୧୨୯॥



# ପାଉଚ୍-୮

## ରାମ୍ ଅଯୋଧା ଛାଡ଼ି ଗଙ୍ଗାଖଁଡ଼ି ପୁହୁଞ୍ଚିବାର

ସୂରୁଯ୍ ସତେଁ ସଁକରିଁ ଯାଏ ଶୁନି ରାମ୍ ଧୁନ୍
ରାମ୍ ବନ୍‌ବାସ୍ ଶୁନ୍‌ବା ସଭା ପଡେ ପର୍ଛା ତୁନ୍ । ।।୧।।

ଧିଆନେ ବୁଡି ଥିଲେ ରଷି ବାହାର୍ ଗିଆନ୍ ପାଏଲେ
ମେଲା ଥିଲା ମନ୍ -କୁରିଆ ରାମ୍ ସୁରେଇଁ ଛାଏଲେ । ।।୨।।

ଉଷଦ୍ ରଷି ସୀତା ଦେଖୁଁ ମୁନି କୁମାରୀ ଭିଲେଁ
ରାମ୍ କଥା ନାଇଁ ଯମକ୍ ଧରେ ଜାନ୍‌କୀ ନାଇଁ ଥିଲେଁ । ।।୩।।

ଜୟ ସୀତାରାମ୍ କହି କଥା କଲେ ମୂଲ୍
ଠୋଲ୍ ହେଲେ ଶୁନ୍‌ଲା ଲୋକର୍ ବୁଲା ଭାବ୍‌ନା କୁଲ୍ । ।।୪।।

ରାମ୍ ସୀତା ରଥେଁ ବସନ୍ ଲକ୍ଷ୍ମଣ୍ ଥାଇ ସାଙ୍ଗେଁ
ସୁମନ୍ତ ସାର୍‌ଥୀ ଲଗାମ୍ ଧରି ବସନ୍ ଆଗେଁ । ।।୫।।

ଅଯୋଧାର୍ ସଭେ ପିଲାଛୁଆ ବୁଢା ବୁଢୀ
ଦୁଖ୍-ଦରିଆ -ଜୁଆର୍ ଭିତ୍‌ରେ ଭରିଆ ଅଛନ୍ ବୁଡି । ।।୬।।

କେ କହୁଛେ ମନ୍ତ୍ରୀ ହୋ ! ରଥ୍ ବାହେବ ଧୀରେ
ତୁମର୍ ପଛା ପଛ୍ ଯିମୁ ଅଯୋଧା କେ ଫିରେ ? ।।୭।।

ଆଏଁଖିକେ ଅଁଧାର୍ ଦିଶେ ବାଟ୍ ଘାଟ୍ ଡିପ୍ ଡୁଡା
ଆମର୍ ଚାଲିର୍ କଁଟେ ଖେଦ ରଥେଁ ଫାନ୍ଦ୍‌ଲା ଘୁଡା । ।।୮।।

ବାସି ବରେଁ ବୁଡ଼ରିଁ ଗଲେ ସତିଆ ଦଶରଥ୍
ରାମ୍‌କେ ରଜା କର୍‌ମି କଥା ନୁହେ କାଏଁ ସତ୍ ? ।।୯।।

ସଭା ସାମ୍‌ନେ କହେଲା ସତ୍ ତୁର୍‌ତି ଗଲେ ନଟିଁ
ନଟୀ କଇକେୟୀର୍ କଥା କାଏଁ ଯାଏ ତା କଟି ? ॥୧୦॥

ଦଲ୍ ଦଲ୍ ହଇଁ ଲୋକ୍ ଚାଲିଛନ୍ ପଛେଁ ପଶୁସାରା
ଘର୍‌ପୁଷା ଚରେ ତାର୍ ପଛ୍‌କେ ଶୁଆଶାରୀ ପାରା । ॥୧୧॥

ତାର୍ ପଛକେ ପବନ୍ ବୁହେ ଗଛ ଯାଉଛନ୍ ଲହଁସି
ରଥ୍ ଗତିକେ ଜିତିଁ ଯିବେ ପାହାଡ଼ୁ ଯ ।'ନ୍ ବହିଁପି । ॥୧୨॥

ରାମ୍ ସାଙ୍ଗେ ଆମେ ଯିମୁ କେ କର୍‌ବା ମନା
ରାମର୍ ବିନା ଅଯୋଧ୍ୟାନେ ରହେବା ନୀଚ୍ ମନା । ॥୧୩॥

କଇକେୟୀ ଥାଉ ମନ୍ଥରା ଭରତ୍ ରଜା
ଜନ୍‌ଏ ରଜା ଜନ୍‌ଏ ମନ୍ତ୍ରୀ ଆର୍ ଜନ୍‌ଏ ପରଜା । ॥୧୪॥

କିଏ କହେ ଦେଖ୍‌ତ ଭାଇ କେନ୍ତା କଥା ହେଲା
କାଁ କାଯେଁ ବିଧାତା ପୁରୁଷ୍ ଆମ୍‌କୁଁ କଲା ହେଲା । ॥୧୫॥

ପାଟୁଁ ହଲଦୀ ମେଟେ ନୁହେ ପାଦ୍ ଉପ୍‌ରୁଁ ଅଲ୍‌ତା
ବନ୍ଧାନି ଝୁଁଟି ନାଇଁ ମେଟି ନାଇଁ ଲିଭିଥିବା ସଏଲ୍‌ତା । ॥୧୬॥

ବିହାର୍ କୁନୁଆଁ ଯାଆନ୍ ନୁହେ ବିହେଇ ବର୍‌କନିଆଁ
ବନ୍‌ବାସ୍ ଯିବେ ଧଏନ୍ ବିହି ଧଏନ୍ ତୋର୍ ଦୁନିଆଁ । ॥୧୭॥

କଉଶିକ୍ ଘୋର୍‌କାର୍ ଯାହିଁ ଜନକ୍ କନିଆଁ ଦାତା
ବଶିଷ୍ଠ ଋଷି ପୁର୍‌ହିତ୍ କନିଆଁ ସୀତା ଜଗତ୍ ମାତା । ॥୧୮॥

ସବୁନୁ ବଢ଼ିଆ ଲଗନ୍ ଯାହିଁ ରାମ୍ ବର୍‌ପିଲା
ସେ ବିହାର୍ ପରେଁ ପରେଁ ଝାର୍‌କେ ଯିବାର୍ ଥିଲା ॥୧୯॥

ମୁନ୍‌ଷର୍ ହାତେଁ ନୁହେ ସବୁ ଦଏବୀର୍ କରାମତି
ବନିହାଁ ଦିନୁ ବନେଇ ରଖ୍‌ସି ଯାହାର୍ ଯେନ୍‌ଟା ଗତି । ॥୨୦॥

ଜନ୍‌ଏ କହେ ଜୀବନ୍ ଜୀଏଁ ଆନନ୍ଦ୍ ଟିକର୍ ଲାଗି
ଆନନ୍ଦ୍ ଆଉ୍‌କେ ପ୍ରାନୀ ମାତ୍ରକେ ପଲାନ୍ ଭାଗି ଭାଗି । ॥୨୧॥

ଆନନ୍ଦ ମୂରତି ରାମ୍‌ର୍ ବିନେ ଅବଧ୍ ସାଁପର୍ ଜୋଗ୍
ମଁଇ୍ ଗଲା କି ଗଛର୍ ପଲ୍ଲକ୍ କେବଲ୍ ପୋକର୍ ଭୋଗ୍ । ॥୨୨॥

ରଥେଁ ରାମ୍ ଠିଆ ଉଠି କେତେବେଲେଁ ଉତ୍‌ରି
ଶରଧା ସନା କଥା ଭିତରୁଁ ସେନ୍‌ହେ ପରେ ନିଥିରି । ॥୨୩॥

କହନ୍ "ବଛର୍ ଚଉଦଟା ହୋ ଏ' ଦେ ଯିବା ଗଡି
ଫିରିଁ ଆସି ତୁମର୍‌ହି ଦୁଖ୍ ସୁଖେଁ ରହେମି ଜଡି । ॥୨୪॥

ଯାଇ ଦିଅ ମୋର୍ କାମେ ଫିର ନିଜର୍ ଘର୍
ଆଏଲେଁ ରହେମି ତମର୍ ହଇଁ ସାରା ଜୀବନ୍ ଭର୍ । ॥୨୫॥

"ନାଇଁ କହନ୍ ମନ୍-ମହନ୍ ଆନନ୍ଦ ବିନା ମନ୍
କେନ୍ତା ହେବା ଉଜାଲା ଭର୍‌କ ଛାନି ଆନ୍‌ଲେଁ ଜନ୍ ? ॥୨୬॥

ଗୁର୍‌ସୁଁ ସର୍ କାଢି ଆନ୍‌ଲେଁ ଯେନ୍ତା ହେବା ଦଶା
ଲୋକ୍ କହୁଛନ୍ ଆମ୍‌କୁଁ ନେଇ ଝାରେଁ ରାଏଜ୍ ବସା । ॥୨୭॥

ମମ୍‌ତା-ଅଏରି ରାମ୍‌କେ ଆଜିର୍ ମମ୍‌ତା ରଖେ ଛାନ୍ଦି
ସବୁ ବଂଧନ୍ ଫିଟାନେ ବାଲା ନିଜେଁ ହଉଛେଁ ବାନ୍ଧି । ॥୨୮॥

ସେ ବଂଧନ୍ ଘାଉଁ ଘାଏକେ ବର୍କସ୍ ହଏ ଟାନି
ଭିଜି ଭିଜିଁ ଗୁଡାଲା ଲୁକର୍ ଗଡାଲା ଆଁଖିର୍ ପାନି । ॥୨୯॥

ରଥ ଚାଲିଛେ ଥାକି ଥାକି ଭିଡ୍ ଚାଲିଛେ ଧୀରେ
ଘାଏକେ ଘାଏ ରାମ୍ ବୁଝାଲେଁ ଜନ୍‌ଏ ବି ନାଇଁ ଫିରେ । ॥୩୦॥

ତମ୍‌ସା ନଦୀର୍ ଖଏଣ୍‌କେ ହଉଁ ହଇଁଗଲା ବେଲ୍‌ବୁଡା
ରାମ୍ କହେଲେ ରହେମା ଇନେ ରଥୁଁ ଡିଲ ଘୁଡା । ॥୩୧॥

ସୀତାରାମ୍ ଗଛ୍ ତଲ୍‌ଟାକେଁ ଆର୍ ଗୁଟେକେଁ ଲକ୍ଷ୍ମଣ୍
ଆଶ୍‌ପାଶ୍ ସବୁ ଆବ୍‌ରି ନେଲେ ଅଯୋଧାର୍ ଲୋକ୍ ଜନ୍ । ।।୩୨।।

ଏତେ ଲୁକର୍ ଖାଏବାର୍ କେ କେ'ନୁ ମିଲ୍‌ତା ରାତିଁ ?
କିହେ ନାଇଁ ଖାଇ ପାନି ଲିଭାନ୍ ପେଟର୍ ତାତି । ।।୩୩।।

ସମ୍‌କୁଁ ବସେଇ କହେଲେ ରାମ୍ ସେନ୍‌ହେ ସାନି କଥା ।
ତୁମର୍ ଭଲ ପାଏବାର୍ ମୋର୍ ମନେ ଦେଲେଁ ବଥା । ।।୩୪।।

କାହାରି ଲାଭ୍ ନୁହେ ତୁମ୍‌କୁଁ ନାଇଁ ଦିଏ କାମ୍
ଭରତ୍ ରଜା ନୁହିଲେଁ ମିଲ୍‌ବା ମତେ ହିଁ ବଦ୍‌ନାମ୍ । ।।୩୫।।

ଭରତ୍-ଠାନେ ମତେ ଦେଖ୍‌ଲେଁ ସମ୍‌କୁଁ ହେବା ଭଲ୍
ମୋର୍ ଅନୁରୋଧ୍ ଘରକେ ଫିର ନାଇଁ ହଉ ଉଜଲ୍ । ।।୩୬।।

ପହଁଟିଆ ନାଇଁ ଉଦୁଁ ଆମେ ଯିମୁ ଦୁସ୍‌ରା ବନ୍
ଯାହିଁ ଗଲେଁ ବି ତମର୍ ଠାନେ ବନ୍ଧା ରଖୁଛେଁ ମନ୍ । ।।୩୭।।

ଅପାରୁ ମେତାଲ୍ ବାପା ଥିଲେ ନାଇଁ ଫୁଟୁଥାଇଁ କଥା
ତୁମ୍‌କୁଁ ଦେଖ୍ ପାଶ୍‌ରି ନେତେ ପୁଓ ପଲାବାର୍ ବଥା । ।।୩୮।।

ନାଇଁ ନୁର୍‌ବନ ମତେ ଆର୍ ଫିରିଯ ଅଯୋଧିଆ
ସେନୁ ସୁଖାଲେ ସ ବ୍ ନଏଦ୍ ଖଁଡି ଖଁଡ୍ ନିଦିଆ । ।।୩୯।।

ନାଇଁ ଉଠନୁ ଲୋକ୍‌ଜନ୍ ସବ୍ ନାଇଁ ଉଦ୍‌ନୁବେଲ୍
ସୁମନ୍ତର୍ ରଥେଁ ରାମ୍ ଲକ୍ଷ୍ମଣ୍ ସୀତା ମେଲ୍ । ।।୪୦।।

ପାର୍‌ହଇଁ କେତେ ଝାର୍ ପର୍‌ବତ୍ ହେଲେ ଗଙ୍ଗାର୍ ଖଁଡି
ସ୍ନାନ ଶଉଚ୍ ସାର୍‌ଲେ ଗଙ୍ଗାର୍ ମାଆଁର୍ ପାହେଁ ପଡି । ।।୪୧।।

ନଏଦ୍ ଖଁଡିନେ ସମ୍‌ଲେ ଦେଖେଁ କୁଶମ୍ ଗଛର୍ ତଲ୍
ଲକ୍ଷ୍ମଣ୍ ମାରି ଡାଲ୍ କୁରିଆ ନୁରି ଆନ୍‌ଲେ ଫଲ୍ । ।।୪୨।।

ଖବର୍ ପାଇ ଶବର୍ ରଜା ଗୁହକ୍ ଧୀର୍ ବୀର୍
ପୁହୁଁଚି ରାମ୍‌ର୍ ପାହେଁ ପର୍‌ବେ ଲୁହଭ ଥିଲେ ଶିର୍ । ॥୪୩॥

ଅଧା ଧୂରୁଁ ଦେଖି ରାମ୍ ଆଉଜି ଆନ୍‌ଲେ ଛାତି
କହେଲେ ମିତ ! ତୁମେ ବିତ ଆସିଁ ଆଏଲ୍ ରାତି । ॥୪୪॥

ସକାଲେଁ ତମର୍ ସାଙ୍ଗେଁ ଭେଟ୍ ଘାଟ୍ ନାଇଁ ହେଇଁ
କେନ୍‌ସି ମିତ୍‌ରେଁ ମଏତର୍ ହୋ ଯାଏତିଁ କାଏଁ ପଲେଇଁ । ॥୪୫॥

ମିତ୍ ମଏତର୍ ହେଲେଁ ପରେ ହଇଁ ଯାଏସନ୍ ଗୁଟେ
ନିଜର୍ ନିଜର୍ ଜାଏତ୍-ଗୁତର୍ -ମାନ୍-ଅଭିମାନ୍ ଟୁଟେ । ॥୪୬॥

ତୁମେ ଯିଏ ମୁଇଁ ସିଏ ଭାବ୍‌ନାର ହଏ ପ୍ରକଟ୍
ଶିଖି ହେସି ପ୍ରଭୁ ସାଙ୍ଗେଁ ହଇଁ ଯିବାକେ ନିକଟ୍ । ॥୪୭॥

ଶବର୍ କୁଲେଁ ଜନମ୍ ଜାନି ନିଜେଁ ନୁହେ ସାନ୍
ଝାର୍‌ପତ୍‌ରାନେ ବାସ୍ କଲେଁ କିଏ ହଏ ଅଜ୍ଞାନ୍ । ॥୪୮॥

ରଜା ଥିଲେଁ ଅଯୋଧିଆନେ କାହିଁ ପାଏତିଁ ଦେଖା
କାଏଁ ମେଟ୍‌ତା ତମର ସାଙ୍ଗେଁ ଭେଟ୍ ଦଏବୀର୍ ଲେଖା । ॥୪୯॥

ଗୁହକ୍ କହେ ''ତୁମେ କିଏ ମୁଇଁ କିଏ ନାଇଁ ଜାନି
ମୁଇଁ ଭକ୍ତିହୀନ୍ ତୁମକୁଁ ଶକ୍ତିମୟ୍ ମାନି । ॥୫୦॥

ନଏଦ୍ ଖଁଡିର୍ କୁର୍ମା ଛାଡି ପାହା ପତ୍ର ମୋର୍ କୁରିଆ
ଡାକ୍ ପକାଲେଁ ଶୁଭେ ଛନୁ ଆହୁଁ ନୁହେ ଦୂରିଆ । ॥୫୧॥

ଫଲ ମୂଲ ଦି'ଟା ଯୁଟାଇ ତମର୍ ଭୋଗ୍ ଲଗାଇ ପାଏମୁଁ
ଏନ୍ତା ସୁଯୋଗ୍ ଜୁଗି ଜୁଗି କେତେ ଜନମ୍ ଧାଏଁ ମୁଁ । ॥୫୨॥

ରାମ୍ କହେଲେ ସତ୍ କରିଛେଁ ରହେମି ମୁନି ମିତାନ୍
ନହେଲେଁ ଇନେ ରହେତୁଁ କାଏଁ ପାଶେଁ ଥାଉନ୍ ମିତାନ୍ । ॥୫୩॥

ଚ଼ଉଦ ବରଷ୍ ଲାଗିଁ ମତେ ଘର୍ ସଉଧ୍ ମନା
ଇନେ ରହେମି ସବୁ କହେମି ନାଇଁ ହୁଅ ଦୁଖ୍‌ମନା । ॥୫୪॥

ଗୁହକ୍ ରଜାର୍ ପୁଓ ପରଜା ଗୋଦ୍ ପରିବାର୍
ଜମି ଯାଉଛନ୍ ପାହା ଧି଼ଏଲ୍‌କେ ସାହାସ୍ ନାଇଁ ହେବାର୍ । ॥୫୫॥

ପାଶ୍‌କେ ଆସି ହସି ହଁସେ କହେଲେ ରାମ୍ ନିଜେ
ମୁଇଁ ତ ନିଜର୍ କାଏଁ ଅପ୍‌ସର୍ ପାଶେଁ ବସ ନିଯେ । ॥୫୬

ଯେ' ଯେନ ଥିଲେ ସେନେ ମୁଡ଼ିଆ ମାରି ଉଠ୍‌ଲେ
ସୁନ୍ଦର୍‌ପନର୍ ଅସ୍‌ରା ପସ୍‌ରା ଆଁଖିର୍ ହାତେଁ ଲୁଟ୍‌ଲେ । ॥୫୭॥

ମାଛି ଅନ୍ଧରିଆ ଶାମଲ୍ ମୁହେଁ ମଲି ଫୁଲିଆ ହଁସି
ମେଘୁଁ ମେଘ୍‌କେ ବିଜ୍‌ଲି ମାରି ଯାଏ ପଶି ପଶି । ॥୫୮॥

ମର୍‌କତ୍ ପର୍‌ବତୁଁ କାଏଁ ରୂପାର୍ ଧୋବ୍ ଧାର୍
ପର୍‌ପାଦ୍ ଲେଖେଁ ଛଲ୍‌କିଁ ଛିଁଛରେ ପାଶର୍ ବୁଟା ପାର୍ । ॥୫୯॥

ଝାର୍ ବାସିନ୍ଦା ଲୋକ୍ ଛୁଆ ଯୁଆନ୍ ବୁଢ଼ା ବୁଢ଼ୀ
ହଁସି ମହା ଆନନ୍ଦ-ରସେଁ ଡୁବ୍‌କିଁ ଗଲେ ବୁଡ଼ି । ॥୬୦॥

ଉପ୍‌କିଲେ କି କାହାରି ହେଲେଁ ନାଇଁ ରହେଲା ସୋର୍
ରାମ୍ ଆର କାଏଁ ପର୍ ତିସର୍ ସଭେ ଭାବନ୍ ମୋର୍ । ॥୬୧॥

କିଏ କହେ ଏଡ଼୍‌କି ସୁନ୍ଦର୍ ବାଛି ତିନି ମୂର୍‌ତି
ବନସ୍ତର୍‌କେ ପଠାଇ କିଏ ବନାଲା କେନ୍ ବନ୍‌ତି । ॥୬୨॥

କେ କହେଲା ଭଲ୍ ହେଲା ଯେ ପଠାଲା ରାମ୍‌କେ
କେତେ ଜନ୍‌ମେ ଘର୍‌ବଏଠୁ ପାଏତାଁ ଆନନ୍ଦ୍ ଧାମ୍‌କେ । ॥୬୩॥

କଥୁଁ କଥା ହଉନ୍ ହଉନ୍ ରାଏତ୍ ଗଲା ଗରିଁ
ମାଁର୍ କୁଡ଼େଁ ଛୁଆ ଝୁମ୍‌ରି ଗଲେ ଉଲ୍‌ମି ପରି । ॥୬୪॥

ସମ୍କୁଁ କହେଲେ ରାମ୍ ଏତ୍‌କେଁ ଯା' ନିଜର୍ ଘର୍
ଅଠିପର୍ ମୁଇଁ ତମର୍ ଆଏଁ ନାଇଁ କର୍‌ବ ପର୍ । ॥୬୫॥

କୁଶମ୍ ତଲର୍ କୁର୍ମାକେ ଆଶ୍ରିଲେ ସୀତାରାମ୍
ଗୁହକ୍ କହେଲେ ଭାଇ ଲକ୍ଷ୍ମଣ୍ ! ନିଅ ଟିକେ ବିଶ୍ରାମ୍ । ॥୬୬॥

ଲକ୍ଷ୍ମଣ୍ କହନ୍ ରାମ୍ ଆଇଛନ୍ ଝାର୍‌କେ ହଇଁ ଯୁଗୀ
ଆଇଛେଁ ସାଙ୍ଗେଁ କର୍‌ତବ୍ ମୋର୍ ତାହାକୁଁ ରହେବାର୍ ଜୁଗି । ॥୬୭॥

ଆଇଛେ ତାକର୍ ସେବାନେ ମୁଇଁ ଦିନ୍ ନେବାର୍ ଲାଗି
ତାହାକୁଁ ଖୁଆଇ ଅଖିଆ ରହି ଶୁଇଲେଁ ରହେମି ଜାଗି । ॥୬୮॥

ଚଉଦ ବର୍‌ଷେଁ ଚଉଦ ପୁରୁଷର ସାଫୁଲ୍ ହେବା ସପନ୍
ନାଇଁ ହଦ୍‌ରେଁ ଜୀବନ୍ ଯାକ ଜାରି ରଖିମି ଯତନ୍ । ॥୬୯॥

ସୁରୁଯ୍ ଆସନ୍ ହରବର୍ ହଇଁ ଝାର୍ କୁକ୍‌ରା ଡାକ୍‌ଲା
ଭୁରୁ ଉପରେଁ ପୁରୁବ୍ ଦିଗ୍ ସେନ୍ଦୁର୍ ଆନି ମାଖିଲା । ॥୭୦॥

ଚରେ ହେଲେ ଟୁରୁବୁରୁ ହରେକ୍ ରକମ୍ ଭାଷିନେ
ଭଅଁର୍-ଗୀତ୍ ମୂଲେଇ ଆନ୍‌ଏ ମଲୀର୍ ମୁଲ୍‌କି ହଁସିନେ । ॥୭୧॥

ସୀତା ଚେତ୍‌ଲେ ହେ ରାମ୍‌ବର୍ଣ୍ଣି ଲକ୍ଷ୍ମଣ୍ ଶୁନ୍‌ତେ ସାର୍
ତୁମ୍ଭଧାରି ଉତ୍‌ରି ପର୍‌ଲେ ତୁର୍‌ତି  ଗଙ୍ଗା ପାର୍ । ॥୭୨॥

ହାତେଁ ଉଲ୍‌ମାଇ ପାଏନ୍ ତୁମ୍ଭାକେ କୁର୍ମା ଆଗେଁ ଥୁଇଲେ
ତୁତା ତୁତି ସୀତାରାମ୍ ମୁହଁ କାନ୍ ଧୁଇଲେ । ॥୭୩॥

କୁନ୍ଦା ବେଡା ଲେଖେଁ ଦେଖେନ୍ ଇ ସବୁ ମନ୍ତିରୀ
ଆଖୁଁ ବହେ ଅନୁଖନୁ ଲହଧାର୍ ଷଡ୍‌ଯନ୍ତିରି । ॥୭୪॥

ପାଟ୍ ସୁପାତ୍‌ଥିଁ ଶୁଇଲା ଗୁସିଆଁ ପତର୍ ଦସେଇଁ ଶୁଏ
ସୁଖ୍ ସଂଭୋଗ୍ ସତେ କେଭେଁ କାହାରି ବନ୍ଧୁଆ ନୁହେ । ॥୭୫॥

ସଭେ ସାଏଲେ ସକାଲ୍ ବେଲ୍‌ର୍ ସବୁଦିନିଆ କାମ୍
କୁର୍ମା  ଆଗେଁ ବସ୍‌ଲେ ଘାଏ ଲକ୍ଷ୍ମଣ୍ ସୀତା ରାମ୍ । ।।୭୬।।

ଝାର୍‌ବାସୀ ସବ୍ ଧା'ର୍ ଧରି ହଇଁ ଗଲେ ନ ଠୋଲ୍
ରାମ୍‌କୁଁ ଛାଡ଼ି କେନ୍ କାମ୍‌ନେ ହଇ ପାର୍‌ତେ ଭୋଲ୍ ? ।।୭୭।।

କିଏ ଆନି ଚନ୍ଦନ୍ ଘାରିଁ ଦୁହିଁ ଭାଇକୁଁ ମଖାଲା
ନାରୀ ଫାଗିଁ ସେନ୍ଦୂର୍ ଫରୁଆ ସୀତା ଆଗେଁ ଦେଖାଲା । ।।୭୮।।

ବେଁକ୍ ମାନ୍‌କୁଁ ଠାନ୍ କାଇଛେ ପିଁଧାଲେ ଯେତେ ମାଲ୍
ଫୁଲ୍ ଛଡ଼ା ଥିଲା ଗୁଂଜ୍ ମୋତି ହୀରାର୍ ହାର୍ । ।।୭୯।।

କିଏ ଜନ୍‌ଏ ତୁର୍‌ତି ଜୁଏ ଅଙ୍ଗରା ଦୁକର୍ ଉପ୍‌ରେଁ
ଗଛର୍ ବାସ୍‌ନା ଲସା କୁହୁଲେଇ ଦେଲା ବଦ୍‌ରେଁ । ।।୮୦।।

ଗଦା ହେଲା କେତେ ଫଲ୍‌ମୂଲ୍ ଏଖେଇ ଘାଏକର୍ ଭିତ୍‌ରେଁ
ବଛା ନିଛା ହଇଁ ବଢ଼ା ହେଲା ବନ୍‌ଏ ପତ୍‌ରେଁ । ।।୮୧।।

ରାମ୍ କହେଲେ ଆସ ମିତ ! ମହା ମନ୍ତ୍ରୀକୁଁ ଡାକ
ଶର୍‌ଧା -ରସେଁ ଟମ୍ ଟମ୍‌ଉଛନ୍ ଇ ଫଲ୍‌ମୁଲ୍ ଯାକ । ।।୮୨।।

ପର୍‌ସାଦ୍ ପାଏଲେଁ ପଲାମୁ ଆମେ ନୂଆଁ ଝାର୍
ସଙ୍ଗାତ୍ ! ଗଙ୍ଗାନଏଦ୍ ଇହାଛିନି ହେମୁଁ ପାର୍ । ।।୮୩।।

ପର୍‌ସାଦ୍ ସାଙ୍ଗେଁ ରହନି ସର୍‌ଲା ଲହିଁକି ଯିବେ  ଗଙ୍ଗା
ସୁମନ୍ତ୍ରକୁଁ  କହନ୍ ରାମ୍ ନାଇଁ ଚଢ଼ନ୍ତୁ ଡ଼ଙ୍ଗା । ।।୮୪।।

ପାଖ୍‌କେଁ ଗଙ୍ଗାର୍ ଧାର୍ ବୁହେ ପାଖେ ଲୁହର୍ ଧାର୍
ଦୁହି ଧାର୍‌ର  ମଝିଁ ରାମ୍ କେନ୍‌ଟା ହେବେ ପାର୍ ? ।।୮୫।।

ମନ୍ତ୍ରୀ ଆଖୁଁ ଧାର୍ ବୁହେ ଘୁଡ଼ା ଆଁଖିର୍ ପାନି
ଗଙ୍ଗା ଯମ୍‌ନା ସରସ୍ୱତୀ ନିଅନ୍ ରାମ୍‌ର ମନ୍ ଟାନି । ।।୮୬।।

ମନ୍ତ୍ରୀ କହନ୍ ନାଇଁ ଫିରେଁ ଅବଧ୍ ଆଉର୍ ରାମ୍
ଆଜୁଁ ଆଉର୍  ନାଇଁ କରେଁନ ମହାମନ୍ତ୍ରୀ କାମ୍ । ॥୮୭॥

ମୁଇଁ ରହେମି ତୁମର୍ ସାଙ୍ଗେଁ ବୁଲି ବୁଲି ଝାର୍
ପଶୁ ହଇଁ ବି ଘୁଡାମାନେ ତୁନ୍ ନାଇଁ ପଡ଼୍‌ବାର୍ । ॥୮୮॥

ମିତ ଜାନୁନ୍ ଲୋକ୍‌ଟେ ଦଉନ୍  ଖବର୍ ନେଇଁ  ଯିବା
ଘୁଡା ଫିର୍‌ବାକେ ନାଇଁ ମଙ୍ଗନ୍ ରଥ୍‌ଟା ଇନେ ଥିବା । ॥୮୯॥

ହସି ହସି ରାମ୍ କହେଲେ ମହାମନ୍ତ୍ରି ତୁମେ
ଯାହା କରିଛ ସୁରୁଯ୍ ବଂଶର୍ ଭେଦିଛେ ଭୁମେ ଭୁମେ । ॥୯୦॥

କେତେ ଆପଦେଁ ଧୀରଯ୍ ଦେଇଛ କେତେ ଦୁଖେଁ ସାହା
ସୁରୁଯ୍ କୁଲ୍‌ର୍ ମନ୍ତ୍ରୀ ନୁହ ତ ଅ' ଭୁଇନ୍ ବାହା । ॥୯୧॥

ଶୁଇଲା ଛଁଛେଁ ବାପା ଶୁଇଛନ୍ ଆମେ ଆଇଛୁଁ ଚାଲି
କେନ୍ତା ନାଇଁ କେନ୍ତା ହଇଥିବେ ହଏଁ ଭାଲି । ॥୯୨॥

ଫିରିଥିବେ କି ମାମୁଁ ଘରୁ ଭରତ୍ ଶତ୍ରୁଘନ୍ ?
ସୁଦ୍‌ରେଁ ପାଦ୍‌ରେଁ ଥିବା କି ନି ଯେ ମାଁ ମାନ୍‌କର୍ ମନ୍ । ॥୯୩॥

ତୁମେ ଗଲେଁ ସେ ସବୁକେ ନେଇଯିବ ସଁଭାଲି
ମୋର୍ ସାଙ୍ଗେଁ ଥିଲେଁ ଦୁହେଁ ଝାରେଁ ମର୍‌ମା ଭାଲି । ॥୯୪॥

ଘୁଡା ମାନ୍‌କର୍ ବେଁକ୍ ଥର୍ରେଇ କରନ୍  ଚ-ଚ
ଝାରେଁ ଥିଲେଁ ବୋଝ୍‌ହେବ ଘର୍‌କେ ଯ' ଯ' । ॥୯୫॥

ହିନ୍ ହିନାଇ ଘୁଡାମାନେ ଗୋଡ୍‌କେ ପିଟି ତଲେଁ
ରାମ୍ ଦିହେଁ ଘଁସ୍ରେଇ ହଇ ରହେଲେ କଲେଁ କଲେଁ । ॥୯୬॥

ମନ୍ତ୍ରୀ କହନ୍ ରାମ୍-ଇଚ୍ଛା ନୁହେ ଆନ୍ ଅଦଲ୍
କାଏଁ ବଲ୍ ମୋର୍ ଦଏବୀର୍ କାଟ୍‌ବାର୍ କର୍‌ମି ବଦଲ୍ । ॥୯୭॥

ରାଜା କହିଥିଲେ ରାମ୍ ସୀତାକୁଁ ବୁଝେଇ ଫିରାବ
ସୀତାକୁଁହେଲେଁ ଆନି ପାର୍‌ଲେଁ ମତେ ନାଇଁ ହରାବ । ॥୯୮॥

ବାଟ୍ ଦେଖୁଥିବେ ତାକୁଁ କା'ଣା କହେମି କହ
ଏକ୍‌ଲା ଦେଖି ଯାହା କହେବେ କରି ହେବା କାଏଁ ସହ ? ॥୯୯॥

ରାମ୍ କହେଲେ ନିଶ୍ଚେ ହେସି ହେବାର୍ ଥିସି ଯାହା
ଆମର୍ ଭାଗୁର୍ କୁଟୁର୍ କେ'ନ କାଟି ପାର୍‌ସି ତାହା ? ॥୧୦୦॥

ଗଙ୍ଗା ଖଏଣ୍‌କେ ଡଙ୍ଗା ଆନି ନାଉରୀ ମାନେ ଡାକୁଛନ୍
ସୀତା ଲକ୍ଷ୍ମଣ୍ ବସିଁ ଗଲେ ଛନ୍‌ଏ କେନ ଟାକୁଛନ୍ । ॥୧୦୧॥

ଡଙ୍ଗା ନିକେ ଗଲେ ରାମ୍ ମନ୍ତ୍ରୀ ଅବଧି ବାଟ୍
ଉଖ୍‌ଲିଁ ଗଲା ଶବର୍ ରଜାର୍ ଡ଼ଙ୍ଗା ଖଁଡ଼ିର୍ ହାଟ୍ । ॥୧୦୨॥

ଗଙ୍ଗାର୍ ଆର୍ ପାରେଁ ରହନ୍ ଋଷି ଭରଦ୍ୱାଜ୍
ରାମ୍ ପୁହୁଁଚି ଦେଖଲେ ସେ'ନେ ଚାଲେ ଶାନ୍ତିର୍ ରାଜ୍ । ॥୧୦୩॥

ଋଷି କହନ୍ ରାମ ଭଜନ୍ ସାର ଏତ୍‌କେଁ ଯିମା
କପାଲେଁ ଥିଲେଁ କାଏଲ୍ ସକାଲେଁ ରାମ୍-ଧନ୍ ଅରଜିମା । ॥୧୦୪॥



# ପାଉଚ୍-୯
# ଚିତ୍ରକୂଟେଁ ରାମ୍ ଭରତ୍ ମିଳନ୍

ବାଦଲ୍ ନାଇଁ ବେଲ୍ ଉଦିଛେ ଦିଗ୍ ଦିଶେ ପର୍ଚ୍ଛା
ଯମ୍‌କ ଧରେ ବାଲ୍ମିକୀର୍ ସକାଲ୍ ବେଲର୍ ଚର୍ଚ୍ଚା । ॥୧॥

ମୁନି କହନ୍ ଦୁଖେଁ ଦଶ୍‌ନା ଧରନ୍ ଦଶ୍‌ରଥ୍
ଦେଖନ୍ ହାରୀ ରଜା, ମୁହ୍‌ତୁ କରେ କସରତ୍ । ॥୨॥

ସୀତା ଆଏବେ ରାମ୍ ଆଏବେ ବାଧିଥିଲେ ଆଶ୍ା
ଆଶ୍‌କେ ଅସାର୍ କରି ନିଶାସ୍ ବହେ ଅଣଂଚାଶ୍ । ॥୩॥

ମନ୍ତ୍ରୀ ଆଏଲେ ନାଇଁ ଆଏଲେ ରାମ୍ ଲକ୍ଷ୍ମଣ ସୀତା
ଠାନ୍ ଛାଡି ଜାନ୍ ଭାଗ୍‌ଲା କାହାର୍ ଲାଗି ଥିତା ? ॥୪॥

ଚାରି ଆଡେ଼ ହୁରି ପଡ୍‌ଲା ବାହାରିଁ ଗଲେ ରଜା
ଚାରି ପୁଓନୁ ଜନ୍‌ଏ ବି ନାଇଁ ଦଏବୀ ଦେଖେ ମଜା । ॥୫॥

ରାମ୍ ବନ୍‌ବାସ୍ ଦୁଖେଁ ଏକେଁ ରାଏଜେ ଜଲେ ଜୁଏ
ରଜାର୍ ମରନ୍ ପବନ୍ ହଇଁ ତାର୍ ଉପରେ ବୁହେ । ॥୬॥

କାଁ କର୍‌ବେ ରାନୀ ମାନେ କାନ୍ଦି ବୁବେଇ ମରୁଛନ୍
କର୍‌ଖେଇ ଦେଖ୍ କଇକେୟୀ କେ କଥା-କଁଟା ହୁରୁଛନ୍ । ॥୭॥

ରାମ୍ ବନ୍‌ବାସ୍ ଗଲେଁ ଯିବା ରାନୀ ତୁରି ଲାଖ୍
ରଜାର ଜାନ୍-ଚରେକେ ତବିହି ବିନ୍ଧେ ଲାଖ୍ । ॥୮॥

ଧୁଆଁ ଧୁପା ହୁଆ ହୁଟା ସବୁ ଆଡେ଼ ଲାଗିଛେ
ରାଏଜେଁ ସୁଖ୍ ନାଇଁ ରାମ୍‌ର୍ ପଛା ପଛ ଭାଗିଛେ । ॥୯॥

କିଏ କହେ ମଝିଲୀ ମୁହେଁ ମାଗି ବୁଢ଼କା ବୁହିଛୁ
ବୋଝ୍ କଲା ବଲିଁ କହେଲେଁ ଶୁନ୍‌ବା କେ ଚାହିଁଛୁ ? ॥୧୦॥

ଖବର୍ ପାଇ ବଶିଷ୍ଠ୍ ଋଷି ତତାପନା ଆଏଲେ
ଗିଆନ୍-ମାରଗ୍ ଦେଖେଇ କଥା ବୋଧ୍ କରି କହେଲେ । ॥୧୧॥

ଅଡୁଆ ହେଲା ନାଇଁ ଆଏବାର୍ ଭରତ୍ ଶତ୍ରୁଘନ୍
କଇକେୟୀ କହନ୍ ଲୋକ୍ ଯାଉନ୍ ସେନିକେ ଈକ୍ଷଣ୍ । ॥୧୨॥

ରଜାକର୍ ଶବ୍ ତେଲେଁବୁଡେଇ ଏଛନିକା ଥାଉ
ପିଲାମାନେ ଆଏବାର୍ ତକ୍ କା'ଣା କର୍‌ମା ଆଉ । ॥୧୩॥

ଖବର ପାଇଁ ପବନ ବେଗେଁ ଭରତ୍ ଶତ୍ରୁଘନ୍
ଆସି ଦେଖଲେ ରାଏଜ୍ ସାରା ଜନ୍ ଥାଇ ନିର୍ଜନ । ॥୧୪॥

ମାଁର୍ ଠାନୁ ଶୁନ୍‌ଲେ ଝାର୍ ଗଲେ ରାମ୍ ସୀତା
ସାଙ୍ଗ୍ ଧଏଲେ ଲକ୍ଷ୍ମଣ ରାଜ୍-ସୁଖ୍ କରି ପିତା । ॥୧୫॥

ଶୁନ୍‌ଲେ ଯେବେ ସବୁ ତାକର୍ ମାଁର୍ କରାମତି
ଦମ୍ ଧରତେ କେନ୍ତା, କାଏଁ ଥାବେଁ ରହେତା ମତି । ॥୧୬॥

ମାଁ ଆ'ନ୍ ତ କା'ଣା କହେତେ ରାଗେଁ ଜର୍ ଜର୍
ଲହ ବହେଲା ଆଖୁଁ ଦର୍‌ଦରାନୁ ଅଠି ପର୍ । ॥୧୭॥

ବଶିଷ୍ଠ ସାଙ୍ଗେଁ ମନ୍ତ୍ରୀ ସଭାସଦ୍ ସଭେ ବସି
କା'ଣା କର୍‌ବେ ଭବନ୍ ସବୁ ବେଲ୍‌ସୁଁ ଗଲା ନଶି । ॥୧୮॥

ଭରତ୍‌କୁଁ କହନ୍ ବାବୁ ! ରାଗର୍ ସମିୟା ନୁହେ
ବେଲର୍ ବେଲ୍କୁଁ ଦେଖୁଁ ଯେନ୍ତା ଶବ୍ ସକ୍ରାର ହୁଏ । ॥୧୯॥

ଭରତ୍ ଭାବନ୍ ରାମ୍ ନାଇଁନ କାହିଁ ତାକର୍ ଥିତି
ଚିତା ଜଲେ, ମନେ ଜଲେ ଚିନ୍ତା ତାହାକୁଁ ଜିତି । ॥୨୦॥

ଶତୃଘନ୍ ବୋ ! ଭଲା ଆମେ ମାମୁଁ ଘର୍‌କେ ଗଲାଁ
ଜୀବନ୍ ଥାଇ ବି ଜୀଇଁ ନୁହେଁ, ଜୀଁ ଥାଉନ୍ ଥାଉନ୍ ମଲାଁ । ॥୨୧॥

ଲକ୍ଷ୍ମଣ୍ ଥିଲା ଭାଏଗ୍‌ବାନ୍ ସାଙ୍ଗେ ଗଲା ଲମି
ମତେ ଲାଗେ ପିତାର୍ ଚିତା ଭିତ୍‌ରେଁ ଯାଏତିଁ ଶମି । ॥୨୨॥

ସତ୍ କହୁଛେଁ ଭରତ୍ ଭାଇ ! ରାମ୍ ଆମ୍‌କୁଁ ବିତୁଛନ୍
ଆପ୍‌ନେ ଖସ୍‌ରି ରାଜପନ୍ ଧନ୍ ମମ୍‌ତା ରଶି ଭିତୁଛନ୍ । ॥୨୩॥

ତାକର୍ ସବୁଆଏ ଭାବି ନ ହେଲେଁ ଯଦ୍‌ରପି
ବିତ୍‌ବାର୍‌ଟା ଛିଡ଼େ, ତାକୁଁ ପାର୍‌ଲେଁ ଯାଏ ସମର୍‌ପି । ॥୨୪॥

ସେ'ଟା ଆମେ କରମା ଭାଇ ! କାଏଁ ହଉଛ ବାଏ
ତୁନ୍ ପର ବାପାର୍ କାମ୍ କାରଯ୍ ସରବାର୍ ଯାଏ । ॥୨୫॥

ଦାହ ସାରି କାମ୍ କାରଯ୍ ବାର ପତ୍‌ରି ସର୍‌ଲା
ତେର ଦିନେ ଯିବାର ମନା ମନ୍ ହଉଛେ ଅର୍‌ଲା । ॥୨୬॥

ଚ଼ଉଦ ଦିନର୍ ସକାଳୁ ପୁଏଁ ମନ୍ତ୍ରୀ ଗୁରୁ ପର୍‌ଜା
କହେଲେ ଆସି ଭରତ୍ ହଉନ୍ ଅବଧ୍ ଦେଶର୍ ରଜା । ॥୨୭॥

ବାପା ଗଲେ ସରଗ୍‌ବାସ୍ ବନ୍‌ବାସ୍ ବଡ଼୍‌ଭାଇ
ଚ଼ଉଦବରଷ୍ ସିଂହାସନ୍‌କେ ରଖିଥ ସଁଭ୍‌ଲାଇ । ॥୨୮॥

ଭରତ୍-କାଏଁ କହେବେ କଥା ? ଆଖିଁ ଲହ-ଝର୍‌ନା
ରାମ୍‌ର୍ ଅଭାବ୍ ଭରତ୍ କେବେଁ କରି ପାର୍‌ବା ଭରନା । ॥୨୯॥

କେନ୍‌ସି ବି ବାହାନା କରି କାହାରିର୍ ସଂପତି
ପର୍‌କେ ଦେଲେଁ ପଲାଏ ମାଲିକ୍ ପାଣ୍ଡରି ଆପତ୍ତି ? ॥୩୦॥

ସୁଧାର୍ ଭାବେଁ ଦେଖାଏ ମାଲିକ୍ କେତେ ଉଦାର୍ ପନ୍
କେତେ ବଡ୍ ଧନୀ ? କେତେ ମହାନ୍ ତାର୍ ଧନ୍ । ॥୩୧॥

ମାଲିକ୍ ପାଦେଁ ଯାଇ ସଁପିନେମି ତାର୍ ଧନ୍
କୁରିଆଟାକର୍ ଠାନ୍ ମାଗ୍‌ମି ରହେବା ଯେନ୍‌ବନ୍ । ।।୩୨।।

ରାମ୍‌ର ଦେଖା ନାଇଁ ପାଏଲେଁ (ଇ)ଦେଖା ମୋର୍ ଶେଷ୍ ଆଏ
ଭରତ୍‌କେ ଆର୍ ଭର୍‌ମେ ବି କେ ନାଇଁ ଦେଖନ୍ ଘାଏ । ।।୩୩।।

କହି ମନ୍ତ୍ରୀ! ରାମ୍ ଏଛନ୍ ଥିବେ କେନ୍ ଠାନେ ?
କେନ୍‌ନୁ କେନ୍‌କେ ଯାଉଥିବେ ତୁମର୍ ଅନୁମାନେ । ।।୩୪।।

ଯିମି ମୁଇଁ ସଁପି ସାରି ନେମି ତାକର୍ ରାଏଜ୍
ନାଇଁ ରହି ପାରେଁ କାହିଁ ବାହାରିଲିଁ ନ ଆଏଜ୍ । ।।୩୫।।

ଭରତ୍ ପଛେଁ ଶତୃଘନ୍ ତାର୍ ପଛେଁ ସବ୍‌ରାନୀ
ଦାସୀ ପରିବାରୀ ଆସି ହେଲେ ଘାଁଟି ସାନି ।।୩୬।।

ଗୁରୁ ମନ୍ତ୍ରୀ ସେନାପତି ସଏନ୍ ସାମଁତ୍ ହାଜର୍
ଅଯୋଧା ତାର୍ ସ୍ୱରୂପ୍ ନେ ବାହାରିଛେ ଆଜର୍ । ।।୩୭।।

ସଭାସଦ୍‌କର୍ ଆଗେଁ ଉଭା ଆପେଁ ବଶିଷ୍ଠ୍ ଗୁରୁ
ଯାଇ ନାଇଁ ପାର୍‌ଲେ ଯେ ସେ ରହେଲେ ସାନ୍ ସୁରୁ । ।।୩୮।।

ରାମ୍ ପାଶ୍‌କେ ଅବଧ୍ ଧାଏଁ କାଲ୍‌କେ ରହେଲା ନାଁ ।
ପତିହୀନ୍ ଅବଧ୍ ରହେଲା ଗତିହୀନ୍ ଗାଆଁ । ।।୩୯।।

ଥରେ ଯାଇ ସୋଜ୍ ସୋଜ୍ ଆସିଥିଲେ ଫିରି
ରାମ୍‌କୁଁ ଆନ୍‌ଲେଁ ଯାଇଁ ଫିର୍‌ବେ ବାହାରନ୍ ହଇଁ ଭିରି । ।।୪୦।।

ଆଗେଁ ଆଗେଁ ମନ୍ତ୍ରୀର୍ ରଥ୍ ହେଲା ବତୁଆଲ୍
ସୂରୁଯ୍ ହେଲେ ଲାଜେଁ ଅଁଧାର୍ କଲା ଅତୁଆଲ୍ । ।।୪୧।।

ଆଗେଁ ବହେ ତମ୍‌ସା ନଏଦ୍ ଖଁଡି ଗୁହକ୍ ତାକୁଛେ
ସଏନ୍ ଦେଖିଁ ସଁଶ୍ୟେ ହେଲା ନିଜର୍ ଫଉଜ୍ ଡାକୁଛେ । ।।୪୨।।

ରଜା ଯାଇଛନ୍ ଆରପାର୍ ଦିନ୍ ଚଉଦ ତଲେଁ
ସଏନ୍ ଧରିଁ କେ କୁଦାଏ କି ? ଯାଏ ଭଲେଁ ଭଲେଁ ? ।।୪୩।।

ସୁମନ୍ତନେ ଦେଖା ହଉନ୍ ସବୁ କଥା କହେଲେ
ଭରତ୍ ଗୁହକ୍ ଭେଟ୍ ପରି ସେନେ ରାଏତ୍ ରହେଲେ । ।।୪୪।।

ଗଲେ ଭରଦ୍ୱାଜ୍ ଆଶ୍ରମ୍ ଗଙ୍ଗା ହଇଁ ପାର୍
ଖୁସି ହେଲେ ପାଇ ଋଷି ଆଶ୍ରମର୍ ବେଭାର୍ । ।।୪୫।।

ଭରଦ୍ୱାଜ୍ ଥିଲେ ଭୋଲ୍ ରାମ୍ କଥା ସୁମ୍‌ରି
ରାମ୍ ଆସି ଯାହା ଭିଆଲେ ହୁରୁଦ୍ ଯାଏ ଘୁମ୍‌ରି । ।।୪୬।।

ତାକର୍ ରୂପ୍ ରଙ୍ଗ ଚାଲିଚଲନ୍ କଥା ଭାଷା
ମନ୍ ଭିତ୍ରେଁ ଉସ୍‌କଉଥାଏ ଅଶେଷ୍ ଆନନ୍ଦ୍ ଆଶା । ।।୪୭।।

ଜୀବନ୍ ଆଏ ନ କେବଲ୍ ଗୁଟେ ଆନନ୍ଦ୍ ଚ଼ରେର୍ ଘରା
ଝାରେଁ ହଉ କି ଘରେଁ କିଏ ରହେ ଆନନ୍ଦ୍-ହରା । ।।୪୮।।

ସହଜେଁ କେତେ ହଜେଇ ନେଲେ ମତେ ତାକର୍ ରସେଁ
ଅମାନିଆ ମନ୍ ବସ୍‌ଲା ତାକର୍ ଭାବର୍ ବଶେଁ । ।।୪୯।।

କହେଲେ ମୁଇଁ ଝାର୍ ଆଇଛେଁ ପିତା ସତ୍ ପାଇଁ
ମୋର୍ ରହେବାର୍ ଲାଏକ୍ ଠାନ୍ ବତାଲେଁ ଯିମି ଚାଲି । ।।୫୦।।

ସରବ୍ ଜାନ୍ ହଇଁ ନାଇଁ ଜାନ୍‌ଲା ମେତାକ୍ କଥା
ଦେଖେଇ ନାଇଁ ହ'ନ୍ ହଇଁ ସବୁଥିଁ ସାମ୍‌ରଥା । ।।୫୧।।

ରାମ୍ ପଛାପଛ୍ ଆଇଛନ୍ ପଚାରି ମୋର୍ ଆଶ୍ରମ୍
ଆନନ୍ଦ୍ ପଛ୍ ଧର୍‌ବାକେ କା'ର୍ ହେବା ଭ୍ରମ୍ ? ।।୫୨।।

ଦେଖ୍‌ଲା ବେଲୁଁ ଭରତ୍ ମତେ ରାମ୍ ମେତାକ୍ ଦିଶନ୍
ନିଲଜେଇ ଥିବା ନିରାନନ୍ଦ୍‌କେ ନୂନ୍ ଚୂନ୍ କରି ପିଷନ୍ । ।।୫୩।।

ବେଦ୍ କହେ ବ୍ରହ୍ମଜାନ୍‌ଲା ଲୋକ୍ ଆଏନ ବ୍ରହ୍ମ
ଜୀବନ୍ ମାତ୍‌ରେଁ ବ୍ରହ୍ମ ଜାନ୍‌ବାର୍‌ଟା ହିଁ ଆଏ ଧର୍ମ୍ମ । ॥୫୪॥

ଭରତ୍ ଦିଶନ୍ ରାମ୍ ସମାନ ରାମ୍‌କେ ସେ ଜାନ୍‌ଏ
ରାମ୍ ଅନୁରୂପ୍ ସ ବୁ ବୃଧେଁ ରାମ୍ ମାନ୍‌ଏ । ॥୫୫॥

ଭରତ୍-ସାଙ୍ଗେଁ ଯାହା ଆଇଛନ୍ ସଭେ ରାମର୍ ଲୋକ୍
ମନା ଗୁନା ଉନା ନାଇଁ କରି ମେଟାଲେ ଭୋକ୍ । ॥୫୬॥

ଯାଇ ନାଇଁ ଦେବାର୍ ମନ୍, ରଖି କାହିଁ ହୁଏ ?
ଛନ୍‌ଏ ପାଏଲେଁ ବନ୍‌ଏ ଜନମ୍‌ଭୁ ପାଶ୍‌ରି ନୁହେ । ॥୫୭॥

ଶମନ୍ ଡେଗିଁ ଆତ୍‌ମା ଯେନ୍ତା ଯାଏ ଅପ୍‌ନା ଧାମ୍
ଯମ୍‌ନା ପାରି ହଇ ଚିତ୍ରକୂଟ୍‌କେ ଗଲେ ରାମ୍ । ॥୫୮॥

ସମ୍‌କୁଁ ବାଟ୍ ଦେଖାଏ ଯେ ବାଟ୍ ଦେଖାବାର୍ ଲାଗି
ନେଲା ସାଙ୍ଗେଁ ଚେଲା ଦୁଇ ମୋହର୍ ଠାନୁ ମାଗି । ॥୫୯॥

ଚେଲାମାନେ ବାଲ୍‌ମିକନେ ଭେଟ୍ କରାଲେ ନେଇ
ଋଷି କଲେ ଜନମ୍ ସାଫୁଲ୍ ଆଦର୍ ସକ୍ରାର୍ ଦେଇ । ॥୬୦॥

ଶିଷ୍ୟମାନ୍‌କର୍ ଆଗେଁ ଶିଷ୍ଟ୍ ଭାବେଁ କହେଲେ ପରେ
କେନ୍ କେନ୍ ଠାନେ ରହେମି ମୁନି ! ବତେଇ ନିଅ ଥରେ । ॥୬୧॥

ମାସେ ପଖେ ନୁହେ ଚଉଦ ବରଷ୍ ବନବାସ୍
ପିତା ସତେଁ ଆସେଁ ନାଇଁ ଯାଏଁ ଅସତ୍ ପାଶ୍ । ॥୬୨॥

ରାମ୍ କଥାର୍ ଯେନ୍ ଉତର୍ ଦେଲେ ମହାମୁନି
ଆଶ୍ରିୟ୍ ଲାଗେ ଶିଷ୍ୟମାନ୍‌କର୍ ଠାନୁ ସବୁ ଶୁନି । ॥୬୩॥

ମୁନି କହେଲେ ତୁମେ ନାଇଁ ଥିବାର୍ ଠାନ୍ କାହିଁ ?
ଅଛେ ବଲି, ବୁଡ଼ାହେଲି ପଛେ ଜାନେ ନାହିଁ । ॥୬୪॥

ଲବ ଆସି କହେଲା ରଖି ମୁନି ପାଦେଁ ମଥା
ଭରଦ୍ୱାଜ୍ ନିକେ ନେବ କେନ୍ତା ନିଜର୍ କଥା । ॥୬୫॥

ରାମ୍ ସାଙ୍ଗେଁ ଯାହା ହେଲା କଥା ପରତଖେଁ
କହ ମୁନି ଜହ ଭଲ୍ ଲାଗବା ଶୁନି ସଲ୍ଖେଁ । ॥ ୬୬॥

ହସି ଋଷି କହେଲେ ସେ ମହାନ୍ ଅନୁଭୂତି
ପାରୁମି ଯେତେ ବାଢ଼ମି ତୁମର୍ ଆଗେଁ ସେ ବିଭୂତି । ॥୬୭॥

ଭିତ୍ରେଁ ଯାହାକୁଁ ଅନୁଖନୁ ରହୁଥିଲିଁ ଭଜି
ମୁହାଁ ମୁହିଁ ଦେଖି ତାକର୍ ଭିତ୍ରେଁ ଗଲି ହଜି । ॥୬୮॥

ଅନ୍ ହେଜା ଦିନୁ, ହଜି ଥିଲା ଆରତ୍ ରତ୍ନାକର୍
ହତମାନ୍ ତାର୍ ଆତ୍ମା ପୁରୁଷ୍ ଦିଶ୍ଲା ଉଭାଗର୍ । ॥୬୯॥

ପଚ୍ରାଲେ କା'ଣା କହେଲିଁ କା'ଣା ନାଇଁ ହେଲା ସୋର୍
ତାର୍ ପଚ୍ରାବାର୍ ସାଙ୍ଗେଁ ତାର୍ ହିଁ ଥିଲା ଉତର୍ ମୋର୍ । ॥୭୦॥

କେନ୍ ଠାନ୍ ଅଏନ୍ ଲାଗେ ତାକୁଁ ରହେବାର୍ ଲାଗି
ମୋହର୍ ମୁହୁଁ ବାହାରିଲେଁ ଲୋକ୍ ହେବେ ଅନୁରାଗୀ । ॥୭୧॥

ଭାବିଁ କହେଲେ ମୁନିରାଜ୍ ହୋ, ଆସିଛେଁ ବନ୍‌ବାସ୍
କେନ୍‌ନେ ରହେମି ରହେବେ ଏକା ସତ୍ ଧରମ୍ ପାଶ୍ । ॥୭୨॥

ମୁଇଁ କହେଲିଁ ସତ୍‌ଚିତ୍ ଆନନ୍ଦ୍ କିହେ କାହାକେ
ଛଡ଼ା ଛଡ଼ି ନୁହନ୍ ଟାନି ରଖିଲେଁ ବି କା'ର୍ ବାହାକେ । ॥୭୩॥

ତୁମର୍ ରହିଥିବା ଠାନ୍‌କେ ମନ୍‌ଇଛା ଯିବେ ଧାଇଁ
ସତ୍ ଧରମ୍ ଶାନ୍ତି ସଂଯମ୍ ଦୟା କ୍ଷମା ଭାଇ । ॥୭୪॥

ପାପ୍ ଅସତ୍ ରାଗ୍ ଦ୍ୱେଷ୍ ହୀନ୍ ଆଚାର୍ ବିଚାର୍
ତମର୍ ଛଏରା ପଡ଼ତେ ସାଏର୍ ହଅତେଲ୍ ଯିବେ ଖାର୍ । ॥୭୫॥

ରଜାପୁଓ ଝାର୍‌କେ ଆଇଛ ଦୁଖ୍‌କେ ନାଇଁ ଡରି
ଯାହିଁ ରହେଲେଁ ବି ଦୁଖୀର୍ ହୁରୁଦ୍ ଥିବ ଅନ୍‌ସରି । ॥୭୬॥

ହସି କହେଲେ ରାମ୍ ! ଋଷି ତୁମେ ବ୍ରହ୍ମଦର୍‌ଶୀ
କଥା ଧାରେଁ ସୁଧାର୍ ଧାର୍ ଦେଲେ ସିନେ ବର୍‌ଷି । ॥୭୭॥

ଏତ୍‌କି କହି ତୁର୍‌ତି ଗଲେ ଦେଇ କେତେ ମାନ୍
ମଥିଁ ହଉଛେ ମନ୍ ସୁରେଇଁ ତାକର୍ କଥା ମାନ୍ । ॥୭୮॥

ଲକ୍ଷ୍ମଣ୍ କଲେ ମନ୍ଦାକିନୀ ଖଁଡି ଖଁଡ୍‌ଏ କୁରିଆ
କୁର୍ମା ଗୁଟେ ମାଏଲେ ନିଜର୍ ଲାଗିଁ ଟିକେ ଦୂରିଆ । ॥୭୯॥

ଦର୍‌ପନ୍ ଦେଖେ ସୁନ୍ଦର ପନ୍ ଚିତ୍ରକୁଟର୍ ଝାରେଁ
ଫୁଲ୍ ଫୁଟ୍‌ଲା କହର୍ ଛୁଟ୍‌ଲା ଆନନ୍ଦ୍ ଧାରେଁ ଧାରେଁ । ॥୮୦॥

ଲୟ୍ ଧରିଁ ଗୀତ୍ ଗାଏଲା ମଲୟ ପବନ୍ ମଲ୍‌କିଁ
କୁଲ୍ କୁଲ୍ କରି କୁର୍‌ଲି ଉଠ୍‌ଲା ମନ୍ଦାକିନୀ ଛଲ୍‌କିଁ । ॥୮୧॥

ମୁଡି ଅଷ୍‌ଢିଆ ମେଘର୍ ମେତାନ୍ ରାମ୍ ଦେହ୍‌କେ ଦେଖିଁ
ମୟୂର୍ ନାଚେ ଡାହୁକ୍ ଡାକେ ନୁହେ ଛନ୍‌ଏ ଛେଁକି । ॥୮୨॥

ଆନନ୍ଦ୍-ଯୋରେଁ ବଏଡ୍ ଆଏଲା ମନ୍ ଭିତ୍‌ରେଁ ମୋର୍
ଖୁଲି ଗଲା ରାମ୍ ଭାବ୍‌ନା ଭୁଲିଁ ବାହାର୍ ସୋର୍ । ॥୮୩॥

କହୁନ୍ କହୁନ୍ ମୁନି ଗଲେ ଗୁମି ଧିଆନ୍ ଭିତ୍‌ରେଁ
ଭୁଖାର୍ ଆଗେଁ ତାଲା ପକାଏ କିଏ ଅରନ୍ ଛତ୍‌ରେଁ । ॥୮୪॥

ଲବକୁଶ ମୁନିର୍ ପାହାଛିଇଁ କରି ବିନ୍‌ତି
ଧିଆନ୍ ସମୁଦରୁଁ ମୁନିକୁଁ ବହରାଇ ନେଲେ ତୁର୍‌ତି । ॥୮୫॥

କହେଲେ ଶୁନିଥିଲୁଁ ଭରଦ୍ୱାଜ୍ ଆଶ୍ରମ୍ ଠାନେ
ଥିଲେ ଭରତ୍ ଶତୃଘନ୍ ଅଯୋଧ୍ୟାର୍ ଲୋକ୍‌ମାନେ । ॥୮୬॥

କା'ଣା କଲେ ସେ'ନୁ ଫେର୍ ବାହାରିଁ ଗଲେ କେନ୍‌କେ
ତାହା କହି  ବାବା! ବୋଧ୍ କର ଆମର୍ ମନ୍‌କେ । ॥୮୭॥

ଉବ୍‌ରି  ଧ୍ଆନ୍ ଭିତ୍‌ରୁଁ ମୁନି ସୁମ୍‌ରି  ରାମ୍ ନାମ୍
କହେଲେ ଭରଦ୍ୱାଜ୍ ତାକୁଁ ଆଗେଁ ଦେଇ ଆରାମ୍ । ॥୮୮॥

ଦେଖେଇ ନେଲେ ରାମ୍ ଲକ୍ଷ୍ମଣ୍ ସୀତା ଯିବାର୍ ବାଟ୍
ଆଶ୍ରିଯ୍ ହ'ନ୍ ଭରତର୍ ଭକ୍ତିନେ ନାଇଁ ଫାଟ୍ । ॥୮୯॥

ପ୍ରୟାଗ୍ ତୀର୍ଥେଁ  ସଭେ ସ୍ନାନ୍ ସାରିଁ ପୂଜାପାଠ
ହାତ୍ ଯୁରି  ବିନ୍‌ତି କଲେ ହେ ତୀରଥ୍ ସମ୍ରାଟ୍ । ॥୯୦॥

ପରମ୍ ସାଙ୍ଗେଁ ଜୀବର୍ ସଂଗମ୍ ହେଲା ଲେଖେଁ
ଯମୁନା ସରସ୍ୱତୀ ଗୁରେଇ ହୁଅନ୍ ଗଙ୍ଗାର୍ ବେକେଁ । ॥୯୧॥

ଗଙ୍ଗା ତ ନାଇଁ ଅଡାବାର୍ ଯ ମୁନା ସର୍‌ସତୀକେ
ପ୍ରଭୁ ନାଇଁ ଅଡାତେ ହେଲେଁ ଭରତ୍ ହୀନ୍ ମତିକେ । ॥୯୨॥

ମନ୍ତ୍ରୀ ସଏନ୍ ସାମଁତ୍ -ଗୁରୁହଇଁ ଏକ୍ ଯୁଟ୍
ଭରତ୍-ଗୁହକ୍ ଧରା ଧରି ଚାଲନ୍ ଚିତ୍ରକୂଟ୍ । ॥୯୩॥

ତାକର୍ ପଛା ପଛ୍ ଚାଲେ ରାନୀ ମାନ୍‌କର୍ ଦୂଲା
ନିଜ୍‌କେ ପାଶ୍‌ରି ସୋର୍ କରନ୍ ଭରତର୍ ଗୁଲ୍‌ଗୁଲା । ॥୯୪॥

ଭରତର୍ ପଛ୍ ଛାଡନ୍ ନାଇଁ ଘାଏ ଶତୃଘନ୍
ରାମ୍‌କୁଁ ଦେଖ୍‌ବାର୍ କାଯେଁ ମନ୍ ହୁଏଛନ୍ ଛନ୍ । ॥୯୫॥

ଗୁହକ୍ ତି ତି ହଇଁ କହେଲେ ଦିଶେ ଗୁଟେ କୁରିଆ
ନାକର୍ ସଲ୍‌ଖେଁ ଦେଖ ଆଗେଁ  ଜହ ନାଇଁନ ଦୂରିଆ । ॥୯୬॥

ଦିହେଁ ବକଲ୍ ମୁଡେଁ ଜଟା ରାମ୍ ଲକ୍ଷ୍ମଣ୍ ଦୁହେ
କୁରିଆ ଆଗେଁ ଠିଆ ମୋର୍ ଅନ୍‌ମାନ ଭୁଲ୍ ନୁହେ । ॥୯୭॥

ଭରତ୍ ଦଉଡନ୍ ଝୁଁଟେଇ ହେଲେଁ ଯିବା ଜାନ୍
ଶତୃଘନ୍ ବି ତାକର୍ ଠାନୁ ଜିତିକରି  ଧାଁଆଁନ୍ । ॥୯୮॥

ରାମ୍ ପାଦେଁ  ଯୁଗ୍ରେଇ ହେଲେ ଭରତ୍ ଶତୃଘନ୍
ରଠ୍ ଖରାନେ ପୁର୍ରା ଛାପ୍ରେଁ ଯେନ୍ତା ପରନ୍ । ॥୯୯॥

ଗୁହକ୍ ଚାଲନ୍ ଦେଖ୍ଲା ବେଲୁଁ ଯୁଡା ହାତ୍ ଟେକି
ଗୁରୁ ମନ୍ତ୍ରୀ ସଏନ୍ ମାନ୍କର୍ ଆନନ୍ଦ୍ ନୁହେ ଲେଖି । ॥୧୦୦॥

ସୀତା ଆଏଲେ କୁରିଆନୁ ସେ ପାଶ୍କେ ଲକ୍ଷ୍ମଣ୍
କାନ୍ଦି ମାନେ ଶୁନି ଝାରର୍ ଛାତି ହଏ ଖଣ୍ ଖଣ୍ । ॥୧୦୧॥

ଭରତ୍ ମୁହେଁ କଥା ନାଏଁନ ଆଏଁଖ୍ ପୂର୍ଣ୍ଣୁ ଲହ
କରୁଣା ମୂର୍ତ୍ତି ରାମ୍ ନୁହନ୍ ଉନା; କାନ୍ଦନ୍ ଜହ । ॥୧୦୨॥

ବାପାଁକର୍ ବିଷେ ଜାନ୍ବାର୍କେ ଆକୁଲ୍ ବିକୁଲ୍ ରାମ୍
ଭରତ୍କେ ପଚ୍ରାବେ ବଲିଁ କରନ୍ ରାଗ୍ତାନ୍ । ॥୧୦୩॥

ରାନୀମାନେ ପୁହୁଁଚି  ଆଏଲେ ଦୁଖର୍ ବୋଝ ବୁହି
ପାହେଁ ପର୍ଲେ ରାମ୍ଲକ୍ଷ୍ମଣ୍ ସୀତା ଲୁହିଁ ଲୁହିଁ । ॥୧୦୪॥

ମାଁ ମାନ୍କର୍ କପାଲେଁ ନାଇଁ ସେନ୍ଦୂର୍, ହାତେଁ ଚୂରି
ମନେ ଥିବାର୍ ଆଶାଟିକ ଠାନେ ହେଲା ଚୁରି । ॥୧୦୫॥

କୁଦ୍ କୁଦା ରୁବ୍ ରୁବା ହଇ କାନ୍ଦିଁ କହେଲେ ରାମ୍
ଅଭାଗା ପୁଓ ଭିତ୍ରେଁ ରହେଲେ ପହେଲା ମୋର୍ ନାମ୍ । ॥୧୦୬॥

ଘାଏକର୍ ମାଏନ୍ ଗଲେଁ କେତେ ହଉଥାଆନ୍ ଝୁରି
ସବୁଦିନ୍କେ ଗଲାବେଲେଁ କେତେ ଥିବେ ନୁରି । ॥୧୦୭॥

ଦୁର୍ଭାଗା ପୁଓ ମୁଇଁ ଆଏଲିଁ ଦୂର୍କେ ତାକୁଁ ଛାଡି
ମତେ ଛାଡ୍ ବାର୍ ଚିନ୍ତା ତାକୁଁ କେନ୍ତା ଥିବା ମାଡି । ॥୧୦୮॥

କାଁ କରିଥିବେ ମା଼ଁ ମାନେ ! ଜୀବନ୍ ଗଲା ବେଲେଁ
ବନ୍‌ଏ ଗେଲେଁ ପାଲ୍‌ଲେ ଯାହାକୁଁ ନାଏଁନ ଜନ୍‌ଏ ହେଲେଁ । ।।୧୦୯।।

ମହୀକେ ଦିଏ ଆନନ୍ଦ ଯିଏ ଅହି ରୁଦନ୍ ହଇଁ କାନ୍ଦେ
କାୟାର୍ ଛାୟା ସମନ୍ଧ ନେଇ ମାୟା ବନ୍ଧନେ ବାନ୍ଧେ । ।।୧୧୦।।

ଅତୁଆ ଥିତି ଜାନି ବଶିଷ୍ଠ ପୁହୁଁଚି ଗଲେ ଯାଇ
ପାହେଁ ପର୍‌ଲେ ରାମ୍ ଲକ୍ଷ୍ମଣ୍ ସୀତା ଆସି ଧାଇଁ । ।।୧୧୧।।

ଋଷି କହେଲେଁ ଦିହ୍‌ଟା ବାବୁ ! ବାପ୍ ନୁହେ ତୁମର୍
ବାପ୍ ଯେ ଆଏ ସହଜେଁ ସେତ ଆଏ ଅଜର୍ ଅମର୍ । ।।୧୧୨।।

ଯେନ୍ ଦିହ୍ ଲାଗି କାନ୍ଦ ତୁମେ ସେ'ତ ଗଲାନ ପୁତି
ସତର୍ ପିତୃଦେବ ତମର୍ ବୁଲନ୍ ଉଡ଼ି ଉଡି । ।।୧୧୩।।

ଇନିକେ ବି ଆସିଥିବେ ତୁମକୁଁ ଦେଖିବାର୍ କାଯେଁ
ମାଟିର୍ ଦିହ୍‌କେ ହେଜ ଜାନି ହଉଥିବେ ଲାଜେଁ । ।।୧୧୪।।

ତୁମେ ତିନ୍‌ହେ ଦିଅ ନୁହେ ମଲା ପାଏନ୍ ବୁଢେ
ନୁହେ କର ପିଁଡ୍‌ପର୍‌ଦାନ୍ କେହେନି ଅରନ୍ ମୁଢେ । ।।୧୧୫।।

ଗାଧ ବୁଡ ରାଏଣ୍ ସାଙ୍ଗେଁ ବାଏଲ୍ ଉଁଝ୍‌ଲା ଦିଅ
ଆଦେଖା ଥିଲେଁ ବି ତାର୍ ଆଶିଷ୍ ମାଗିନିଅ । ।।୧୧୬।।

ଏତ୍‌କି ଶୁନି ମନ୍ଦାକିନୀ ନଦୀ ସିନାନ୍ ସାରିଁ
ତିଲ୍ ତର୍‌ପନ୍ ପିଁଡ୍ ପର୍‌ଦାନ କଲେ ମନ୍ ମାରି । ।।୧୧୭।।

ଚିତ୍ରକୂଟ୍ ଉପ୍ରେଁ ତାକର୍ ତାକର୍ କଥା ହେଲେ
ମଝିଆଁ ମାଁକର ବଦନାମ୍ କରି ଭରତ୍ କିଛି କହେଲେ । ।।୧୧୮।।

ବିର୍‌କତ୍ ହଇଁ କହେଲେ ରାମ୍ ବୀର୍ ଉପରେଁ ବୀର୍ !
ଉନିଆଁ କିଏ ହଇଥିଲେଁ ହରେଇ ଥିତା ଶିର୍ । ।।୧୧୯।।

ଯେନ୍ ମାଁ ଦିଏ ପୁର୍‌ଥୀକେ ଭରଦ୍ ମେତାଲ୍ ପିଲା
ହେନ୍ତା ମାଁ ଧର୍‌ତୀନେ କେଭେଁ କେ'ନ ଥିଲା ? ॥୧୨୦॥

ପୁର୍‌ଥୀନୁ ପୁର୍‌ଷେ ବଡ଼୍ ସର୍‌ଗୁଁ ନୁହେ ସାନ୍
ହୀନ୍ ମାନ୍ କରି ନାଇଁ କହ ନାଇଁ ଦେଲେଁ ନାଇଁମାନ୍ । ॥୧୨୧॥

ଭରଦ୍ ଧରନ୍ ରାମ୍‌ର ପାଦ୍ ଲକ୍ଷ୍ମଣ୍ କହନ୍ କଥା
ଗୁଟା ଅବଧ୍ ଉଠି ଆଇଛେ ସଭେ ଥିବ ଅଥା । ॥୧୨୨॥

ତାକର୍ ଖିଆ ପିଆ ରହା ବସା କଥା ବୁଝୁଁ
ଦୁଖର୍ ସୁଖର୍ ହେମା ମୁକ୍‌ଲୁଁ ଅର୍ଚ୍ଚା ଚର୍ଚ୍ଚା ବୁଝୁଁ । ॥୧୨୩॥

ସଭେ ବୁଝ୍‌ଲେ ସମ୍‌କର୍ କଥା ରାନୀ ମାନ୍‌କର୍ ସୀତା
ତାକର୍ ସାଙ୍ଗେ ରହି କଲେ ତାକର୍ ସେବା ଚିନ୍ତା । ॥୧୨୪॥

ସୁରୁଯ୍ ଦେଖି ତାକର୍ କୁଲର୍ ନୁକୋ ଆଚାର୍ ବିଚାର୍
ମା'ର୍ କୋଡ଼୍‌କେ ଗଲେ ଅଁଧାର୍ ପନତ୍ କଲା ଉସାର୍ । ॥୧୨୫॥

ଋଷି କହେଲେ ଉପର୍ ବେଲା ବସି କରମା ଚର୍ଚ୍ଚା
ରାମ୍ ଭରତର୍ କଥା ବାର୍ତ୍ତା ବିଚାର୍ ବେଭାର୍ ପର୍ଚ୍ଚା ॥୧୨୬॥



# ପାଉଚ୍-୧୦

## ଚିତ୍ରକୂଟେଁ ସଭା ଆର୍ ଭରତର୍ ବିନତି

ପଛିମ୍ ଦିଗର୍ ବେଲ୍ ବିନ୍ଦୁଛେ ଖରା ଯାହିଁ ତାହିଁ
ଗଛ ଫୁର୍‌ଙ୍ଗୁଲେଁ ଛିଙ୍ଗଲି ଆସେ ବେଦୀ ନିକେ ଧାଇଁ ।  ।।୧।।

ମୁନି ବାବାର୍  ରାମେନ୍ କଥା ଶୁନ୍‌ବାର୍‌କେ ମନ୍
ଚରେ ମାନେ ଚରା ସାରିଁ ଲେହେଁଟି ଆସୁଛନ୍ ।  ।।୨।।

ମୁନି କହନ୍ ଚିତ୍ରକୂଟ୍ ପର୍ବତ୍ ଯାଏ ଚହଲି
କେଭେଁ ନାଇଁ ଆଏଲ୍ କାଁ କରି ଏତେ ଗହଲି ।  ।।୩।।

ଅଁଦ୍ ନାଇଁ ପାଇଁ ଝାରର୍ କଁଦ୍ ଟେରେଇ ଚାହୁଁଛନ୍
ଚରେ ଦଲ୍ ବି ଭିର୍‌କି ଭିର୍‌କି ଉପ୍‌ରେଁ ଉଡ଼ି ଯାଉଛନ୍ ।  ।।୪।।

ମନ୍ଦାକିନୀ ନଦୀର୍ ଖଁଡ଼ି ଚଟାନ୍ ଦେଖିଁ ପର୍ଛା
ସେନେ ବସି ଅବଧ୍ ବାସୀର୍ ଚାଲେ କେତେ ଚର୍ଚ୍ଚା  ।।୫।।

ମନ୍ତ୍ରୀମାନ୍‌କର୍ ପାଶେଁ ବଶିଷ୍ଠ ଋଷି ଆସି ବସି ଛନ୍
ଉନିଆଁ ସଭାସଦ୍ ସାଙ୍ଗେଁ ଋଷିମାନେ ବି ଆସିଛନ୍ ।  ।।୬।।

ରାନୀମାନେ ଆସି ବସିଛନ୍ ଦାସୀମାନକର୍ ଭିତ୍‌ରେଁ
ରାମ୍ ଲକ୍ଷ୍ମଣ୍ ଚାର୍‌ହି ଭାଇ ଠିକ୍ ତାକର୍ ସୁଦ୍‌ରେଁ ।  ।।୭।।

ଭରତ୍ ଉଠି ଯୁହାର୍ କଲେ ସାରା ସଭା ଦେଖିଁ
କହନ୍ ଆଖିର୍ ଇହ ନାଇଁ ହଉଥାଏ ଠେଁକି ।  ।।୮।।

''ଇନ୍‌କେ କାହିଁ ଆସିଲୁଁ ଯେ ଜାନୁଥିବେ ରାମ୍
ତ'ବି ଫଟିକ୍ ଭାବେଁ ଜନାବାର୍ ଆଏ ଆମର୍ କାମ୍ ।  ।।୯।।

ମୋର୍ ଉପ୍‌ରେ ଲଦି ହେଲା ଅବଧ୍-ରାଜ୍-ଭାର୍
କେହେନି ବି ବାହାନା ଥିଁ, ଥିତି ଦୁର୍ନିବାର୍ । ||୧୦||

ରାଏଜ୍ ଭାର୍ ଯେ ବୁହିତା ସେ ଜଟାର୍ ଭାର୍ ବୁହି
ପଟ୍ ପିନ୍ଧି କରି ଝାର୍ ଆଏଲେ ପାଟ୍ ପହରନ୍ ଥୁଇ । ||୧୧||

ଅଂଶୁମାନର୍ ବଂଶେଁ କେଭେଁ ବଡ୍ ଥାଉଁ ସାନ୍
ରଜା ହଇଛେ କାଏଁ ? କହ ସୁଜନ୍ ସୁଜାନ୍ । ||୧୨||

ପିତା ଯଦ୍‌ରି ସତ୍ ମାନି ମତେ ଦେଲେ ରାଏଜ୍
ସଁପି ନିଏ ସେ ରାଏଜ୍ ଅଭିଷେକ୍ ହଉନ୍ ଆଏଜ୍ । ||୧୩||

ଅଭିଷେକର୍ ଖଁଜା ସବୁ ଆନି କରି ଆସିଛୁଁ
ଗୁରୁ ମନ୍ତ୍ରୀ ସଏନ୍ ସାମଁତ୍ ସଭେ ଇନେ ବସିଛୁଁ । ||୧୪||

ରଜା ଆନ୍ ଯେ ସଜା ପାଏବେ କାଁ କାଯେଁ ବନ୍‌ବାସ୍
ବନ୍‌ଏ ଦିଶ୍‌ବା ବନ୍‌ବାସ୍ କର୍ଲେ ଇ ଭରତ୍ ଦାସ୍ । ||୧୫||

ବଡ୍‌ଭାଇନେ ସାନ୍‌ଭାଏର୍ ଅର୍ଦ୍ଧଲି ଆଏ ଏତ୍‌କି
ଯୋର୍ ଦେଇ ମୋର୍ ତରଫୁଁ କହ ସାଙ୍ଗେଁ ଆଇଛ ଯେତ୍‌କି । ||୧୬||

କହି କହି ରାମ୍ ପାହାନେ ଡଁଡାଶାଲ୍ ହଇଁ ପଡ୍‌ଲେଁ
'ହଁ' ନାଇଁ କର୍ଲେଁ ନାଇଁ ଉଠେଁ ବର୍ଲିଁ ଗଡ୍‌ଲେ । ||୧୭||

ରାମ୍ ଉଠାଲେ ଅଙ୍ଗା କରି ଧରିଁ ଭାଏ ଭରତ୍ କେ
କହେଲେ ବାବୁ ! ଭାଙ୍ଗମା କାଏଁ ମଲା ବାପର୍ ସରତ୍‌କେ ? ||୧୮||

ଅସାର୍ ସଂସାରେଁ କଥାର୍ ସଦ୍ ଥାଏ ସାର୍
ଛାରଜ୍ ବଲନ୍ ଯେ କରେ କଥା ପାନିର୍ ଗାର୍ । ||୧୯||

କଥା ଦେଇଛନ୍ ପିତା ଚଉଦ ବରଷ୍ ବନ୍‌ବାସ୍
ସେ ଦିନ୍ ତକ୍ ସିଂହାସନ୍ ତତେ ଦେଇଛନ୍ ଖାସ୍ । ||୨୦||

ପିତାସତ୍ ନାଇଁ ରହେ ମୁଇଁ ମାନ୍‌ଲେଁ ଖାଲି
ତେଭେଁ ଯାଇ ରହେବା ଯଦ୍‌ରି ତୁଇଁ ବି ପାର୍‌ବୁ ପାଳି । ॥୨୧॥

ବଡ୍ ଭାଏ ଆଏ ବାପ୍ ସମାନ୍ ମୋର୍ କଥା ବି ମାନ୍
ତୋର୍ ଅଭିଷେକ୍ ହଉ ଆନିହୁତ ସବ୍ ସାମାନ୍ । ॥୨୨॥

ତୋର୍ ମୋର୍ ଭେଦ୍ ନାଇଁ ଯେ ହେଲେଁ ବି ଏକା
ଭିତ୍‌ରେଁ ମତେ ମାନୁ ଯେତ୍‌କି ବାହାରେ ସେତେଦେଖା । ॥୨୩॥

ଭରତ୍ ଆଖୁଁ ପୁଛ୍‌ଲେ ଲହ ଝାର୍‌ଲେ ଦିହୁଁ ବାଏଲ୍
ବାଏଲ୍ ସାଙ୍ଗେଁ ଅଝଟ୍ ପନ୍ ଝରିଁ ଗଲା ଭାଏଲ୍ । ॥୨୪॥

ଭରତର୍ ସେ  ଭକ୍ତି ବଡ୍ କି ରାମର୍ ସେନ୍‌ହେ ବଡ୍
କିଏ ଜାନ୍ତା ଯାହା ଥିଲେ ସବ୍ ପାଲ୍‌ଟନ୍ ଜଡ୍ । ॥୨୫॥

ଭରତ୍ ତଲେଁ ପରି ଧଏଲେ ରାମର୍ ଦୁହି ପାଦ୍
ଚଉଦ ବରଷ୍ ଛାଡ଼ି ନୁହେ ରାମ୍ ସେନ୍‌ହେର୍ ସ୍ୱାଦ୍ । ॥୨୬॥

ଇ ପାଦ୍ ତ ଛାଡ଼ି ନୁହେ ଯାହା ହେବାର୍ ହଉ
ଆଏଜ୍ ଅଯୋଧ୍ୟା ରାଏଜ୍ ପଛେ ଅରାଜକ୍ ରହୁ । ॥୨୭॥

ଯାଉ ଲକ୍ଷ୍ମଣ୍ ରଜା ହଉ ଯାଉ ଶତ୍ରୁଘନ୍
କୁର୍ମା ମାରି ଥିମି ରାମ୍ ଥିବେ ଯେନ୍ ବନ୍ । ॥୨୮॥

ବଶିଷ୍ଠ ଋଷି ବସିଥିଲେ ସୁମନ୍ତ ପାଖେଁ ପାଖେଁ
ନାଇଁ ଜନାଇଁ କାହାକୁ କଥା ହେଲେ ଆପେଁ ଆପେଁ । ॥୨୯॥

ରାଏଜ୍ ଶାସନ୍ ଏକା ଆଏ ଅବଧ୍ ହଉ କି ଝାର୍
ଅଯୋଧ୍ୟାନେ ମୁନୁଷ୍; ଝାରେଁ ଅନ୍‌ମୁନ୍‌ଷିଆ ହଜାର୍ । ॥୩୦॥

ଝାରେଁ ଥିଲା ଲୋକ୍ ଯେନ୍ତା ଦିଶନ୍ ସେନ୍ତା ନୁହନ୍
ବାହାରେଁ ଲଗେଇ ଭେଲ୍‌କି ଲୁକି ଲୁକି ଭିତରେଁ କୁହନ୍ । ॥୩୧॥

ସେ  ସମ୍‌କୁଁ ବଶ୍ କର୍‌ବାର୍ ଜବାର୍ ସହଜ୍ ନୁହେ
ଯୋଜ୍ ଲୁକର୍ ହାତେଁ ତାକର୍ ମରନ୍ ନାଇଁ ହୁଏ । ॥୩୨॥

ବଲ୍ ଅଛେ, ଅସନ୍ତୋଷ୍ ଅଛେ ପର୍‌ବଲ୍
ମରନ୍ ସୁଲଭ୍ ନୁହେ ଦୁଲଭ ଆଏ ମୁକ୍ତିର୍ ଫଲ୍ । ॥୩୩॥

ଆଉର୍ ଅଛନ୍ ତିଙ୍ଗର୍ ନୁହନ୍ ଝାର୍ ଢ଼ଙ୍ଗର୍ ଭିତର୍
ସାଦା ସିଧା ସରଲ୍ ସୁଧାର୍ ସାଙ୍ଗେ ସହଜ୍ ସୁତର୍ । ॥୩୪॥

ବର୍‌କଷ୍ ଦେହେ କର୍‌କଶ୍ ନୁହେ ସେ ମନ୍ ମାନେ
ଦିହ୍ ଆନନ୍ଦେ ନୁହେ, ବୁଝନ୍ ଠିକ୍ ଆନନ୍ଦର୍ ମାନେ । ॥୩୫॥

ଅତି ମାନବ୍ ମାନେ ଅଛନ୍ ଯତି ମୁନି ନାଏଁ
ଯୁଗ୍ ଯୁଗ୍ ଯୋଗ୍ ସାଧି ନିରାନନ୍ଦ୍ ଥିବେ କାଏଁ ? ॥୩୬॥

ଜପ୍ ରଟି ରଟି ଆଉର୍ ଖଟି ଖଟି ସେ ତପ୍
କେତେ କାଲ୍ ଶୁନୁ ଥିବେ ଆନନ୍ଦ୍ ମୟର୍ ଗପ୍ । ॥୩୭॥

ଇ ସଭେ ଟାକି ଅଛନ୍ ଆନନ୍ଦ୍ ମୂର୍‌ତି ରାମ୍‌କୁଁ
ନାଇଁ ଜାନି ବଲିଁ ଜନାଇଁ ନେଲିଁ ଆଏଲ୍ ସମ୍‌କୁଁ । ॥୩୮॥

ଭରତ୍ କଲେ ଭଲ୍ କବାର୍ ଯାହାର୍ ରାଏଜ୍ ତାହାକେ
ସଁପି ସାରି ସଲଖି ରଖିଲେ ଆଏବା ଦିନର୍ ରାହାକେ । ॥୩୯॥

ଫିରାବାର୍ ସୀଉକାର କରି ଭଲ୍ କହେଲେ ରାମ୍
ସେ ରାଏଜ୍‌କେ ତାକର୍ ହଇଁ ଭରତ୍ ପାଲୁ ଥାଆନ୍ । ॥୪୦॥

ଚଉଦ ବରଷ୍ ପରେଁ ଯେଭେଁ ଫିରିଆଏବେ ରାମ୍
ରାଏଜ୍ ଭାର୍ ନିକେଁ ବୁହି ବୁଝିବେ ଶାସନ୍ କାମ୍ । ॥୪୧॥

ଉଚିତ୍ ହେତା ସୁଧୁ ଚିନ୍ତେଁ ଭରତ୍ କରି ବିଚାର୍
ହାତେଁ ନେତେ ହେଲେଁ ଅଯୋଧ୍ୟା ରାଏଜ୍ ଭାର୍ । ॥୪୨॥

ଅଲପ୍ ହଁସି କହେଲେ, ରାମ୍ ମାନ୍ ଭାଇଁ ମାନ୍
ରଜା ସାଙ୍ଗେଁ ବଢ଼ିଁ ଯାଏତା ରାଏଜର୍ ସମ୍ମାନ୍ । ॥୪୩॥

ଭରତ୍ କହେଲେ, କହେଲେ ବଶିଷ୍ଠ୍ ଇଷ୍ଟ୍ ପରମ୍‌ଗୁରୁ
କଥା ନାଇଁ ମାନି କାହିଁ ଯିମି ଆଏଁ ସୁରୁ । ॥୪୪॥

ବଡ଼ ବଡ଼ କର୍ କଥା କରି ନୁହେଁ ଅମାନ୍ତି
ଦୀନ୍ ଭାବେଁ କହେଁ ରଘୁନ୍ ହୀନ୍ ଭରତର୍ ବିନ୍ତି । ॥୪୫॥

ଯାର୍ ପାହା ତଳେଁ ଜଗତ୍ ରହେ ହଇ ଗୁଡ଼େଇ
ଯେନ୍ ଶକ୍ତି ସେ ପାହାକେ ବୁହେ ନୁହେ ଅଡ଼େଇ । ॥୪୬॥

କାଠ୍ ହେଲେଁ ବି କଠାଉ ସାର୍କ ରାମ୍ ଅନୁରୂପ୍
ତାହାକେ ନେଇ ପୂଜା କର୍ମି ଦେଇ ଦୀପ୍ ଧୂପ୍ । ॥୪୭॥

କଠାଉ ସାର୍କ ସିଂହାସନେ ଥାଇ ହେବା ରଜା
ମୁଇଁ ରହେମି କଠଉ ରଜାର୍ ହଇଁ ଗୁଟେ ପର୍ଜା । ॥୪୮॥

ରାଜ୍ ମନ୍ତ୍ରୀ ରାଜ୍ ପୁରୋହିତ୍ ସାଙ୍ଗେଁ ନିଜେଁ ରାମ୍
ରାଜି ହଇଁ କହେଲେ ବାବୁ ! ଯା' ଅଯୋଧ୍ୟା ଧାମ୍ । ॥୪୯॥

ଛିନ୍ ଛାନ୍ ଯା' ଭାଏରେ ! ମୋର୍ ରାଏଜ୍ ଥିବା ଛିନା
ଯାହିଁ ଥିଲେଁ ବି ଆଏଁ ମୁଇଁ ଅଯୋଧ୍ୟାର୍ ଘିନା । ॥୫୦॥

ଗୁଡ଼ୁଁ କାଢ଼ି, କଠଉ ସାର୍କ ଭରତ୍ ହାତେଁ ଦେଲେ
ଯୁହାର୍ କରି ଭରତ୍ ତାହାକେ ରଥେଁ ବସେଇ ନେଲେ । ॥୫୧॥

ସୀତାରାମ୍ ପାଦେଁ କଲେ ଭକ୍ତି ଭର୍ତି ଯୁହାର୍
ଦିହେଁ ବକଲ୍ ମୁଡେଁ ଜଟା ଧରି ହେଲେ ବାହାର୍ । ॥୫୨॥

କହେଲେ ଯେନ୍ ଦିନ୍ ଚଉଦବରଷ୍ ସମିୟା ପୂର୍ବା
ଛନ୍ଏ ବିଲମ୍ ହେଲେଁ ଅଯୋଧ୍ୟାନେ ଭରତ୍ ମର୍ବା । ॥୫୩॥

ଅବଧ୍-ସିଂହାସନେ ବସ୍‌ଲେ ରାମର୍ କଠଉ ସାର୍
ଭରତ୍ ଉପରେଁ ତାହାରି ସୁଖେଁ ରହେଲା ରାଏଜ୍ ଭାର୍ । ॥୫୪॥

ସହରୀ ଜହରୀ ଗହଲି ନାଇଁ ନାଇଁ ନିରାନନ୍ଦ୍ ନାମ୍
ଆନନ୍ଦ୍-ମୂର୍ତି ରାମ୍ ସୁମ୍‌ରି ରହେଲେ ନନ୍ଦିଗ୍ରାମ୍ । ॥୫୫॥

ବାଲ୍‌ମିକୀ କହନ୍ ଯିମା ଏତ୍‌କେଁ ଆଏଲାନ ବେଲ୍‌ବୁଡ଼ି
ଆଏଁଖ୍ ମୁଡ଼ି ରାମ୍ ଭଜନ୍ କର୍‌କେଁ ହାତ୍ ଯୁଡ଼ି । ॥୫୬॥



# ପାଉଚ୍-୧

# ରାବଣର୍ କହେଁ ଶୁକ୍ ସାରଣ୍ ଚିତ୍ରକୂଟ୍‌ନେ

ଲାଲିଆ ଖରା ପଖାଳି ଆନେ ସକାଳିଆ ସେ ଆକାଶ୍
ଅଁଧାର୍ ଧାର୍ ଧରିଁ ଧୀରେ ଧରାନୁ ହଏ ନିକାସ୍ । ।।୧।।

ସେ ପହରର୍ ଘାଁସ୍ ପତରର୍ କାକର୍ ବୁନ୍ଦା ମାନ୍‌କେଁ
ଲାଲିଆ ଖରା ଲାଗିଁ କରେ ମଣି ମୁକ୍ତା ଛନ୍‌କେଁ । ।।୨।।

ଆଶ୍ରମର୍ ବେଦୀ ଉପ୍‌ରେଁ ଲେଖା ରାମେନ୍ ଖୁଲିଁ
ରାମେନ୍ ପଢ଼ନ୍ ମୁନି, ବୁଲିଁ ଆନନ୍ଦ-ଗାଆଁ-ଖୁଲିଁ । ।।୩।।

ରାମ-ମୂର୍ତ୍ତି ଧିଆନେ ଆରାମ୍, କହେଲେଁ ଯେତେ ସୁଖ୍
କହ କହ ଲାଗେ ହଇ ଶହ ଶହ ମୁଖ୍ । ।।୪।।

ପୂଥି ବୁଥିଁ ଶର୍‌ଧା-ପାନି ଯୁହାରିଁ କଲେ ମାଏନ୍
ରାମ-ରସେଁ ସବ୍ ସବ୍ ମନ୍ ଆଖିଁ ଛଲ୍‌କେ ପାଏନ୍ । ।।୫।।

ରାମ୍-କଥାର୍ ଭରନ୍ ଭିରିଁ ମୁନି ମନର୍ ଗାଡ଼ି
ବାଟ୍ ପାଇଛେ ଅଟ୍‌କାବା କେ ଆଗ୍‌କେ ଯାଏ ମାଡ଼ି । ।।୬।।

ଫନ୍ଦା ତାହିଁ ବନ୍‌ଏ ବର୍ଜସ୍ ଗିଆନ୍ ଧିଆନ୍ ହଲ୍
ଭକ୍ତି ହରିଆ ହଲିଆ ତାର୍ ଶକ୍ତି ପର୍‌ବଲ୍ । ।।୭।।

ବେଦ୍ ବେଦାଙ୍ଗର୍ ଝାର୍ ଚିରି ହୁରି ପରିଛେ ଛାଟ୍
ପଚାର୍ ଉଚାର୍ କାଁ ଦର୍କାର୍ ପାଶ୍‌ରି ନୁହେ ବାଟ୍ । ।।୮।।

ପୂଜା ସରି ଭଜନ୍ ସଲା ସଭା ତୁନ୍ ତାନ
ତାଲି ଆପ୍‌ଡ଼ି ବନ୍ଦ୍ ହେଲା ବନ୍ଦ୍ ବୀଣାର୍ ତାନ୍ । ।।୯।।

ହେଜା ନାଇଁ ହଜି ଥିଲେ କେନ୍ ରାଏଙ୍କେଁ ମୁନି
ପାଇ ନିଜ୍‌କେ କହେଲେ ସଭାର୍ ସଭେ ସାରିଛ ଶୁନି । ॥୧୦॥

ରାମ୍ ଜନ୍‌ମ ହେବେ ବଲିଁ ସୂରୁଯ୍ କୁଲର୍ ରକତ୍
କେତେ ଦାନ୍ ପୁଇନ୍ ସତ୍ ଧରମେ ସେ ଶକତ୍ । ॥୧୧॥

ଶୁନ୍‌ଲ ବି ତ ମାନବ୍ ରକ୍ତେଁ ଅତି ମାନବର୍ ରଙ୍
ମିଶିଁଗଲା ଇନ୍ଦୁମତୀ ବିହାହେଲେ କି ଅଜ୍ । ॥୧୨॥

ଶିବ୍‌ଧନୁ ବିଷ୍ଣୁ ଧନୁ ଭାଙ୍ଗବାର୍ ବୀର୍‌ପନ୍
ଶୁନ୍‌ଲ ରାମର୍ ଅଦ୍ଭୁତ୍ କରମ୍ ବିହା ବର୍‌ପନ୍ । ॥୧୩॥

ଦଶ୍‌ରଥ୍‌କର୍ ଯୋଗାଡ଼୍ ପାତି ରାମ୍‌କୁଁ କର୍‌ବେ ରଜା
କଥା ଉଲଟି ରାମ୍‌କୁଁ ହେଲା ଝାର୍ ଯିବାର ସଜା । ॥୧୪॥

ଭରତ୍ ଆଏବାର୍ ଜାନ୍‌ଲ ଚିତ୍ରକୂଟ୍ ପର୍‌ବତ୍
ରାମ୍‌କୁଁ ଫିରେଇ ନେବେ ବଲିଁ ହେଲେ ଦହସତ୍ । ॥୧୫॥

ନାଇଁ ଫିର୍‌ଲେ ରାମ୍ ମାଗିନେଲେ କଠଉ ସାର୍
କଠଉ ରଜାର୍ ତର୍‌ଫୁଁ ଭରତ୍-ଉପ୍‌ରେଁ ରାଏଜ୍ ଭାର୍ । ॥୧୬॥

ଭରତ୍ ଅଛନ୍ ବକଲ୍ ପିଁଧିଁ ମୁଡ଼େଁ ଜଟାଭାର୍
ରାଜ୍ ମହଲ୍ ମନା ନନ୍ଦିଗ୍ରାମେ ଘର୍‌ଦ୍ୱାର୍ । ॥୧୭॥

ଈ ସବୁ ତ ଶୁନି ସାରିଛ ଈ କଥା ଉତାରେଁ
ଚର୍ଚ୍ଚା କର୍‌ମା କେନ୍ତା କଲେ ରାମ୍ ରହି କାନ୍ତାରେଁ । ॥୧୮॥

ଚିଦାନନ୍ଦ ବ୍ରହ୍ମଚାରୀ ଶିଷ୍ୟ ଭିତ୍‌ରେଁ ସିଆନ୍
ମୁନି ପାହାଧରିଁ କହନ୍ ମୁଇଁ ଆଏଁ ଅଜ୍ଞାନ୍ । ॥୧୯॥

"କହୁଛେଁ ପଦେ ଶୁନ୍‌ଲା କଥା ଦୋଷ୍ ହଉ ମୋର୍ ମାଫ୍
ଶୁନ୍‌ଲା କଥାର୍ ସତ୍ କେତେ ଜାନ୍‌ଲେଁ ଲାଗେ ସାଫ୍ । ॥୨୦॥

ଭରତ୍ ସାଙ୍ଗେଁ ରାଏଙ୍କ୍ ସାରା ଯାଇଥିଲେ ଝାର୍
ରାମ୍‌କୁଁ ଫିରେଇ ଆନ୍‌ବେ ଥିଲା ଆଶା ଅସୁମାର୍ । ॥୨୧॥

ଅବଧ୍‌ବାସୀ ନୁହନ୍ ଦିଶୁଥିଲେ ଦୁଇଜନ୍
ଦଖିନ୍ ଦିଗ୍‌କେ ଗଲେ ପରେ ହଇଁ ଦୁଖିମନ୍ । ॥୨୨॥

ନାଇଁ ବୁଝୁଥାଇଁ ଅବଧ୍‌ବାସୀ ତାଙ୍କର୍ ଭାଷା
କିଏ ? କାହିଁ ଆସିଥିଲେ? କା'ଣା ଥିଲା ଆଶା । ॥୨୩॥

ଆମେ ଯଦ୍‌ରି ଜାନ୍‌ବାର୍ ଲାଏକ୍ କହେ ତ ଦୟାକରି
ରାମ୍‌ଚରିତେଁ ଆଶ୍‌ରିଯ୍ କଥା କେତେ ଅଛେ ଭରି । ॥୨୪॥

କଥା ଶୁନି କହେଲେ ମୁନି ହଁସି ଅଲ୍‌ପର୍
"ସାନ୍ ହେଲେଁ ବି କଥା ଆଏ ସମ୍ମାନ୍ ସର୍‌ସର୍ । ॥୨୫॥

ସୋର୍ କରି କହେଲେ ଗୁରୁ ନାରଦ୍ ଦିନ୍‌କର
ଗଲେ ଯାହିଁ ସଭା ଥିଲା ଲଙ୍କାବାସୀକର୍ । ॥୨୬॥

ରଜା ରାବଣ୍ ତାହାକୁଁ ପାଖେଁ ବସାଲା ସାଙ୍ଗେ ନେଇ
ମାନ୍ ସମ୍ମାନ୍ ଆଦର୍ ବେଭାର୍ ସବୁ କିଛି ଦେଇ । ॥୨୭॥

ରାବଣ୍ ବସିଥାଏ ଆବ୍‌ରି ସୁନାର୍ ସିଂହାସନ୍
ଖୁସାମଦ୍‌ର୍ ବାଦି ଚାଲେ ସଭାର୍ ସମ୍ଭାଷଣ୍ । ॥୨୮॥

କେ କହୁଥାଏ ସୁନା ଦେଖି ଇନ୍ଦ୍ର ସୁନାସୀର୍
ଦଶ୍ ଶିର୍ ଆପେଁ ଦଶ୍ ହେଲା ବିକି ନିଜର୍ ଶିର୍ । ॥୨୯॥

ଆଉର୍ ଜନ୍‌ଏ କହେ ଅମର୍-ସଭା ସର୍‌ଗର୍
ଆମର୍ ସଭା ଦେଖି ଲାଜେଁ ହଏ ଜର୍‌ଜର୍ । ॥୩୦॥

ଇଟା ଶୁନି ମୁହେଁ ମୋର୍ ଉପ୍‌କିଁ ଆଏଲା ହଁସି
ରାବଣ୍ ନଜର୍‌ନୁ ସେଟା ନାଇଁ ପାର୍‌ଲା ଖସି । ॥୩୧॥

ସଭା କଥା କେ ଶୁନୁଛେ? ଜିଦ୍ ଧଏଲା ରାବଣ୍
ତିଖ୍‌ରେଇ କରି ଉଖ୍‌ରେଇ ବସେ ସେ ହଁସିର୍ କାରଣ୍ । ॥୩୨॥

ଭୁରୁଥେଇଁ ଭୁର୍‌ଥେଇଁ କହେଲା "କହ ବ୍ରହ୍ମଋଷି !
ଯାହା ହେଲେଁ ବି ତୁମର୍ କଥେଁ କେତେ ହେସି ଖୁସି ? । ॥୩୩॥

ତୁମର୍ ମନେ ଦୁଖ୍ ନାଇଁ ପହଁର ଆନନ୍ଦ-ରସେଁ
ହଁସି ଖୁସି  ରାଗ୍ ରୋଷ୍ ରଖ ନିଜର୍ ବଶେଁ । ॥୩୪॥

କେନ୍ କଥା କେ ହଁସି ଆଏଲା ହେବା କାଏଁ ସୁରୁ ?
ତିନ୍‌ହି କାଲ୍‌ର୍ କଥା ଜାନ୍‌ଥ ସାରା ବିଶ୍ୱର୍ ଗୁରୁ । ॥୩୫॥

ଅପଟ୍ କଥା ହଇଥିଲେଁ ବି କପଟ୍ ଛାଡ଼ି କହ
ଜାନ୍‌ବାକେ ହଦ୍ ମଦଉଛେ ଜାନ୍ ଜୀବନ୍ ଜହ ।" ॥୩୬॥

"କାଣା କର୍‌ତି ? କହେଲିଁ ମୁଇଁ ସହଜ ସରଲ୍ ଭାବେଁ ;
ସୁନା ରୁପା ହୀରା ନୀଲା ମଣି ମୁକ୍ତାର୍ ଲାଭେଁ । ॥୩୭॥

କିଏ କେଭେଁ ପାଏସି ସରଗ୍ ? ପାଏସି ମୁକ୍ତିର ବାଟ୍ ?
ଦେହର୍ ଆନନ୍ଦ୍ ମନ୍ -ମଞ୍ଚେ ସର୍‌ଜିସି କାଏଁ ନାଟ୍ ? ॥୩୮॥

ଜନମ୍ ଜନମ୍ ଯେତେ ଧନ୍ ପାରିଥିସି ଅର୍‌ଜି
ଧନର୍ ବଲ୍ ତନ୍ ସଂବଲ୍ ମିଶେଇ ରହେ  ଗର୍‌ଜି  । ॥୩୯॥

ସେ ଅର୍‌ଜନର୍ ଗର୍‌ଜନ୍ ମାନ୍ ଭଏଁରା କରେ ଚିନ୍ତ
ବିତ୍ ରାଏଜର୍ ରଜାକେ ତୋଷ୍ କର୍‌ବା କେନ୍ ବିନ୍ତ ? ॥୪୦॥

ସଂପତ୍ତି ତ ସେ'ହିଁ ଆଏ ବିପତ୍ତି ତାର୍ ଅଭାବ୍
ଭାବ୍-ରାଏଜେଁ ନାଇଁ ଥିଲେଁ ସେ ହାନି  ହେସି ଲାଭ୍ । ॥୪୧॥

ନାଇଁ ପଡ଼୍‌ଲେଁ ପାଦ୍ ତାହାରି କେହେନି ବି ଠାନ୍
ଗନ୍‌ତି ନେ ତ ନାଇଁ ଆସେ  ଧନର୍ ଅନୁଷ୍ଠାନ୍ । ॥୪୨॥

ଶଙ୍କା ନାଇଁ ଲଙ୍କା ପୁର୍ ଧନ୍ ବିଜ୍ଞାନେ ମହତ୍
ପରଶ୍‌ସା ପାଏ ସଂସାରୀ ଦଲେଁ ପୂରା ଅନାହତ୍ । ॥୪୩॥

ତ'ବି ଇନେ ପରମେଶରର୍ ନୁହେ ପଡ଼େ ପାଦ୍
ବୁର୍‌ଥା ସବ୍ ନାଇଁ ଥିଲେଁ ତାର୍ ଆଶୀର୍ବାଦ୍ । ॥୪୪॥

ଯଦ୍‌ରି କିଏ କହେବା ଲଙ୍କା ଜିତିଁ ଯିବା ସରଗ୍
ହଁସି ଆଏସି ମହାପୁରୁ ଯାହିଁ ମହାନ୍ ମହରଗ୍ । ॥୪୫॥

ଏତ୍‌କି ଶୁନୁନ୍ ଖିଦ୍ ଖିଦାନୁ ଦଏତ୍ ପଡ଼୍‌ଲା ହଁସି
ମତେ ଲାଗ୍‌ଲା ଗର୍‌ହ ନଖତର୍ ଆକାଶୁଁ ପଡ୍‌ଲେ ଖସି । ॥୪୬॥

କହେଲା ''ମୁନି ! ବ୍ରହ୍ମଜ୍ଞାନୀ ଭିତ୍‌ରେଁ ତୁମେ ମହାନ୍
ଥିବାର୍ ନୁହେ ଜାନେ ବ୍ରହ୍ମ ନାଇଁ ଥିବାର୍ ଠାନ୍ । ॥୪୭॥

ଈନ୍‌କେ ନାଇଁ ଆସି ସେ କାଏଁ କାଯେଁ କହ
ତାର୍ ଆଏବାର୍ ଯିବାର୍ କିଏଦେଖେ ? ଦହ ଦହ । ॥୪୮॥

ଭାବ୍‌ଲିଁ ରାବଣ୍ ବେଦ୍ ପଢେ ଋଷିଅଂଶେଁ ଜନମ୍
ଗିଆନ୍ ଟିକେ ଗୁଏଁଇ ନେଇଛେ କରି ଦୁସ୍ କରମ୍ । ॥୪୯॥

କହେଲିଁ ''ସେ ସବୁ ଜାନ୍‌ଏ ନାଇଁ ଜାନ୍‌ଏ କେ ତାହାକେ
ସବୁନେ ଥାଇ ନଜର୍ ଲୁକା କରେ ନିଜର୍ ପାହାକେ । ॥୫୦॥

ଯେନ୍ ଠାନ୍‌କେ ମନ୍‌କେ ଆସେ କର୍‌ସି ଆଶୀର୍ବାଦ୍
ଲୋକ୍ ଜାନ୍‌ଲା ମୂରତି ନେଇ ତାହିଁ ପକାଏ ପାଦ୍ । ॥୫୧॥

ଯୁଗ୍ ଜାନି ମୂର୍ତ୍ତି ଧରେ ଅଧର୍ମ୍ ହେଲେଁ ବେଶୀ
ଧରମ୍ ରଖା ଲାଗିଁ ଧରାତଲ୍‌କେ ଉଦ୍‌ରି ନେସି । ॥୫୨॥

ଆଏର୍ ଆନନ୍ଦ ମୂର୍ତ୍ତି ଦେଖିଁ ଜଗତ୍ ଯାଏ ରମି
ସେନ୍‌ହେ ସରାଗ୍ ଶର୍‌ଧା ସବ୍ ପଛେଁ ଯାନ୍‌ଲମି । ॥୫୩॥

ଜନମ୍ ଭୂଇଁ ଛାଡ଼ି ଜନ୍‌ମନ୍ ରିଝାବାକ୍ ଲାଗି
ରାଜ୍‌ପନ୍ କେ ଛାଡ଼ି ବନ୍‌ବାସ ନିଏ ମାଗି । ॥୫୪॥

ଚିତ୍ରକୂଟ ପର୍‌ବତ୍‌ନେ ଏଛନି ଅଛେ ରହି
କେନ୍‌କେ ଯିବା ? କା'ଣା କର୍‌ବା ? କେ ପାର୍‌ବା କହି ? ॥୫୫॥

ବୁଝ୍ ନାଇଁ ବୁଝ୍ ରଜା ! ଯାହା କହେଲିଁ ସତ୍
ମୋର୍ ମନର୍ କଥା ନୁହେ ବେଦ୍ ପୁରାନର୍ ମତ୍ । ॥୫୬॥

ମୋର୍ କଥାକେ ସତ୍ କରି ସେ ଦୁର୍‌ମତି ରାବଣ୍
ଡ଼ାକ୍‌ଲା ମନ୍ତ୍ରୀ ମାନଙ୍କୁ ହାକି ''ହେ ଶୁକ ସାରଣ୍ । ॥୫୭॥

ଇ ଘଡ଼ି ଯ' ଚିତ୍ରକୂଟ୍ ରାମ୍ ଆନ୍‌ବ ଭୁଲେଇ
ଶଙ୍କା ଯିବା ଲଙ୍କା ପୁରୁଁ ନେବ ଟିକେ ବୁଲେଇ । '' ॥୫୮॥

ଶୁକ ସାରଣ୍ ଚିତ୍ରକୂଟେଁ ଦେଖିଲେ ଯାଇ ଯାହା
ଭୁଲେଁ ନାଇଁ ପରେ କାହିଁ ଭୁବନ୍-ଭୁଲାକ୍ ପାହା । ॥୫୯॥

ଭରତ୍ ଶତ୍ରୁଘନ୍ ସାଙ୍ଗେଁ ଥିଲେ ତିନ୍‌ହି ମାଆଁ
ଯେତେ ମନାଲେ ନାଇଁ ଧଏଲା ଘର୍ ଫିର୍‌ବାକ୍ ନାଆଁ । ॥୬୦॥

କାହିଁ ବୁବାଇଁ ଅବଧିବାସୀ ଯେ ଯେତେ କହେଲେ
କାହାରି କଥା ନାଇଁ ମାନି ଝାର୍ ଆଦ୍‌ରି ରହେଲେ । ॥୬୧॥

ଇଚ୍ଛାମୟ କା'ର୍ ଇଚ୍ଛାନେ ଭୁର୍‌ଥିଁ ଯିବା କାହିଁ ?
ଲଙ୍କାପୁର୍ ଯିବା ? ଯେ ଅଯୋଧ୍ୟା ଯାଏ ନିହିଁ । ॥୬୨॥

ରାମ୍‌କୁଁ କିଛି ନାହିଁ କହି ଫିର୍‌ଲେ ନିଜର୍ ଦେଶ୍
ଭାଏର୍‌ବାନ୍ ଭାବିଁ ନିଜ୍‌କେ ଭୋଲ୍ କଲା ଅଭୁଲା ବେଶ୍ । ॥୬୩॥

ତୁମେ କହିଛ ଯେନ୍ ମାନ୍‌କୁ ହେଇଥିବେ ସେ ଦୁହେ
ଶୁକ୍ ସାରଣ୍ ମନ୍ତ୍ରୀ ବିନ୍ନୁ ଆଉର୍ କିହେ ନୁହେ । ॥୬୪॥

ରାମ୍‌ନେ ସେ ପରଂବ୍ରହ୍ମ, ପର୍‌ମେଶ୍ୱରକେ ପାଇ
ଗୁରୁ ମୋର୍ ସେ'ନୁ  ନାମ୍ ଗାଇ ଗାଇ ବାଇ ।  ||୬୫||

ମତେ କହୁଥିଲେ ବାବା! ସବୁ ଦିହେଁ ସେ ଥାଏ
ସବୁ ନାମ୍ ସବୁ ରୂପ୍ ତାର୍ ହିଁ ନଥାଏ ।  ||୬୬||

ତାହାକେ ଢ଼ାପି ନେସି ପ୍ରାଣୀ ନିଜର୍ କଲା କାମେ
ତାର୍ ନାମ୍‌କେ ପାଶ୍‌ରି  ନେସି ମାଡି ନିଜର୍ ନାମେ ।  ||୬୭||

ମହାନ୍ ମୁଇଁ ପାଶ୍‌ରି ଆବ୍‌ରି ନେସି ଛୁଟିଆ ମୁଇଁ
ମହାସମୁଦର୍ ଆଢ଼େଇଁ  ଢୁଡ଼ାଟାକେଁ ଯାଏ ଗୁଇଁ ।  ||୬୮||

ନିଜର୍ ବ୍ରହ୍ମ ଶକ୍ତିକେ ଭୁଲି ଯାଏସି ଭରମେ
ଛୁଟିଆ ଦିହେଁ ରୁଠିଆ ଶକ୍ତି ସର୍କି ଯାଏ ସର୍‌ମେ ।  ||୬୯||

ବିହ ଆଏ ସବୁ ଶକ୍ତିର୍ ଦିହ୍‌ର୍ ବଲ୍ କାଏଁ ବଲ୍ ?
ତାହାକୁଁ ଛାଡ଼ି ଶୁଖିଲା ଖାଡ଼ି ଲଡ୍‌ବଡ୍  କଲ୍‌ବଲ୍  ।  ||୭୦||

ସଭାବ୍ ଚଲନ୍ ସାଙ୍ଗେଁ ତାହାକେ କଲେଁ ଉଜାଗର୍
କଡ଼ା କାମ୍ ବଡା  ସହଜ୍ ସେ ହେଲେଁ ଆଗ୍‌ଭର୍ ।  ||୭୧||

କଉଶିକର ଯଜ୍ଞ ଭାଙ୍ଗୁଥିଲେ ଅସୁର୍‌ମାନେ
ତାପୀର୍ ଠାନେ ତପୀର୍ ତପ୍ ସୋଇ୍ ହାର୍‌ମାନେ ।  ||୭୨||

କ୍ଷେତ୍ରୀର୍ ତେଜ୍ ସାଙ୍ଗେଁ ତପୀର୍ ଥିଲା ସବୁ ସିଧି
ଅସୁର୍ ବିରୋଧ୍ ଲାଗି କନା ଥିଲା ସବୁ ବିଧି ।  ||୭୩||

ତ'ବି ଆନ୍‌ଲେ ରାମ୍‌କୁଁ ଡାକି ଜାନ୍‌ବେ ବଲି ଖାଲି
ବ୍ରହ୍ମ ଶକ୍ତି ମୁନୁଷ୍ କେନ୍ତା ଦିହେଁ ପାର୍‌ସି ପାଲି ।  ||୭୪

ତାର୍ ପାଦ୍‌କେ ଛିଇଁ ଫୁଟ୍‌ଲା ନାରୀ ଶକ୍ତି ପଥ୍‌ରେଁ
ଶିବ୍ ଧୁନ୍‌ଥୁଁ ଗୁନ୍ ଚଢ଼ାଲା ଶକ୍ତି  ବାଆରି ବଦ୍‌ରେଁ ।  ||୭୫||

ଭରତି ରାଇ୍ ସଭାଥିଁତ ଧର୍‌ତୀର୍ ଝି' ବର୍‌ଲା
ଅଚିହ୍ନା ଅରୂପ୍ ଅକଥନ୍‌କେ ସେ'ହିଁ ଚିହ୍ନି ପାର୍‌ଲା । ॥୭୬॥

ସେ ଶକ୍ତିନୁ ଟିକେ ଢଗେଇ ପର୍ଶୁରାମ୍ ଭାର୍ଗବ୍
ଅସାଧାରଣ୍ ସାଧ୍ୟ କିଛି ମନେ ଅନେକ୍ ଗର୍ବ । ॥୭୭॥

ବ୍ରହ୍ମ ଢାଗ୍‌ଲା ଠାନେ ଯଦ୍‌ରି ପାଗ୍‌ଲା ଅଭିମାନ୍
ସେଥା ଲୁକର୍ ଲାଗି କାହିଁ ? କେନ୍ ବ୍ରହ୍ମାଣ୍ଡେ ଠାନ୍ । ॥୭୮॥

ସରଗ୍ ଜିତା ରାଏଇ୍ ଅଯୋଧାନେ ମହାରାଜା
ହେବା ବଲିଁ ତ ସରି ଥିଲା ଅଯୋଧାନେ ଖିଁଜା । ॥୭୯॥

ସତ୍ ଆଏଲା ବାଦୀ ଲାଗେଇ ନେଲା ତିଆଗ୍ ସାଙ୍ଗେ
ମମ୍‌ତା-ମତା ମନ୍ ପଛ ପର୍‌ଲା ନୁହି ଆଗେଁ । ॥୮୦॥

ତିଆଗ୍ ଆର୍ ଶାନ୍ତି କେଭେଁ ନୁହନ୍ ଛଡା ଛଡ଼ି
ମହାପୁରୁଷ୍ ହେସି ମୁନୁଷ୍ ତିଆଗ୍ ଗଲେଁ ବଢ଼ି । ॥୮୧॥

ତିଆଗ୍ ବଲେଁ ମହାପୁରୁଷ୍ ହେସି ମହାପୁରୁ
ସେ ତିଆଗ୍ ଆଗଭର୍ ହଇଁ ହାତ୍ ଠାରୁଛେ ଧୂରୁଁ । ॥୮୨॥

ଜଗତ୍ ସାଙ୍ଗେ ନିଜ୍‌କେ ଯେ କର୍‌ସି ଏକାକାର୍
ମରମ୍ -ଛିଡା ମମ୍‌ତା କା'ଣା କରି ପାର୍‌ସି ? ତାର୍ । ॥୮୩॥

ମହାପୁ-ପନ୍‌କେ ଯେତ୍‌କି ଦେଖୁଥିସି ଢାପି
ତିଆଗ୍ -ଧାରେଁ କାଟି ହଇଁ ଉଲଟି ହେସି ଥାପି । ॥୮୪॥

ସତ୍-ହାତ୍‌କେ ଧରି ରାମ୍ ତିଆଗେଁ ଯା'ନ୍ ସଁଭରି
କର୍ ଲେହେଁଟେଇ ଦର୍‌ବେଁ ରାଜପଦ୍ ରହେ କଧରି । ॥୮୫॥

ମାଁର୍ ମନା ବାପର୍ ମରନ୍ ଭାଇର୍ ଆଖିର୍ ପାନି
ବ୍ରହ୍ମମନା ମନ୍‌କେ ନାଇଁ ଆନି ପାର୍‌ଲା ଟାନି । ॥୮୬॥

ପୁର୍ ପୁର୍ ନେ ନିବାସ୍ ଯା'ର୍ ସେ ପରମ୍ ପୁରୁଷ୍
ମାଏନ୍ ମନ୍‌ସା ବାଚ୍ ବନାଏ ହଇଁ ସାଦା ମୁନୁଷ୍ । ।।୮୭।।

ମୁନୁଷ୍ କା'ଣା କର୍‌ବାର୍ ଆଏ କା'ଣା କର୍‌ବାର୍ ନୁହେ
ମନୁଷ୍ ଲାଗିଁ କେନ୍‌ସି କବାର୍ ଅସମ୍ଭବ ହୁଏ ? ।।୮୮।।

ସେ ରାମ୍ ଆଏଜ୍ ଝାରେଁ ବୁଲନ୍ ରାଏଜ୍ ହଏ ଝୁରିଁ
ସତ୍ ଶାନ୍ତି ଦୟା ଖେମା ବୁଲନ୍ ତାହାକେ ନୁରି । ।।୮୯।।

ବ୍ରହ୍ମ-ଦର୍‌ଶୀ ଅତ୍ରି ଋଷି ବ୍ରହ୍ମ-ଧର୍‌ସୀ ମନେ
ପାଏଲେ ବ୍ରହ୍ମ ରାମ୍ ରୂପେଁ ବୁଲେ ବନେ ବନେ । ।।୯୦।।

ସାଙ୍ଗେଁ ଅଛନ୍ ବିଶ୍ୱ-ଶକ୍ତି ସୀତା ଜଗତ୍ ମାତା
ପାଲି ପୁଷି ରଖନ୍ ପର୍‌କୃତି-ପୁରୁଷ ନାତା । ।।୯୧।।

ପତି ପତ୍‌ନୀ ରୂପେଁ ଯେତ୍‌କି ଅଛନ୍ ବାଁଧି ଯୁଲି
ଏକ୍ ଛାଡ଼ି ଅନେକ୍ ଠାନେ ଭୁଲେଁ ଯାଆନ୍ ଭୁଲି । ।।୯୨।।

ପୁରୁଷ୍ ଯଦ୍‌ରି ପର୍‌କୃତିନେ ନାଇଁ ରଖେ ସତ୍
ପର୍‌କୃତି ବି ପୁରୁଷ୍ ଛାଡ଼ିଁ ହଏ ଇତସ୍ତତ୍ । ।।୯୩।।

ସେ ସଂସାର୍ ଅସାର୍ ହଏ ଘାଏକେଁ ଯାଏ ଉଜ୍‌ରି
ଦିହ୍ ଦୁଇ ଗୁଟେ ଜୀବ୍ ବୀଜ୍ ନାଇଁ ପାରେ ଗଜ୍‌ରି । ।।୯୪।।

ଏକ୍ ମନ୍ ଏକ୍ ଜୀବନ୍, ଏକ୍ ବିଚାର୍ ଆଚାର୍
ଦେଖାବାକେ ସୀତା ରାମ୍ ନିଅନ୍ ଏକ୍ ଆକାର୍ । ।।୯୫।।

ସେନ୍ତା ଆ'ନ୍ ଆତ୍ମଦର୍ଶୀ ଅନୁସୂୟା ଅତ୍ରି
ଅତ୍ରି ଯେନ୍ତା ପତି ସେନ୍ତା ଅନୁସୂୟା ସତୀ । ।।୯୬।।

ଅତ୍ରି ଅତି ଆତ୍ମୀୟ ଜାନି ରାମ୍ ଛିଡିଁଲେ ପାହା
ଅନୁସୂୟାକୁଁ କଲେ ସୀତା ଘାଏକେଁ ନିଜର୍ ମାଆ । ।।୯୭।।

ଅନୁସୂୟା କହେଲେ ମା! ସତୀ ବର୍‌ତୀ ସୀତା
ଇ ବର୍‌ତୁଁ ନାଇଁ ବର୍‌ତିଲେଁ ହେସନ୍ ଜଗଜିତା । ||୯୮||

ନାରୀ ଜୀବନ୍ ଲାଗିଁ ମା! ଇଟା ଅଲଙ୍କାର୍
ଛାଡ୍‌ଲେଁ, ନାରୀର୍ ବାଟ୍ ହଏ ଭାରୀ ଭୟାଙ୍କାର୍ । ||୯୯||

ପିଁଧନ୍ ଉଢନ୍ ସାଙ୍ଗେ ଦେଇ ମଖା ଘିଁସା ଦରବ୍
କହେଲେ ସତୀପନ୍ ସାଙ୍ଗେଁ ଝଟ୍‌କୁଥିବା ସରବ୍ । ||୧୦୦||

ରାମ୍ କହେଲେ ଋଷି ପାଦୁଁ ଆଶୀର୍ବାଦ୍ ନେଇ
ଯିମ୍ତୁ ଆମେ କାହାକେ କହେଲେଁ ବାଟ ଦେତା ବତେଇ । ||୧୦୧||

ଋଷି ଭାବ୍‌ଲେ ମନେ ଯେ ସମ୍‌କୁଁ ଦେଖାଏ ବାଟ୍
ନିଜେ ଆଏ ସବୁ ବାଟର୍ ମଏଧେଁ ସିଧା ଛାଟ୍ । ||୧୦୨||

ମୋର୍ ମାନ୍‌ବଢାବାକେ ବାଟ୍ ବତାବାର୍ କଥା
କହନ୍ ବିଚାର୍ ବିଶାରଦ୍ ଆଚାର୍ ସାମ୍‌ରଥା । ||୧୦୩||

ଶିଷ୍ ପଠେଇ ନଏଦ୍ ପାର୍ କରେଇ ଦଣ୍ଡକ ବନ୍‌କେ
ଦେଖାତେ ସାଏର୍ ବାଟ୍, ରାମ୍ ଗଲେ ନିଜର୍ ମନ୍‌କେ । ||୧୦୪||

ମୁନି କହନ୍ ଚାଲ ଏଢ୍‌କେଁ ଯିମା ସମିୟା ହେଲା
ତେଗି ନାଇଁ ଯାଉ ଆମର୍ ଶଉଚ ସଂଧିଆ ବେଲା । ||୧୦୫||

ରାମ୍ ନାମେ ଭଜନ୍ ଚାଲେ ଲହରେ ବୀନାର ତାନ୍
ସେ ନାମେ ପୁଲ୍‌କି ଆସେ ସାରା ଆଶ୍ରମ୍-ପ୍ରାନ୍ । ||୧୦୬||



# ପାଉଚ୍-୨

# ସୀତାକର୍ ବାଏଲ୍ ପିଁଡ୍ ଦେବାର

ମୁଡ୍ ଉପରୁଁ ବେଲ୍ ତଲ୍‌କେ ଛଏରା ହେଲା ଆଡ୍
ଖରା-ଚନ୍ଦନ୍ ଚିଦ୍‌ରି ହଇଁ ଗଛ୍ ହଉଛନ୍ ଠାଡ୍ । ॥୧॥

ପତ୍‌ରେଁ ପତ୍‌ରେଁ ଉକିଆ ଖେଲେ ଭିତ୍‌ରେ ତାର୍ ଅଁଧାର
ଭିତରର୍ ଦୁଖ୍ କେନ ଦେଖାଏ ସଭାବ୍ ଯାର୍ ସୁଧାର୍ । ॥୨॥

ଋଷି ଆଶ୍ରମ୍ ବେଦୀ ଉପରେଁ ରାମେନ୍ ସଭା ଜମିଛେ
ଖୁସୁର୍ ମୁସୁର୍ କାହିଁ ପାଏବ ? ଜନ୍ ଏ ଯଦ୍‌ରି ଗମିଛେ । ॥୩॥

ସୀତାର୍ ଆଖିଁ ଟିକେ ଟିକେ ଛଲ୍‌କିଁ ଆସେ ପାଏନ୍
ସୁର୍ତା କରି ଅନୁଯୂୟାର୍ କଥେଁ ପତିର୍ ମାଏନ୍ । ॥୪॥

ଯତି ଆଶ୍ରମେ ଅଛନ୍ ସତୀ ପଦେଁ ଧୂରେଁ ପତି
ଶରୀର୍ ସିନେ ଧୂରେଁ ଭାବର୍ ଭିତ୍‌ରେଁ ନିକ୍‌ଟ୍ ଅତି । ॥୫॥

ସୀତା ଭାବନ୍ ସେ ଭାବ୍‌ନୁ ହେଲେଁ ନିମ୍‌ଷେ ଦୂର୍
ଥିଲେଁ ଥିବେ କାହିଁ ଯଦ୍‌ରି ଥାଏ ଯମ୍‌ପୁର୍ । ॥୬॥

ସୀତା ଆଁଖିର୍ ଭାଷା ଯାଇ ଋଷିର୍ ଆଖିଁ ବାଜୁଛେ
ଧୋବ୍ ଫର୍ ଫର୍ ପତାର୍ ବାଲୁଁ ବାହାର୍‌ବାର୍ ବାଟ୍ ଖୁଜୁଛେ । ॥୭॥

ଭଜନ୍ ଲାଗେ ମୁନିର୍ ଭାଷା କଁଠ୍ ଶୁଭୁଛେ ଉଦା
ସେ ରସ୍‌ନେ ପାଗି ହଉଛନ୍ ଶୁନ୍‌ବାର୍ ଶିଷ୍ୟ ହୁଦା । ॥୮॥

ଆଏଁଖ୍ ପୁଛି ମୁନି କହନ୍ "ଝାଏଁ କରେ ଝାର୍
ଜନ୍ ମୁନ୍‌ଷର୍ ସୋର୍ ଶବଦ୍ ନାଇଁନ କେନ୍‌ସି ପାର୍ । ॥୯॥

ଅଗା ପଛା ରାମ୍ ଲକ୍ଷ୍ମଣ୍ ମଝେଁ ଚାଲନ୍ ସୀତା
ଆତ୍ମା ପର୍‌ମାତ୍ମା ମଝିଁ ମାୟା ଜଗଜିତା । ।।୧୦।।

ରାମ୍ ଚାଲିଛନ୍ ଶାଗୁଆ ଘାସେଁ ପଦମ୍ ଫୁଲ୍ ଫୁଟେ
ସୀତାର୍ ଚାଲିଁ ଜଗଲ୍ ଉପରେଁ ଲାଲ୍ କଇଁ ଉଠେ । ।।୧୧।।

ଲକ୍ଷ୍ମଣ୍ ଆଁଖିର୍ ଦର୍ପନେ ସେ ସୁନ୍ଦର୍ ପନର୍ ଛାଏ
ବାଟ୍‌ଚଲା ଦୁଖ୍ ଭୁଲେଇ କରେ ରାମ୍ -ଭାଏ କେ ବାଏ । ।।୧୨।।

ରାମ୍ ଅଙ୍ଗର୍ ଶାଗୁଆ ରଙ୍ଗ ପତ୍‌ରେଁ ଯାଏ ପହଁରି
ସୀତା ଶରୀରର୍ ପଦୁଁ ବାସ୍‌ନା ଆସ୍ ପାଶ୍ ଯ ।ଏ କହଁରି । ।।୧୩।।

ହେର୍‌ନା ଚିଥଲ୍ କୁର୍‌ରିର୍ ଦଲ୍ ପାଶ୍‌କେ ହୁଅନ୍ ଟାନି
ଡର୍ ନାଏଁନ ରଁଚେ ମନେ ନର୍ ବର୍ଲି ବି ଜାନି । ।।୧୪।।

ସୀତାର୍ ଆଖିଁ ତାକର୍ ଆଏଁଖ୍ ମିଶିଁଗଲେ ଛନ୍‌ଏ
ଆଶ୍ରିଯ୍ ହୁଅନ୍ ତାକର୍ ଆଁଖି ଆଏଁଖ୍ ଜାନି ବନ୍‌ଏ । ।।୧୫।।

ନିଜର୍ କୁଲର୍ ପିଲା ଭୁଆଷେନ୍ ଝାରେଁ ବୁଲନ୍ ଜାନି
ସୁରୁଯ୍ ମୁହୁଁ ଦେଖଉନ୍ ସୀତା ଉର୍‌ନହା ଆନନ୍ ଟାନି । ।।୧୬।।

ଗହଦ୍-ଝରା ଖରା ଦେଖ୍ ଛଏରା ତଲେଁ ଯାଇ
ବସ୍‌ଲେ ରାମ୍ ସୀତା ସାଙ୍ଗେଁ ପାଶେଁ ଲକ୍ଷ୍ମଣ୍ ଭାଇ । ।।୧୭।।

ଗର୍ଜି ଘୁମ୍‌ରି ଗର୍ଡି ଆସେ ନାଇଁନ ମେଘ୍ ବାଦଲ୍
ଜଂତ୍ ଜାନୁଆର୍ ଦଉଡି ଭାଗନ୍ ଜାନ୍ ଧରିଁ ଦଲଦଲ୍ । ।।୧୮।।

ଧସ୍‌କିଁ ପରେ ତାହି ପଖ୍‌ରା ମସ୍‌କି ହଏ ଝାର୍
ନିଘା କର୍ ବାବୁ ! କା'ଣା ହେଲା କେନ୍ ପାର୍ । ।।୧୯।।

ନାଇଁ ସର୍‌ନୁ ରାମ୍‌ର୍ ମୁହଁର୍ କଥା ଶୁଭ୍‌ଲା ହଁସି
ଘିଡ୍, ଘିଡାଲା ମେଘ୍ କେନ ଚଡକ୍ ପର୍‌ଲା ଖସି ! ।।୨୦।।

ଅଜାନ୍ ବାହୁ ଜଁତ୍‌ଟେ ଆଏଲା ସମ୍‌କର୍ ଅଜାନ୍ ଡକେଁ
ହାତ ଲମିଛେ କୁଣେ ଦାଁତ୍ ଗିଲ୍‌ରି ପରେ ହାଡ୍‌କେଁ ।  ॥୨୧॥

କଟ୍‌କୁଁ ଲମ୍ ଗୋଡ୍ ଚେହେରା ତାର୍ ଗନ୍ଧୁଁ ବି ଡେଙ୍ଗ୍
ଆଏଁଖ୍‌ମାନେ କର୍ପନେ ଆ'ନ୍ ବୁଢ଼ା ବୁଢ଼ା ବେଙ୍ଗ୍ ।  ॥୨୨॥

ହାତେଁ ଧରେ ତିର୍ଶୂଲ୍ ବେଧା ପଶୁମୁଡ୍ ମାନ୍
ଲହୁଝରି ଲାଲ୍ ଦିଶୁଛେ ଚାଲ୍‌ଲା ବୁଲ୍‌ଲା ଠାନ୍ ।  ॥୨୩॥

ରାମ୍ ଲକ୍ଷ୍ମଣ୍ ସୀତା ଦେଖିଁ ମୁହୁଁ ବୁହିଲା ଲାଲ୍
କହେଲା ତୁଏ ଅକାଲେଁ ଆଏଲ୍ ପୂର୍‌ଲା ତୁମର୍ କାଲ୍ ।  ॥୨୪॥

ଝାଡ୍‌ର୍ ଜଁତ୍ ଖାଇ ଖାଇ ଲାଗିଥିଲା ନ ଚିଟା
ମନ୍‌ଚିତ୍ ଜାନି ଯୁଟାଲା ବିହି ମୁନୁଷ୍ ମାଉଁସ୍ ଭଟା ।  ॥୨୫॥

କିଏ ? କାହିଁ ଆଇଛ ? ଝାଡେଁ ବୁଲ କାଏଁ ସୋଲ୍ ?
ନୂଆଁ ଦେଖେଁ ନାଇଁ ଦେଖି ଝାଡେଁ ବୁଲି ରୋଜ୍ ।  ॥୨୬॥

ଯେ'ବି ହ' ବାବାଜୀ ବେଶେଁ ସାଙ୍ଗେଁ ରଖ ନାରୀ
ସଂସାର୍‌କେ ଭକୁଆ ବନେଇ ରଖ ଠକି ନାରୀ ।  ॥୨୭॥

ନାଇଁପରେଁ ଠକେଁ ଠିକ୍ କହେଁ ନାରୀଟାକ
ମତେ ଦେଇ ଜାନ୍ ବଅଁଚାଇ ଭାଗ, ନାଇଁ ଟାକ ।  ॥୨୮॥

ନାଇଁ ହେଲେଁ ଆହାର୍ ହେବ ଜଲେ ଭୋକର୍ ଜୁଏ
ଭୋକ୍ ହେଲେଁ ଲୋକର୍ ଭଲ୍ ମନ୍ଦ୍ ବାଆରି ନୁହେ ।  ॥୨୯॥

ଏତ୍‌କି କହି ଛାପ୍‌କି ଧଏଲା ସୀତା ଜନକ୍ ଜେମା
ସୀତା କିର୍‌ଲାନ୍ କେନ୍ତା ହେଲା ଛ'ଟା ଯେ ମା! ଯେ ମା' ।  ॥୩୦॥

ରାମ୍ କହେଲେ ପର୍ ନାରୀନେ ଆଏଁଖ୍ ପକାଲା ବେଲୁଁ
ଧନନ୍ ଛତା !ମରନ୍-ବାଟେଁ ସହଜେଁ ଯାତରା ହେଲୁ ।  ॥୩୧॥

ସୀତାଛାଡି ଛାଡ୍‌ରେ ଅଧମ୍ ! ଅଧର୍ମର ବାଟ୍
ନୁହେ ଦେଖୁ ଦେଖିବୁ ଅଧମ୍ ଆଗେଁ ଯମର୍ ନାଟ୍ । ।।୩୨।।

ଏତ୍‌କି ଶୁନି ଝାପ୍‌ଟି କରି ଦୁଇ ଭାଇକୁଁ ଖକେଇ
ଯମର୍ ନାଟ୍ ଦେଖିବ କହି ଖନ୍ଦେଁ ନେଲା ପକେଇ । ।।୩୩।।

ସୀତା ହେଲେ ଆକୁଲ ବିକୁଲ୍ ରାମ୍ ପାର୍‌ଲେ ଜାନି
କହେଲେ ବାବୁ ଲକ୍ଷ୍ମଣ୍ ! ଆର୍ ନାଇଁ ହଏନ ମାନି । ।।୩୪।।

ଯେ ଯେନ୍ ଖନ୍ଦେଁ ବସିଥିଲେ ଉପ୍‌ଡାଲେ ସେ ବାହା
ତଲେଁ ଗଦେଇ ହଉନ୍ ରାମ୍ ଟଁ ଟିଁ ଦେଲେ ପାହା । ।।୩୫।।

ଅସୁର୍ ଜାନ୍‌ଲା ରାମ୍ ଆନ୍, ତାକର୍ ହାତେଁ ମରନ୍
ଶାପ୍ ପାଏଲା ଦିନର୍ କଥା ସାଙ୍ଗ ହେଲ ସ୍ମରନ୍ । ।।୩୬।।

କହେଲା ତୁମେ ରାମ୍ ଯଦ୍‌ରି ଶୁନ୍‌ଅ ମୋର୍ କଥା
ବ୍ରହ୍ମାର୍ ବରେଁ ବାହୁ ବଲେଁ ମୁଇଁ ସମ୍‌ରଥା । ।।୩୭।।

ଶକ୍ତି ପାଇଁ ଶକ୍ତି ମଯର୍ ପାଶ୍‌ରି ଆରାଧନା
ବିରାଧ୍ ହେଲା ନାଁ, ଅସୁର୍ ମଏଧେଁ ହେଲିଁ ଗନା । ।।୩୮।।

ଦିହର୍ ବଲେଁ ବଲ୍‌ବାନ୍ ହଇଁ ବୁଝିଲିଁ ଦିହର୍ ଭାଷା
ଦିହ୍-ସର୍‌ବସ ହଇଁ କଲି ଦିହର୍ ଆନନ୍ଦ୍ ଆଶା । ।।୩୯।।

ରମଣ୍-ସମ୍ଭାରେଁ ଭରା ରମ୍ଭା ଅପ୍‌ସରୀ
ରମି ଆନନ୍ଦ୍ ପାଏମି ବଲିଁ ଯୋର୍ ଜବରନ୍ କରି । ।।୪୦।।

କୁବେର୍ ଠାନୁ ପାଏଲିଁ ଶାପ୍ ଅସୁର୍ ଭାବେଁ ଭୋଲ୍
ହଇଁ ରହେମି ମିଲ୍‌ଲା ମତେ ଅସୁର୍ ଶରୀର୍-ଖୋଲ୍ । ।।୪୧।।

କୁବେର୍ କହେଲେ ମୋର୍ କର୍‌ମା କରମ୍ କରି ବିଚାର୍
ଦିହ-ଆନନ୍ଦ୍ କେ ଆନନ୍ଦ୍ ବଲିଁ କଲୁ ଅନାଚାର୍ । ।।୪୨।।

ଘଡ଼୍‌କେଁ ଆସି ଘଡ୍‌କେଁ ଯିବାର୍ କାଏଁ ଆନନ୍ଦ୍ ଆଏ
ଆନନ୍ଦ୍ ପାଏଲେଁ ଦୁଖ୍ ଯାଏ କେତେ ଜନମ୍ ଯାଏ । ॥୪୩॥

ଆନନ୍ଦ୍ ଆଏ ପର୍‌ମାନନ୍ଦର୍ ବ୍ରହ୍ମର୍ ଗୁଟେ ଅଂଶ
ପାଏଲେଁ ଜରେ ସବୁଦିନ୍‌କେ ଦୁଖର୍ ମୂଳ୍ ଧ୍ୱଂସ୍ । ॥୪୪॥

ତପ୍ ଖଟଲୁ ବନିହାଁ ସିନା ବାଟ୍ ପାଏଲୁ ନାଇଁ
ଆନନ୍ଦ୍ ବର୍ଲିଁ ନିରାନନ୍ଦର୍ କୋଡ୍‌କେ ଗଲୁ ଧାଇଁ । ॥୪୫॥

ମୁନୁଷ୍ ମୂର୍ତ୍ତି ଧରି ଆନନ୍ଦ୍ ଆଏବା ଦିନ୍‌ଏ ମରତ୍‌କେ
ବୁଲି କିନ୍ଦରି ଆନନ୍ଦ୍ ପର୍‌ଷି ନଉଥିବା ଜଗତ୍‌କେ । ॥୪୬॥

ମୁହାଁ ମୁହିଁ ହେଲେଁ ତାର୍ ପାଏବୁ ଆନନ୍ଦ୍ ରସ୍
ନିଜର୍ ଥିତି ଫିରିପାଏବୁ ମନ୍ ହେବା ବର୍‌ଜଷ୍ । ॥୪୭॥

ତୁଇଁ ଆଉ ସେ ପରମାନନ୍ଦ ମୂର୍‌ତି ମହାପ୍ରଭୁ
କୁବେର୍ ଶାପ୍ ମୋର୍ କାମ୍‌ନା କୁର୍‌ପା କର୍ ଯେ ପ୍ରଭୁ । ॥୪୮॥

ଦିହ୍‌ଟାକ ମୋର୍ ତୁପି ନେବୁ ଦିହ୍-ଲାଲ୍‌ସା ଯାଉ
ଜୀବନ୍ ଗଲେ ଆତ୍ମା ପର୍‌ମାନନ୍ଦେଁ ପହଁରୁ ଥାଉ । ॥୪୯॥

ରାମ୍ ହାତେଁ ମଲା ବିରାଧ୍ ଦିହ୍-ବାସ୍‌ନା ସର୍‌ଲା
ଡ଼ରେଁ ଥରୁଥିଲେ ସୀତା ତେଦ୍‌କେଁ ଦମ୍ ପୂର୍‌ଲା । ॥୫୦॥

ସୀତା କହେଲେ ପିତା ଲାଗ୍‌ବା ଏତେକେଁ ଈ ଠାନ
ଦୁସ୍‌ରା ଠାନ୍‌କେ ଯିମା ବର୍ଲି ତୁରତି କହେଲେ ରାମ୍ । ॥୫୧॥

ରାମ୍ ଚାଲ୍‌ଲେ ଆଗେ ଆଗେ ପଛେଁ ସୀତା ଲକ୍ଷ୍ମଣ୍
ଦେଖ୍‌ଲା ଲୁକର୍ ଦୁଃଖ୍, ଚୁପ୍‌ଲା ଲେଖେଁ ଖଣ୍ ଖଣ୍ । ॥୫୨॥

ରାଏଜ୍ ଛାଡ୍‌ବାର୍ ଦିନ୍ ଆଏଜ କାଲିର୍ ଲେଖେଁ ଲାଗେ
ଦିନ୍ ମାସ୍ ସବ୍ ଧାଇଁ ଧୁପି ବଛର୍ ବେନେଁ ଭାଗେ । ॥୫୩॥

ରାମ୍ ଲକ୍ଷ୍ମଣ୍ ସୀତା ଧୀରେ ଧୀରେ ଚାଲ୍‌ନ୍ ଝାରେଁ
ଉଲ୍‌ଗି ହେବା ଫଲ୍‌ଗୁ ନଏଦ୍ ଧାଏଁ ପୂରା ଧାରେଁ । ॥୫୪॥

ରାମ୍ ପୁହୁଁଚି ନଏଦ୍ ନିକେ ମାର୍‌ବାକେ କୁରିଆ
କହେଲେ ଭାଇ ! ପାଏନ୍ ଠାନୁ ନାଇଁ ଥିବା ଦୂରିଆ । ॥୫୫॥

ଫଲ୍‌ଗୁ ଖଁଡ଼ି ରାଏତ୍ ପୁହାଲେ ଫଲ୍ ମୂଲ ନାଇଁ
ଫଲ୍ ମୂଲ୍ ନୁର୍‌ବାକେ ବି ସମିୟା ନାଇଁ ଥାଇଁ । ୫୬॥

ବେଲ୍ ଉଦ୍‌ଲା ଫଗୁଆ ଖରା ଫଲ୍‌ଗୁ ଉଠେ ହଁସି
ପୂରୁବ୍-ଦିଗ୍-ଫରୁଆ ଫାରିଁ ସେନ୍ଦୁର୍ ଆସେ ଖସିଁ । ॥୫୭॥

କୁଲ୍ ଦେବ୍‌ତାକେ ହୁରୁଦ୍ ଭିତ୍‌ରୁଁ ତିନ୍‌ହେ କଲେ ଯୁହାର୍
ରାମ୍ କହେଲେ ଲକ୍ଷ୍ମଣ୍ ଗା ହର୍‌ବର୍ ହେଇ ବାହାର୍ । ॥୫୮॥

ବାପାଁକର୍ ଆଏଜ୍ ମଲା ଦିନ୍ ଶରାଧ୍ କର୍ଲେ ଯାଇ
ଯାହା ମିଲ୍‌ବା ପିଂଡ୍ ପର୍‌ଦାନ୍ କର୍‌ମା ଇନେ ଥାଇ । ॥୫୯॥

ଶଏସ୍ ସାଙ୍ଗେ ଫଲ୍‌ମୂଲ୍ କିଛ ବି ହଇଥିତା
ସମିୟା ଗଲେ ମାହାଲିଆ ହେବା କହେଲେ ସୀତା । ॥୬୦॥

ଲକ୍ଷ୍ମଣ୍ କହନ୍ ପାଶେଁ ଅଁଦ୍‌ରେ ଅରେନ୍ ନାଇଁଥିବା
ପାଶେଁ ଗୟା ସହର୍ ଅଛେ ଝାର୍ ଦୂର୍‌କେ ଯିବା । ॥୬୧॥

ଝାର୍‌କେ କା'ଣା ଡ଼ର୍‌ତେ ଲୋକ୍ ଲୋକ୍‌କୁ ଡ଼ରେ ଝାର୍
ସର୍‌ବନା ଶୁଖେ ନିଷବାର୍ ଦେଖିଁ ଟଙ୍ଗେର୍ କୁଢ଼େର ଧାର୍ । ॥୬୨॥

ଶଏସ୍ ମିଲ୍‌ବା ଲୋକ୍ ବସ୍ତିନେ ଭିଖ୍ ମାଗ୍‌ଲେଁ ଯାଇ
କ୍ଷେତ୍‌ରୀ କୁଲେଁ ଜାତ୍ ହେତ୍‌କିରି କରି ହେବା କାହିଁ ? ॥୬୩॥

ଯାହା ମିଲ୍‌ବା ଫଲ୍‌ମୂଲ୍ ସଁଖ୍‌ଲି ଆନ୍‌ମି ଯାଉଛେଁ
ସେତ୍‌କି ତୁର୍‌ତି ଆଏମି ଯେତ୍‌କି ଜଲ୍‌ଦି ମୁଇଁ ଯାଉଛେଁ । ॥୬୪॥

ରାମ୍ ସୀତା କଥା ହ'ନ୍ ଲକ୍ଷ୍ମଣ୍ କେତେ ବନ୍ଏ
ଜଗତ୍ ଛାଡି ଆନ୍‌ଲେଁ କାହିଁ ପାଏବ ଏନ୍ତା ଜନ୍ଏ । ॥୬୫॥

ସାନ୍ ଭାଏର୍ କାମ୍ ଯାହା କାମେ ଦିଅନ୍ ଦେଖେଇ
କିହେ ନାଏନ ତାକର୍ ଲେଖେଁ ଆପ୍‌ନେ ଆ'ନ୍ ନ ଏଖେଇ । ॥୬୬॥

କର୍ଥୁଁ କଥା ହଉନ୍ ହଉନ୍ ସମିୟା ଯାଏ ଢ଼ଳି
ସୀତା କହେଲେ ଶରାଧ୍ ସିମୟା ନାଇଁ ଯାଉନ ଟଳି । ॥୬୭॥

ଯାଉଛେଁ ତୁରତି ଆଏମି କହି ରାମ୍ କଲେ ବାହାରି
ଶରାଧ୍ ସମିୟା ହେଲା ପଛେଁ ଦେଖାନାଇଁ କାହାରି । ॥୬୮॥

ହେଲା କଲେଁ ଗଲା ; ଏ' ଦେ ଶରାଧ୍ ବେଲା ହେଲା
ଉଟୁସ୍ ପୁଟୁସ୍ ସୀତା କଲ୍‌ପନା ନାଇଁ ରହେଲା । ॥୬୯॥

ସୀତା କହେଲେ ଜାନୁଛ ତ ପିତା ! ମୋର୍ ଥିତି
ଜୀବ୍‌ନେ ଥିଲେଁ କେତେ କେତେ ସେବା କରିଥିତିଁ । ॥୭୦॥

ଝାରି ଝୁରି ହଇ ବସେଁ ଆଜିର୍ ମଝା ଝାରେଁ
ଦାନ୍ କେତେ ଆଏଁ ପିଂଡ୍‌ଟେ ବାଢି ନାଇଁ ପାରେଁ । ॥୭୧॥

ଟାକିଥିବ ମୋର୍ ହାତ୍‌କେ ସମିଆ ହଏ ଆନ୍
ଦାନା ନାଏଁ ନ କା'ଣା କର୍‌ମି ପିଂଡ୍ ପର୍‌ଦାନ୍ । ॥୭୨॥

ଦିଅର୍ ଗଲେ ନାଇଁ ଫିର୍‌ଲେ ପଡି ଗଲେ ଯାଇଛନ୍
କେତେବେଲେଁ ପିଁଡ୍ ବାଢ୍‌ମି କିଛି ଯଦ୍‌ରି ପାଇଛନ୍ । ॥୭୩॥

ଶର୍‌ଧା ଅଛେ ସାମ୍‌ଗିରୀ ନାଇଁ କାନ୍ଦି କହନ୍ ସୀତା
ଯାହା ପାଏଁ ବାଢି ନିଏଁ ନିଅ ନାଇଁ ନିଅ ପିତା । ॥୭୪॥

ଉଦା ବାଲିଁ ମୁଠା ବାଁଧି ଗୁଲା ଗୁଲା କରି
ପିଁଡ୍ ବାଢ୍‌ଲେ ଆଏଁଖ୍ ଦୁହିନୁ ଲହ ଯାଏ ଝରି । ॥୭୫॥

ନାଇଁ ଥୁନ୍ ପିଂଡ୍ କାର୍ ହାତ୍‌ଟେ ନେଲା ଛିନି
କା'ର ହାତ୍ ଆଏ ? ଆଶ୍ରିନ୍ଯ୍ ସୀତା ନାଇଁ ପାରି ଚିହ୍ନି । ॥୭୬॥

ସୀତା କହେଲେ କିଏ ନିଏ ଦିଏଁ ମୋର୍ ଶଶୁର୍ କୁଁ
ପରାପତ୍ ନୁହେ ଭୂତ୍ ପ୍ରେତ୍ ଆର୍ ଅସୁର୍ କୁଁ । ॥୭୭॥

ହାତର୍ ଆଡୁଁ ଶବଦ୍ ଆଏଲା ମୁଇଁ ଆଏ ଦଶରଥ୍
ପିତୃଲୁକେଁ ଥାଇ ତୁମର୍ ନେ ଅଛେଁ ଅବିରତ୍ । ॥୭୮॥

ଶାର୍‌ଧ ଲାଗିଁ ସାମ୍‌ଗିରୀ ନୁହେ,ଶର୍‌ଧା ଦର୍କାର୍
ଶର୍‌ଧା ନାଇଁ, ଥାଇ ଦରବ୍ ଯେତେ ପର୍‌କାର୍ । ॥୭୯॥

ପିତୃଲୋକ୍ ବୋଧ୍ ନୁହନ୍ ନାଇଁ କରନ୍ ମନ୍
ତୋର୍ ଲେଖେଁ ବହ ପାଇଁ ମା! ପାଇଛେଁ ମହାନ୍ ଧନ୍ । ॥ ୮୦॥

ସୀତାର୍ ଆଁଖିର୍ ଧାର୍ ବୁହିଲା ଫଲ୍‌ଗୁ ଧାର୍‌କେ ଜିତି
ରାମ୍ ଅବାକ୍ ହେଲେ ଜାନି ପାରି ସବୁ ଥିତି । ॥୮୧॥

କହେଲେ ସୀତା ପିଂଡ୍ ବାଢ଼ ସବୁ ଦରବ୍ ଆଏଲା
ସୀତା କହେଲେ ଦେଇ ସାରିଛେଁ ଶର୍‌ଧା  ଥରେ ସଏଲା । ॥୮୨॥

ପିଂଡ୍ ପର୍‌ଦାନ୍ ନାଇଁ ହଏ ଦିନ୍‌କେଁ ଦୁଇଥର୍
ହାତ୍ ବଢ଼େଇ ନେଲେ ବାପା ହଇଁ ହରବର୍ । ॥୮୩॥

କହେଲେ ମା' ଶର୍‌ଧା ନେଇ ଶରାଧ୍ , ଦରବ୍ ନୁହେ
ସେ ଶରାଧ୍ ବି ଅକାମ୍ ଯଦ୍‌ରି ଲୋକ୍ ଦେଖାନି ହୁଏ । ॥୮୪॥

ଅଲ୍‌ଗୁଁ ନୁହେ ଫଲ୍‌ଗୁ ଭିତ୍‌ରେଁ ପିଂଡ ବାଢ଼ିଲିଁ ବାଲି
ମାହାଲିଆ ହେବା ଚାଲିଁଗଲେଁ ଶରାଧ୍ ସମିୟା ଭାଲିଁ । ॥୮୫॥

କିଏ ଥିଲେଁ କହେତା,ମୁଇଁ ସଏଦ୍ ଦେଖିଛେଁ ଆଖିଁ
କହେବା ଲ ଫଲ୍‌ଗୁ ରହେଲା ସବୁ କାଲ୍‌କେ ସାକ୍ଷୀ । ॥୮୬॥

ରାମ୍ କହେଲେ ଆର୍ ଗୁଟେ କଥା କହେବା ଇ ନଏଦ୍
ଉପର୍ ଦେଖା କଥା ନୁହେ ଶର୍ଧା ଥାଇ ସଏଦ୍ । ||୮୭||

ବର୍ଷା ଦିନ୍ ଛତା ପାଏନ୍ ନାଇଁ ବୁହୁ ଉପ୍ରେଁ
ଯାହିଁ ଚାହେଁଲେଁ ଦେବା ପାଏନ୍ ଛଁଟ୍ରାବା ଯେ ଭିତ୍ରେଁ । ||୮୮||

ସଉମିତ୍ରୀ କେତେବେଲ୍କୁଁ ଠାଡେଁ ଠାଡ୍ ଶୁନୁଛନ୍
ସୀତା ଭିତ୍ରେଁ ସରାଗ୍ କେତେ ମନେ ମନେ ଗୁନୁଛନ୍ । ||୮୯||

ଧଏନ୍ ମୋର୍ ଜନମ୍ କରମ୍ ଧଏନ୍ ମାଆ ମାଟି
ମାଟିର୍ ଝି ବହୂର୍ ସରାଗ୍ ସର୍ସର୍ ଆଏ ଛାତି । ||୯୦||

ରାମ୍ କହେଲେ ଗୟା ସୁରର୍ ଶରୀର୍ ପଥର ହଇଛେ
ଅସୁର୍ ଭାବ୍ ଥାଇ ଇନେ ସବୁ ଦିନ୍କେ ଶୁଇଛେ । ||୯୧||

ତାର୍ ନାମେ ତୀରଥ୍ ହେଲା ବଢ଼୍ଲା ଲୋକ୍ ବସ୍ତି
ଜନ୍ବାସ୍ ପାଶେଁ ରହି ନୁହେ ଆମେ ବନ୍ବାସୀ ବର୍ତୀ । ||୯୨||

ନୂଆଁ ଠାନକେ ଜିମା ତାଲ ନାଇଁ ହଏନ ବୁଲି
ମୁନି ମାନ୍କୁଁ ପଚାରି ରହେମା ବନଏ ଠାନ୍ଟେ ବୁଝି । ||୯୩||

ଏତକି ଶୁନୁନ୍ ଟାଲି ବସ୍ଲେ ରାମର୍ ପଛା ପଛ୍
ପଛ ନାଇଁ ଛାଡନ୍ ଦୁହେ ଛଏରା ଯେନ୍ତା ଗଛ୍ । ||୯୪||

ବେଲ୍ ବୁଡ଼ି ଆସେ ଜାନି ବାଲ୍ମିକୀ ମୁନି ରହେଲେ
ତାଲ ଯିମା ସଂଧ୍ୟା ତର୍ପଣ୍ ସାର୍ମା ଜଲ୍ଦି କହେଲେ । ||୯୫||

ରାମ୍-ଦୟା ଥିଲେଁ ରାମେନ୍ କଥା ହେମା ଜାଏଲ୍
ସମ୍କୁଁ ବନ୍ଏ କିହେ ଜନ୍ଏ ଅସ୍କଟ୍ଭଇଛନ୍ ଭାଏଲ୍ । ||୯୬||

ସଭା ସର୍ଲା ସଭେ ଗଲେ ଆସନ୍ ମାନ୍କୁଁ ଉଠି
ଅଁଧାର୍ ଆଏଲା ଆକାଶ୍ ସାରା ତାରା ଆଏଲେ ଫୁଟି । ||୯୭||



# ପାଉଚ୍‌-୩

## ଶରଭଙ୍ଗ୍ ଆର୍ ସୁତୀକ୍ଷ୍ଣ ଋଷିକର୍ ଭେଟ୍

ଲାଲ୍  ଟହ ଟ଼ହ ବେଲ୍ ଉଦ୍‌ଲା ଅଁଧାର୍ ଭାଗେ ଧୂର୍‌କେ
ରାଏତ୍‌ଚରୀ ଯେ ଭଠେଁ ଅଛେ ନାହାକ୍ ମନ୍ ଧୁର୍‌କେ । ॥୧॥

କେନ୍ତେଇଁ ଯିବା ନିଜର୍ ଠାନ୍ ଟାଲି ହ଼ଏ ହର୍‌ବର୍
ଚ଼ରେ ସେନ୍ତା ଗୁଡ଼ା ଛାଡ଼ି ବାହାରନ୍ ହଇଁ କର୍‌ବର୍ । ॥୨॥

ତରା ଯେତ୍‌କି ମେଟନ୍ ଖରା ଆସେ ସେତେ ବହଲେଁ
ଘଡେ ଆଗର୍ ନୀରବ୍ ପୁର୍ଥୀ ପୂରିଁଗଲା ଟହଲେଁ । ॥୩॥

ହୁମର୍ ମନ୍ତର୍ ଗୁମୁରୁ ଥିଲା ଏଦେ ଏ' ଦେ ସରିଛେ
ରାମ୍ ଭଜନର୍ ସୋର୍ ଶବ୍‌ଦେଁ ଆଶ୍ରମ୍‌ଟା ଭରିଛେ । ॥୪॥

ଲେଖା ପୁଥି ପେସ୍‌ରେଇ ଋଷି ଛାତ୍‌ଲାନୁ କହୁଛନ୍
ଚୁନ୍ ଚାନ୍ ସବୁ ଶୁନ୍‌ଲା ଲୁକେ ଟବଧ୍ ହଇଁ ରହୁଛନ୍ । ॥୫॥

ରାମ୍ ଚାଲିଛନ୍ ଆଗ୍‌କେ ଆଗ୍‌କେ ଫଲ୍‌ଗୁ ରହେଲା ଦୂରିଆ
ଅରେନ୍ ପାଏ ଜୀବନ୍, ପବନ୍, ବୁହେ ହୁର୍‌ହୁରିଆ । ॥୬॥

ଆତ୍ମା ପରମାତ୍ମା ସଙ୍ଗେଁ ବିବେକ୍ ଗଲା ବାଗିର୍
ରାମ୍ ଲକ୍ଷ୍ମଣ୍ ସୀତା ଚାଲନ୍ ପାଶେ ଲାଗିର୍ ଲାଗିର୍ । ॥୭॥

ରାମ କହୁଛନ୍ ଲକ୍ଷ୍ମଣ୍ ବୋ, ସଂସାର୍ ଆଏ ଝାର୍
ସହଜେଁ ମୁନୁଷ୍ ଲହକିଁ ନାଇଁ ପାରି ମାନ୍‌ଏ ହାର୍ । ॥୮॥

ମୁନୁଷ୍ ଭିତରେଁ ଦଏତ୍ ଦାନବ୍ ଆଉର୍ ପିତା ଜନ୍ତ
କେତେ ଅଛନ୍ ସହଜେଁ ଗନି ନାଇଁ ମିଲେ ଅନ୍ତ । ॥୯॥

ଯେ ଜାନ୍‌ସି ବୁଲି ଚାଲି ମନ୍ ଯାଏ ତାର୍  ବହଲି
ନାଇଁ ପାର୍‌ଲା ଲୁକର୍ ମନ ଡ଼ରେଁ ଯାଏ ଚହଲି । ॥୧୦॥

ଆନନ୍ଦ୍ ଥିଲେଁ ମନେ ସୁଆଦ୍ ଫଲ୍ ପର୍‌ଶେ ବନ୍
ହାଏ ହାଏ ଥିଲେଁ କଁଟା ଗଡ଼ି କରେ ଚନ୍ ଚନ୍ । ॥୧୧॥

ମନ୍‌ହଏ ଯାର୍ ଧୁକୁର୍ ପୁଚୁର୍ ମାଡ଼େ ବନାଇହ
ବାଏ ଖୁଜେନ୍‌ଥିଁ ସର୍‌ପଟେଁଇଁ ଖୁଜେଇ ହେସି ଜହ । ॥୧୨॥

ଫିର୍‌ବାର୍ ଠାନ୍ ପାଶ୍‌ରି, ନାଇଁ ଲାଗି ପାରେ କୁଲେଁ
ଝାର୍‌କେ ଝାର୍ ବୁଲିଁ ବୁଲିଁ ଗୁମି ଯାଏସି ଭୁଲେଁ । ॥୧୩॥

ଯେ'ନୁ ଆଇଲୁ ସେନ୍‌କେ ଯିବୁ ଇ କଥା ଆଏ ମୂଲ୍
ସଂସାର୍ ଝାରେ କିହର୍ଁ କେଭେଁ ନାଇଁ କର୍‌ବୁ ଭୁଲ୍ । ॥୧୪॥

ସଭେ ଆସୁଁ ଉଜାଲା ଭରା ପରମ୍ ଧାମୁ ବାହାରି
ସେନ୍‌କେ ନାଇଁ ଫିର୍‌ବାର୍ ତକ୍ ଥାବ୍ ନାଇଁ କାହାରି । ॥୧୫॥

ଭୁଲ୍ କରି ଯେ ଭଟ୍‌କି ଯାଏ ପାଶ୍‌ରି ଫିର୍‌ଲା ବାଟ୍
ଜାନ୍‌ଲା ଲୋକ୍ ବତେଇ ନେଲେଁ ଫିରେ ଛାଟେଁ ଛାଟ୍ । ॥୧୬॥

ଦେଖ୍‌ଲୁ ତ ବିରାଧ୍‌କେ ସେ କେନ୍ତା ଥିଲା ଭଟ୍‌କି
ବାଟ୍ ନାଇଁ ପାଇଁ ଇଆଡ଼୍ ସେଆଡ଼୍ ହେଲା ଛଟ୍‌କି । ॥୧୭॥

ସୀତା କହେଲେ ସେତାକେ ଯେନ୍ ବାଟ୍ ବତାଇ ତୁମେ
କେ ଜାଏଁ ରୂପ୍ ଦେବେ ଭେଟିଥିବା ତୁମେ ତୁମେ । ॥୧୮॥

କଥା ବାର୍ତ୍ତା ହଇଁ ହଇଁ ପୁହୁଁଚିଲେ ଗୁଟେ ଠାନ୍
ଖୁସି ଅଛନ୍ ରଷି ଜନ୍‌ଏ ଶର୍‌ଭଙ୍ଗ୍ ଆଏ ନାମ୍ । ॥୧୯॥

ଦେଖ୍‌ଲେ କି ନି ସେ ମୁନି ଦଉଡି ଆଏଲେ ପାଶ୍‌କେ
ଜାବ୍‌ଡି ଧରିଁ କେତେ ଜନମର୍ ଜଉମୁଦ୍ ଦିଆ ଆଶ୍‌କେ । ॥୨୦॥

ଯୁହାରିଲେ ରାମଚନ୍ଦ୍ର କୁଁ ଜୁଆରିଲା ସୁଖ୍ ସାଗର
ରାମ୍ ସାଙ୍ଗେଁ ସବୁ ଶୋଭା ଛିଡ଼ି ପଡ଼ଲା ସରଗର୍ । ।।୨୧।।

ରାମ୍ ପାହା ଧରି ମୁନି ପର୍‌ଲେ ଲାଗ୍‌ଛାଟ୍
କହେଲେ କେଭ୍ବୁଁ ଅନ୍ ସରିଛେଁ ତୁମର୍ ଆଏବାର୍ ବାଟ୍ । ।।୨୨।।

ଜନମ୍ ଜନମ୍ ତପ୍ କରି ଅର୍ଜିଛେଁ ଯେନ୍ ଫଲ୍
ସଁପି ଦଉଛେଁ ନିଅ ଆଉର୍ କିଛି ନାଇଁ ସଂବଲ୍ । ।।୨୩।।

କେତେ ତପ୍ ଖଟିଁ ଦିହ୍‌କେ ଦେଇ କେତେ ଦୁଖ୍
ଭାବି କରି ଯେଭେଁ ହେଲେଁ ଦିହ୍‌କେ ହେବା ସୁଖ୍ । ।।୨୪।।

ଦିହ୍ ପାଗ୍‌ଲିଁ ଦୁଖେଁ ଦୁଖେଁ ଦିହର୍ ସୁଖେ ଆଶେଁ
ମନ୍ ଚିତ୍ ବିଶନ୍ ନାଇଁ ଦିହ୍ ଥିଲେଁ ପାଶେଁ । ।।୨୫।।

ଉଷଦ୍ ଆନନ୍ଦ୍ ନୁହେମନ୍ ଚିତ୍‌ଘର୍ ତ ଛିନା
ତପ୍-ଧନ୍ ଗନି ଜୀବନ୍ ସାରା ସୁଖର୍ ଆଶା ଘିନା । ।।୨୬।।

ଦିହ୍‌ଟା ଅଛେ ବଲିଁ ସିନା ଅଛେ ମନ୍ ପ୍ରାନ୍
ତାକର୍ ଘିଚାଟନା ଦେଖି ଅନାଏଦ୍ ଆତମ୍ ଜ୍ଞାନ୍ । ।।୨୭।।

ତପ୍ ସାଧିଁ ଯେନ୍ ଫଲ୍ ପାଇଛେଁ କାହିଁକେ ଦେବା କାମ୍
ଆତ୍‌ମା-ପୁରୁଷ୍ ଲାଗି କେଭେଁ ନାଇଁନ ତ ଆରାମ୍ । ।।୨୮।।

ସବୁ ସାଧନାର୍ ଫଲ୍ ଥାଏ ତୁମର୍ ନାମେ ରାମ୍
ଆନନ୍ଦ୍ ଆବ୍‌ରି ଆତ୍‌ମା ଆଏ ଭଲ୍ ପାଏବାର୍ ଧାମ୍ । ।।୨୯।।

ଦିହ୍-ଭୂଇଁନେ କାମ୍‌ନା -ଗଛ୍ ଥର୍‌କେ ଥର୍ ଜଅଁଲୁଛେ
ଫଲି ସାର୍‌ଲେଁ ଭଲି କେ ଭଲି ସେ ତୁର୍‌ତି ପାଆଁଲୁଛେ । ।।୩୦।।

ରାମ୍-ଆଗେଁ ଦିହର୍ ଡିଆଗ୍ ଦର୍କାର୍ ଆଏ ଭାଲି
ରାମ୍‌କୁଁ ଦେଖି ଦିହ୍‌କେ ଦେଲେ ଯୋଗ୍‌କୁଏ ନେ ଜାଳି । ।।୩୧।।

ରାମ୍ ସାଙ୍ଗେ ସୀତା ଲକ୍ଷ୍ମଣ୍ ଭକା ଛାଡ଼ି ଦେଖୁଛନ୍
ତ୍ୟାଗ୍ ଧରମର୍ ନୂଆଁ ରୂପ୍ ମନେ ମନେ ଲେଖୁଛନ୍ । ॥୩୨॥

କିଛି କା'ଣା ଭାବି ହଉଥିତେ କଥା ଭାଷା
ଆସ୍ ପାଶର୍ ଋଷି ଆସନ୍ ନେଇ ଅନେକ୍ ଆଶା॥ ॥୩୩॥

ପ୍ରହୁଁଚି ଆଏଲେ ରାମ୍ ଦେଖି ପୂରାବେ ନଜର୍ ସଧି
ଶୁନି ସାରିଥିଲେ, ରାମ୍‌ର ବିରାଧ୍ ଅସୁର୍ ବଧ । ॥୩୪॥

ଆକୁଲ୍ ଭାବେଁ ସଭେ ଡ଼ାକନ୍ ନିଜର୍ ନିଜର୍ ଆଶ୍ରମ୍
ମନ୍ ମାନ୍‌କେଁ ଆନନ୍ଦ ଆସି ଖେଦି ନିଏ ବି ଭ୍ରମ୍ । ॥୩୫॥

ଇ ଝାନ୍ତୁଁ ସେ ଝାନ୍‌କେ ବୁଲନ୍ ରାମ୍ ଲକ୍ଷ୍ମଣ୍ ସୀତା
ସମ୍‌କେଁ ସମାନ୍ ସମ୍ମାନ ପଖ୍ ପାତର୍ କାହିଁ ଥିତା ? । ॥୩୬॥

ମୁନି ଋଷିକର୍ ଠାନୁ ନିଅନ୍ ସୁଗୁଣ୍ ସୁକୃତ୍ ମାନ୍
କୁହୁଦ୍ କୁହୁଦ୍ ହ'ନ୍ ଦେଇ ହୁହୁଦ୍ ଭରି ମାନ୍ । ॥୩୭॥

କାପ୍‌କାପୁ କି ମହୁମାଛି ଫୁଲ୍‌ମାନ୍‌କେଁ ବସି
ନିଅନ୍ ଯେନ୍ତା ମହୁ ଯାଆନ୍ ତାର୍ ରସେଁ ରସି । ॥୩୮॥

ସେନ୍ତା ଋଷି ମୁନି ମାନ୍‌କର୍ ଗୁନ୍ କରମ୍ ଛିନ୍
ନିଜର୍ ମାଏନ୍ ବେଭାର୍ ମୁନେଁ ତାହାକୁଁ ନିଅନ୍ ଘିନି । ॥୩୯॥

କାପ୍‌କାପୁ କାଏଁ ରହି ଯାଏସି ଫୁଲେଁ ଅଠିପର୍
ଇମାନେ ବି ଛାଡ଼ନ୍ ରହି ପହରେ ଦୁଇ ପହର୍ । ॥୪୦॥

ବୁଲି କିନ୍ଦରି ଆସୁନ୍ ଆସୁନ୍ ବରଷ୍ କେତେ ହେଲା
ଭେଟ୍‌ଲେ ସୁତୀକ୍ଷଣ୍ ଋଷି ଅଗସ୍ତିକର୍ ଚେଲା । ॥୪୧॥

ତାକର୍ ଠାନୁ ଶୁନି ମୁନି ଆଶ୍ରମ୍ ନାଏଁନ ଦୂର୍
ଅଗସ୍ତି ମୁନି ଦର୍ଶନ୍‌କେ ଚାଲନ୍ ଟୁର୍ ଟୁର୍ । ॥୪୨॥

ବାଟେଁ ଭେଟ୍‌ଲେ ଅଗ୍ନିଜିଭ୍ ଅଗସ୍ତିକର୍ ଭାଏ
ତାକର୍ ଦିହେଁ ପାଏନ୍ ପର୍‌ଲେଁ ବାଘ୍ ହଇଁ ଯାଏ । ।।୪୩।।

ଭାଏକେ ଜିତି ଦଦାର୍ ମୁହଁର୍ ସାଧନା ଆଏ ବେଶୀ
ତାକର୍ ମୁହଁକେ ମହା ସମୁଦର୍ ହାର୍ ମାନିନେସି । ।।୪୪।।

ବାଟ୍ ବତାଇ ଆନ୍‌ଲେ ଅଗ୍ନିଜିଭ୍ ସୁତୀକ୍ଷଣ୍
ରାମ୍ ଆଏବାର୍ ଜାନି ମୁନି ଉଠ୍‌ଲେ ତତ୍‌କ୍ଷଣ୍ । ।।୪୫।।

ଆଦର୍ କରି ବରିନେଲେ ସେ ଆଶ୍ରମ୍ ଭିତର୍
ରାମ୍ ଲକ୍ଷ୍ମଣ ସୀତା ପ୍ରଣାମ୍ କରନ୍ ଥର୍‌କେ ଥର୍ । ।।୪୬।।

ରାମ୍‌କୁ ଦେଖି ରଷି ଭାସିଗଲେ ଆନନ୍ଦ ରସେଁ
ନଜର୍ ନାଇଁ ଖସ୍‌ରେ ରହନ୍ ରାମ୍-ରୂପର୍ ବଶେଁ । ।।୪୭।।

ଚେଲା ମାନ୍‌କର୍ ମନେ ହେଲା ଉଷଦ୍-ବର୍ଷାର୍ ବଏଲ୍
ରାମ୍‌କୁ ଛାଡି ଉନିଆ ଭାବ୍ ପଶ୍‌ବାକେ କାଏଦ୍ । ।।୪୮।।

ରଷି କହନ୍, ''ଅଥା ସୀତା ସତୀ ରାଏଜର୍ ରାନୀ
ହର୍‌ଜଙ୍ଗା ଲେଖେଁ ହ'ନ୍ ଲକ୍ଷ୍ମଣ୍ ନାଇଁ ପାର୍ବାର୍ ଜାନି । ।।୪୯।।

ଯେତ୍‌କି ଦିନ୍ ଭଲ୍ ଲାଗୁଛେ ଇ ଆଶ୍ରମେ ରହ
ଏଛନିର୍ ଲାଗି ବୁଲା କିନ୍ଦରା ଦର୍‌କାର୍ ନୁହେ ଜହ । ।।୫୦।।

କୁନୁଆଁ ବାଗିର୍ ନାଇଁ ଲାଗ୍‌ବାର୍ ନିଜର୍ ଲେଖେଁ ଲାଗୁଛ
କାଠ୍-କଠିନ୍ ତପ୍‌ଲା ଦିହ୍‌କେ ଆନନ୍ଦ-ରସେଁ ପାଗୁଛ । ।।୫୧।।

ଯେତ୍‌କି ତପ୍ ଖଟିଥିଲି ତାହାରୁଁ ଜିତି ଫଲ୍
ପାଇଁଗଲି ଅନେକ ଜନମ୍‌ର୍ ହେବା ଏ ସଂବଲ୍ । ।।୫୨।।

ରାମ୍ କହେଲେ ତମର୍ ସ୍ନେହ ଶର୍ଧା ଆମ୍‌କୁ ଯେତେ
କେନ୍ ଅମୃତ୍ ଏନ୍ତା ଲଗ୍‌ବା ବର୍ଷିବା ଭାଏଲ୍ କେତେ ? ।।୫୩।।

ଶକ୍ତି ନାହିଁ ତୁମ୍ର କଥା କର୍‌ବାକେ ଅମାନ୍‌ତି
ଦିନ୍‌ଏ ବେଲେ ରଖ୍ ଛାଡ଼ିନେବେ କରୁଁ ବିନ୍‌ତି । ॥୫୪॥

କହୁନ୍ କହୁନ୍ ଘରୁ ଆଏବାର୍ ବରଷ୍ ଦଣ୍ଡେ ହେଲା
ନିମିଷ୍‌ଟାକେଁ ପଲେଇଁ ଯିବା ବଛର୍ ଚରେ ରହେଲା । ॥୫୫॥

ବାଆରି କରି ବଡେଇ ନିଅ ଏନ୍ତା ଗୁଟେ ଠାନ୍
ବଛର୍ ଚାଏର୍‌ଟା କଟି ଯିବା ସୁଦ୍‌ଭାବେଁ ତୁନ୍‌ତାନ୍ । ॥୫୬॥

ଖୁସିହଇଁ ଋଷି ଭାବୁଥିଲେ ମନେ ମନେ
ଆନନ୍ଦ-ମୂର୍‌ତି ଇ ରାମ୍‌କେ ଥାପି ହୁରୁଦ୍ -କନେ । ॥୫୭॥

ଜୀବନ୍-ମୁକ୍ତିର୍ ସୁଆଦ୍ ଚାଖୁଥିସି ଋରୁମିଶା
ମୋର୍ କହେ କାଏଁ ରହେବା ? ଯାଉ ଥାଉ ମୁକ୍ତି ନିଶା । ॥୫୮॥

ଆଶ୍ରମ୍ କେ ଛାଡ଼୍‌ବା କାଏଁନ ହୁରୁଦ୍ ଛାଡ଼୍‌ବା କାହିଁ ?
ସୀତା ସାଙ୍ଗେ ଥିବା ଅନୁଖନୁ ଥିମି ଧାଇ । ॥୫୯॥

ଫୁଟି କରି କହେଲେ ଆଁଖି ଲୁଟି ରାମ୍‌ର୍ ରୂପ୍
ଆଏଁଖ୍ ଛାଡ଼ି ବାକି ଇନ୍ଦ୍ରିୟ୍ ପର୍ଛା ଥିଲେ ଚୁପ୍ । ॥୬୦॥

ହେ ଜାନ୍‌କୀ ପତି ! ତୁମର୍ ଗତି ଦୁର୍ନିବାର୍
ବନ୍‌ଏ ତୁମର୍ ମନେ ମନ୍ କର୍‌ଲେଁ ଏକାକାର୍ । ॥୬୧॥

ଆଗମ୍ ନିଗମ୍ ଲାଗି ଅଗମ୍ ଥାଏ ଆନନ୍ଦ-ଧାମ୍
ଭାବନ୍ ଅଧମ୍ କର୍‌ମେ କର୍‌ମଙ୍ଗା ଫଲେ ରାମ୍ । ॥୬୨॥

ରାମ୍-ଲକ୍ଷ୍ମଣ୍-ସୀତା ଭିତ୍‌ରେଁ ନୁରି ବସନ୍ ନିଜ୍‌କେ
କେନୁ ଆନି କେନେ ଥୁଅନ୍ ଠୁଲେଇ ଆନ୍‌ଲା ଚିଜ୍‌କେ । ॥୬୩॥

'ଭକ୍ତି' ଯଦ୍‌ରି 'ସେବା' ହେବା ନାଏଁନ ସେବାର୍ ସୋର୍
ସେବା ଦେଇ ହେବା ନାଇଁ ଥିଲେଁ ସୋର୍ 'ମୋର୍' । ॥୬୪॥

କେତେ ବେଲେଁ ଦିନ୍ ଭାଗ୍‌ଲା ରାଏତ୍ ବି ଗଲା ବିତିଁ
କହୁନ୍ କହୁନ୍ ସମିୟା ଘାଉଁ ଘାଏ ଯାଏ ଜିତିଁ । ॥୬୫॥

ତିନ୍‌ହି ବନ୍‌ବାସୀ ମୁନି ପାଦେଁ କଲେ ପ୍ରଣାମ୍
ସୋର୍ କରି କହେଲେ ରଷି, କହେଁ ରହେବାର୍ ଠାନ୍ । ॥୬୬॥

ଇନୁ ଗଲେଁ ଯୋଇନେ ମେତାଲ୍ ବୁହେ ଗୋଦାବରୀ
ସମୁଦର୍ କେ,ମହାଆଦ୍‌ରେଁ ନିର୍ମଲ୍ ପାଏନ୍ ଧରି । ॥୬୭॥

ତାର୍ ଖଁଡ଼ିଁ ବଢେ ସୁନ୍ଦର୍ ପାଁଚଟା ବଟର୍ ବନ୍
ପଁଚ୍‌ବଟୀ ବଲିଁ କହନ୍ ଅଏନ୍ ପାଏନ୍ ପବନ । ॥୬୮॥

ସମାନ୍ ନିମାନ୍ ଭୂଇଁ ଗଛେଁ ଲଦି ହଇଛେ ଫଲ୍
ଭୁଗ୍ ଭୁଗାନୁ ଫୁଟନ୍ ଫୁଲ୍ କହର୍ ପର୍‌ବଲ୍ । ॥୬୯॥

ଗୁଡ଼ା ବାଁଧନ୍ ଗଛର୍ ଡାଲେଁ ହରେକ୍ ରକମ୍ ଚରେ
ସଂଜ୍ ସକାଲ୍ ତାକର୍ ଗୀତେଁ ଝାର୍ ପଡ଼ରା ଭରେ । ॥୭୦॥

ଡେବ୍‌ରି ଭୁଇନି ସବୁ ଛାଡ଼୍‌ବ ସିଧା ନାକର୍ ସଲ୍‌ଖେଁ
ପଚ୍‌ରା ଉଚ୍‌ରା ନାଇଁ ଲାଗେ ଭାଗ୍‌ବ ସଡ୍‌ଖେଁ ସଡ୍‌ଖେଁ ॥୭୧॥

ରାମ୍ ଲକ୍ଷ୍ମଣ୍ ସୀତା ତିନ୍‌ହେ ଲୁହେଇଁ ଟିକେ ମାଥ୍
ପାହା ବଢାଲେ ମହା ଜଷଦ୍ ଫେର୍ ଯୁଡ଼ିଁ ହାଦ୍ । ॥୭୨॥

ସୀତା ଚାଲନ୍ ପଛେ ପଛେଁ ରାମ୍ ହଇଛନ୍ ଆଗ୍
ଶାନ୍ତି ପଛ୍ ଛାଡ଼୍‌ବା କାହି ଆଗେଁ ପାଏଲେଁ ତ୍ୟାଗ୍ । ॥୭୩॥

ପଛା ପଛ୍ ଡୁରାଲା ମେତାଲ୍ ଆନନ୍ଦ୍ ଯେନ୍ତା ଭାଗେ
ସର୍ବାର୍ ପଛେଁ ଲକ୍ଷ୍ମଣ୍ ଦେଖିଁ ଠିକ୍ ସେନ୍ତା ଲାଗେ ।। ॥୭୪॥

ବାଟ୍ ଛାଲୁଛନ୍ ଧୀରେ ଧୀରେ କଥାର୍ ସୁରେ ସୁରେଁ
ଦଦା ବହୂର୍ ଗେଲ୍ ଲାଡ୍ ରଖେ ଲକ୍ଷ୍ମଣ୍ ଦୂରେଁ । ॥୭୫॥

ବାଟ୍ ତରେଁ ତରେଁ ଫୁଟିଥିଲେଁ ଅଏନ୍ ଫୁଲ୍
ରାମ୍ ମଖେଇନେଲେଁ ସୀତା ହଁସନ୍ ମୁଲ୍‌ମୁଲ୍ । ॥୭୬॥

ସୀତା ଅଥା ହଇଥିବେକ ଭାବିଁ କେ'ନ ରାମ୍
ଥାକ୍ ମାର୍‌ବେ ବସନ୍ ଦେଖି ଶୀତଲ୍ ଚାତର୍ ଠାନ୍ । ॥୭୭॥

ସୀତା ଉଲଟିଆ ସୁଆଁଲି ଆନନ୍ ରାମ୍-ପଦମ୍ -ପାହା
କହିଁ ଅଦ୍‌ଡିଆଁ ପଥ୍‌ରିଆ ବାଟେଁ ଚିଆଉ ଥିବା ଆହା' । ॥୭୮॥

ରାମ୍ କହେସନ୍ ସୁଲ୍ ସୁଲାସି ତୁମର୍ ହାତର୍ ସୁଆଁଲା
ନୁହିଲା ବେଲ୍‌କେ ଶୁଲଲା ମନ୍‌କେ ତୁମର୍ ନିକେ ଧୁଆଁଲା । ॥୭୯॥

ରକ୍ଷା ହେଲା ଆଉର୍ କା'ଣା କହିଥିତେ ସେ କ୍ଷଣ୍
ପାଚ୍‌ଲା ଫଲର୍ ବୁଚ୍‌କା ଧରିଁ ପୁହୁଁଚିଲେ ଲକ୍ଷ୍ମଣ୍ । ॥୮୦॥

ଗୋଦାବରୀ ଧୁର୍ ନାଏଁନ ଶୁଭେ ଶବଦ୍ ତାର୍
ଅଥକ୍ ଗୀତ ଗାଏ ପଥର୍ ସାଙ୍ଗେଁ ପାନିର୍ ଧାର୍ । ॥୮୧॥

ସଂସାର୍ ଝଂଝାଲୁଁ ମନ୍ ଉଡି ଘାଏ ଘାଏ
କିଧିରି ବୁଲି ଫିରି ସେଥିଁ ଡୁବ୍‌କିସି ଝାଏ ଝାଏ । ॥୮୨॥

ସେନ୍ତା; ପାଏନ୍ କେ ଛାଡିକରି  ପାନିର୍ ଚରେ ମାନେ
ଘଡ଼େ ଛନ୍‌ଏ ଉଡି ଝଁପେଇ ହେସନ୍ ପାନିର୍ ଠାନେ । ॥୮୩॥

ସେ ଉଡ୍‌ଲା ଚରେ ମାନେ ମୁଡ୍ ଉପ୍‌ରେଁ ଦିଶୁଛନ୍
ନଏଦ୍ ଅଛେ ପାଶେଁ ବସିଁ ତାକର୍ ଭାଷିଁ ଭାଷୁଛନ୍ । ॥୮୪॥

ଦେବ୍‌ତା ପୂଜାର୍ ବେଲା ଟଳିଁ ଗଲେଁ ଯେନ୍ତା ଭକତ୍
ହେସିହେନ୍ତା ସଉମିତ୍ରୀ ହେଲେ ଲତପତ୍ । ॥୮୫॥

ପାଶେଁ ପାଏନ୍ ଦିଶେ ରାମ୍-ସୀତାର୍ ପରସାଦ୍
ସର୍‌ଲେଁ ସରିଁ ଯିବା ତାର୍ ମନର୍ ଅବସାଦ୍ । ॥୮୬॥

ହାତ୍ ଯୁଡି କହେଲେ ଦାଦା ତାକେ ଗୋଦାବରୀ
ଆନନ୍ଦ୍ ପାଏବା ମନେ କୁଡେଁ ରାମ୍-ସୀତା ଧରି । ॥୮୭॥

ପାହା ବଢାଲେଁ ପୁହୁଁଚି ଯିମା ନାଇଁ ନ ଆଉର୍ ଧୂର୍
ପର୍ସାଦ୍ ବେଲା ହେଲା ନ ବି ଘାଉଁ ଘାଏ ଉଛୁର୍ । ॥୮୮॥

ରାମ୍ ସୀତା ଉଠି ଚାଲ୍‌ଲେ ହାତ୍ ଧରା ଧରି ହେଇ
ଲକ୍ଷ୍ମଣ୍ ଏଛ୍‌ନି ଆଗୋ ଚାଲ୍‌ଲେ ପାହା ଟିକେ ବହଁକେଇ । ॥୮୯॥

ଗୋଦାବରୀ ନଦୀର୍ ଖଁଡି ବର୍‌ଗଛ୍ ବଡେ ବୃଷାଲ୍
ବସି ଘଡେ ଥାକ୍ ମାଏଲେ, ମାଏଲେ ଦିହୁଁ ଝାଲ୍ । ॥୯୦॥

ଚାତର୍ ଠାନ୍‌ଟେ ଦେଖିଁ କହେଲେ ବାବୁ ସଉମିତ୍‌ରୀ
ଇନେ କଲେଁ କୁରିଆ ହେବା ସୁବିଧା ସବୁ ମିତ୍‌ରି । ॥୯୧॥

ନୁକୋ ମଟା ମାଏଟ୍ ହେବା ସହଜେଁ ଫୁଲ୍‌ଗଛ୍
ପାଏନ୍ ବି ଆଏ ପାଶ୍ ନାଏଁନ ଅନୁରା କଚ୍ କଚ୍ । ॥୯୨॥

ଆପ୍‌ନେ ଦୁହେ ଗାଧୁଆ ସାରିଁ କଲେ ଫଲାହାର୍
କୁରିଆ ତିଆରି ଲାଗିଁ ଲକ୍ଷ୍ମଣ୍ ତୁରିତ୍ ହେଲେ ବାହାର୍ । ॥୯୩॥

ବାଲ୍ମିକୀ କହନ୍ ସଂଧ୍ୟା ଶଉଚ୍ ଲାଗି ସମିୟା ହେଲା
ବେଲ୍‌ହଉ ବଢେ ପୁରୁଁ ଆଏବ ନାଇଁ କର୍‌ବ ହେଲା । ॥୯୪॥



# ପାଉଚ୍-୪

# ସୂପନଖୀର୍ ନାକ୍-କାନ୍-କଟା

ପଛିମ୍ ଦିଗ୍‌କେ କଛିମ୍ ଲେଖେଁ ବେଲ୍ ଯାଏ ରଙ୍ଗି
ହରାସ୍ ନୁହେ ଖରାର୍ ରାସ୍ ଚାଲେ ଅନ୍‌ଭଙ୍ଗି । ।।୧।।

ଆଶ୍ରମ୍ ହଁସେ ମୁଲ୍ ମୁଲ୍ ଛଏରା ଉର୍‌ନହା ତଲେଁ
ଖରା ମାଖି ଡ଼ାଲ୍ ପଦ୍‌ରା ଦେଖନ୍ କଲେଁ କଲେଁ । ।।୨।।

ଲବକୁଶର୍ ବୀନା ବାଜେ ଧରି ରାମେନ୍-ଲହର୍
ଫୁଲ୍‌ଗଛ୍ ସବ୍ କହଡ଼ ଭିଦ୍‌ରେଁ ପୂରେଇ ବସନ୍ କହର୍ । ।।୩।।

ବାଲ୍‌ମିକି ମୁନି ଆଏଁଖିକେ ମୁଜି କରନ୍ ରାମ୍ -ଧାନ୍
ଆନ୍ ନୁହେ ଶୁନି କରି ବି ' ବାଲ୍‌ଲା -ବୀନାର୍ ତାନ୍ । ।।୪।।

ଆଏଁଖି ଫିଟ୍‌ଲା ମୁହଁ ଫୁଟ୍‌ଲା ବାଲ୍ମିକୀ ମୁନିକର୍
ରାମେନ୍ -କଥାନେ ନୁହନ୍ ଅଥା କହନ୍ ଅଠିପର୍ । ।।୫।।

ହେ ରାମ୍ ! ହେ ଆନନ୍ଦ ଧାମ୍ ! ସୁଖ୍ ସରାଗର୍ ଖାଏନ୍
କହି ଦୁହି ହାତ୍ ଯୁରି ପୁଥିକେ ଦେଲେ ମାଏନ୍ । ।।୬।।

କହେଲେ ଗୋଦାବରୀ ନଦୀର୍ ଖଁଡ଼ି ପୁହଁଚି ରାମ୍
ସୀତା ସାଙ୍ଗେଁ ଶୀତଲ୍ ଠାନେ କର୍‌ଲେ ବିଶ୍ରାମ୍ । ।।୭।।

ନିର୍‌ଦେଶ୍ ପାଇ ବୀର୍ ଲକ୍ଷ୍ମଣ୍ ବନେଇ ବସ୍‌ଲେ କୁରିଆ
ଇ ଆଡ୍ ସେଆଡ୍ ନୁହିଁ କରନ୍ ହର୍‌ଦମ୍ ଏକ୍‌ସୁରିଆ । ।।୮।।

ଲକ୍ଷ୍ମଣ୍ ହାତେଁ ଡ଼ଉଲ୍ ଦିଶେ ଡାଲ୍ ପତରର୍ କୁରିଆ
ବିନା ଡ଼ରେଁ ସୁନା ତିଆରି ଘର୍‌କେ କର୍‌ବା ହୁରିଆ । ।।୯।।

ଏକ୍ ବଖ୍ରିଆ ଘରକେ ଆବ୍ରି ନେକ୍ ଦିଶେ ପର୍‌ଛି
କାଏଁଶ୍ କୁଶ୍‌ର୍ ଛାଆନି ଛିନ୍‌ବା ପାଏନ୍ ଗର୍ଲେ ବର୍‌ଷି । ॥୧୦॥

ଛୋଟ୍ ଗୁଟେ କୁର୍‌ମା ଟିକେ ଦୂରିଆ ଆଗେଁ ଆଗେଁ
ଶୁଇ ନୁହେ ଉନିଦ୍ରା ଜନ୍ଏ ଥାଇଁ ବି ଲାଗେଁ ଲାଗେଁ । ॥୧୧॥

ଲକ୍ଷ୍ମଣ୍ ନିଜେ ବସ୍‌ବେ ବର୍ଲି ଖୁଟୁ ମୁଟ୍‌ଲୁ ମେତାଲ୍
ଧନୁ ଶର୍ ଧରି ପହରା ଦେଲା ବେର୍ଲେ ହେଲେଁ ଉସ୍ତାଦ୍ । ॥୧୨॥

ଡାଲ୍‌ ତୁପିଁ କାହିଁ ଗଛ୍ ହଇଛେ କହତ ଆଉଛେ ଧରି
ମଂଜିର୍ ଗଛ୍ ତ ସାଜି ହଇ ଫୁର୍ଲେ ଯାଇଛେ ଭରି । ॥୧୩॥

ବୃଷାଲ୍ ହଇଁ ତୁଲ୍‌ସୀ ବୁଟା ଧରି ଆଏଲା ନ ଜଟ୍
ପାଏନ୍ ଦେଲା ବେର୍ଲେ ସୀତା ଦେଖୁ ହଁନ୍ ଉଷତ୍ । ॥୧୪॥

କାପ୍‌କାପୁ ଖେଲେ ମହୁମାଛି ସାଙ୍ଗେଁ ଖେଲେଁ ଭଅଁର୍
ଜୀବନ୍ ପାଏଲା ବାଗିର୍ ପବନ୍ ପିଏ ଫୁଲର୍ କହର୍ । ॥୧୫॥

ଗୁନ୍‌ଚା ଖେଲେ ଡାହି ମାକ୍‌ରୀ ବାଦ୍‌ଲି ଦୁଲେ ଦୁଲି
କେତେ ବହଲେଁ କହଲେ ଚଁପା ଗଛ୍‌କେ ଗଛ୍ ବୁଲି । ॥୧୬॥

ବର୍‌ପିପଲ୍ ଗଛେଁ ରାମି ମଏନା ପାଚ୍‌ଲା ଫଲ୍
ଖାଇ ହଉଛନ୍ କିଚିର୍ ମିଚିର୍ ଦିନ୍ ଦୁଇ ପହର୍ । ॥୧୭॥

ଫୁଲ ଚୁହୀ ଆସି ଫୁଲେଁ ବସେ ଠିଣିନୀ ଟାଏଁଟାଏଁ
ଟିହା ପଚାରେ କୁଁଭାଟିଆ ଯେ ନାଇଁ ଆସେନ କାଏଁ । ॥୧୮॥

ଗୁଁର୍‌ଚୁଁ ତିତେର୍ ଗୁଛାନୁ ଗୁଛା ଖେଲନ୍ ଲୁକ୍‌ଲୁକାନି
କାନ୍‌କେ ଡେରି ଡେଗେ ଖରା କାହାକେ ନାଇଁ ମାନି । ॥୧୯॥

ଗଛ ତଲ୍ ତଲ୍ ମନ୍ଦାକେ ମନ୍ଦା ପାଏନ୍ ଥିଲେଁ କାହିଁ
ନେଉଲା ପିଇଁ ପିଇଁ ଯାଏ ଇ ଆଡ୍ ସେ ଆଡ୍ ଧାଇଁ ॥୨୦॥

ରାମ୍ ସୀତା ବସନ୍ ଝେତେବେଲେଁ କୁରିଆ ଭିତ୍‌ରେଁ
କେନ୍ ସମିୟାକେ ବସି ଥାଆନ୍ ଉଠାର୍ ଚଟାନ୍ ପଥ୍‌ରେଁ । ॥୨୧॥

ସୁର୍‌ତା କରି ସୀତା କହନ୍ ରାଜ୍‌ମହଲର୍ କଥା
ସରିଥିବା କାଏଁ ଆମର୍ ଉପ୍ରୁଁ ମାଆଙ୍କର୍ ମମତା । ॥୨୨॥

ମଥାନେ ନାଇଁ ସେନ୍ଦୂର୍ ହାତେଁ ନାଇଁଥିବା ଚୁରି
ପତି-ହୀନ୍ ସେ ପତିତ୍ ଜୀବନ୍ ମନ୍ ହଉଥିବା ଚୁରି । ॥୨୩॥

ମଝିଆଁ ମାଆଁକୁ ଗର୍‌ଜି ଗାଏଲ୍ ଦଉଥିବେ କାଏଁ ଭରତ୍
ଶୁନାତେ ଯାହାକେ ସେ ନାଏଲ୍ ଦେଲେଁ କେତେ ଆରତ୍ । ॥୨୪॥

ଲକ୍ଷ୍ମଣ୍‌କେ ଭରମୁ ଥିବା ଉର୍‌ମିଳା ଦିନ୍ ରାଏତ୍
ଲକ୍ଷ୍ମଣ୍‌କେ ସାଙ୍ଗେଁ ଆନି ଭୁଲ୍ କଲା କାଏଁ ସାଏତ୍ । ॥୨୫॥

ସାନ ମାଁ'ନେ ଟାନ୍ କରୁଥିବା ମାନ୍ କରି ଉର୍‌ମିଳା
ମନ-କା'ର୍ ହଏ ବନ୍ ପଠାବାକେ ଜନମ୍ କଲା ପିଲା । ॥୨୬॥

ରାମ୍ କହେଲେ ଜନକ୍ ଝେମା ! ଅନେକ୍ ଶକ୍ତି ଥାଇ
ମାଁ ଧର୍‌ତୀର ଝି' ହଇଁ ମୋର୍ ମାଆଁକୁ ଚିହ୍ନଲ ନାଇଁ । ॥୨୭॥

ସମୁଦର୍ ନୁ ଶ' ଶ' ମେଘେଁ ଯେତେ ବି ପାଏନ୍ ଗଲେଁ
ଶୁଖିଁ ଯାଏ କାଏଁ ସମୁଦର୍ ଯେ ଯେତେ ଯାହା କଲେଁ । ॥୨୮॥

ମାଁ ମାନେ ମୋର୍ ଆ'ନ୍ ମମତାର୍ ମହାନ୍ ସମୁଦର୍
ସନ୍ତାନ୍ ଗଲେଁ ଦୂରୁଁ ସରେ ନାଇଁ ତାଙ୍କର୍ ଆଦର୍ । ॥୨୯॥

ମୋର୍ ମାଆମାନେ ଆ'ନ୍ ମମତାର୍ ମୂର୍‌ତି
ଯେତ୍‌କି ମମ୍‌ତା ଝରେ ସେତ୍‌କି ଉପ୍‌ଜି ହଏ ପ୍ରୀତି । ॥୩୦॥

ନାଇଁ ଚିହ୍ନି ମଝିଆ ମାକୁଁ ଭରତ୍ ମେତାଲ୍ ପିଲା
ଗର୍‌ଭେଁ ଧର୍‌ବାର୍ ବାଗିର୍ ଭାଏଗ୍ ତାଙ୍କର୍ ଏକ୍‌ଲା ଥିଲା । ॥୩୧॥

ମୋର୍ ଆତ୍‌କେ ଭରତର୍ ଯେନ୍ ଏକ୍ ଧର୍‌ସିଆ ଭକ୍‌ତି
ବାଏ ହଇଁ ଯାଏ ନାଇଁ ବୁଝ୍‌ଲା ମଝିଆଁ ମାଆର୍ ଶକ୍‌ତି । ॥୩୨॥

ରାଏଜ୍ ପରିବାର୍ ସୀମା ଡେଗି ଜଗତ୍ ଉପ୍‌ରେଁ ନିଘା
ମୋର୍ ନଜ୍‌ରେଁ ମାଁ ରାଏଜର୍ ସମ୍‌କଡୁଁ ସେ ଶିଘା । ॥୩୩॥

ଭରତର୍ ଭକ୍ତି ଜିତିଁ ମତେ ତାକର୍ ସ୍ନେହେ
କେନ୍ ଗାଏଲ୍ ଛିଇବା ହେନ୍ତା ଆତ୍ମା ଧଏଲା ଦେହେ । ॥୩୪॥

ସାନ୍ ମାଁ ସୁମିତ୍ରା ଆ'ନ୍ ତାକର୍ ମିତ୍ର ସଭେ
ଉର୍‌ମିଳା ତ ଜନମ୍ ଜଲା ମାଁର୍ ମମ୍‌ତା ଲଭେ । ॥୩୫॥

ଉର୍‌ମିଲାର୍ ମାନ୍ ଅଭିମାନ୍ ଯଦ୍‌ରି ଥିଲା ଯାହା
ଉଭିଁ ଗଲା ନ ଯେନ୍ ଦିନ ଛିଇଲା ଲକ୍ଷ୍ମଣ୍ ପାହା । ॥୩୬॥

ଦେହେ ନୁହେ ଉର୍‌ମିଲା ଯାହା ଅବ୍‌ଧେଁ ଅଛେ ପରି
ମନ୍ ପ୍ରାଣ୍ ଆତ୍ମା ଆସନ୍ ସଉମିତ୍ରୀ ପଛ୍ ଧରି । ॥୩୭॥

ସାନ୍ ମାଁ ନେ କେ କରୁଥିବା ମାନ୍ କରି ଭାଏଲ୍ ଟାନ୍
ମୋର୍ ନୁ ତୁମେ ଜହ ଜାନ୍‌ବ ଉର୍‌ମିଲା କା'ଣା  ଆନ୍ । ॥୩୮॥

କଥାବାର୍‌ତା କାହିଁ  ସର୍‌ତା ? ଲକ୍ଷ୍ମଣ୍ ଆସିଁ କହେଲେ
ଆନ୍‌ଲାଫଲ୍ ଶୁଖ୍ ବସ୍‌ଲାନ୍ ପର୍ସାଦ୍ ହଉ ପହେଲେ । ॥୩୯॥

କ୍ଷଣ୍ କ୍ଷଣ୍ ହଏ ଲକ୍ଷ୍ମଣ୍‌କେ ମହା ମୂଲ୍ୟବାନ୍
ରାମ୍ ସୀତାକର୍ ସେବା ବିନା ଦୁସ୍‌ରା ନାଇଁ ଧ୍ୟାନ୍ । ॥୪୦॥

ରାମର୍ ଠାନୁ ହରୁ ହର୍‌ଦମ୍ ଆନନ୍ଦ-ରସ୍ ଝରୁଛେ
ପରାଣ୍-ପୁର୍ ପୂରିଁ ପୂରା ପରାସ୍ -ପସ୍‌ରା  ସାରୁଛେ । ॥୪୧॥

ଚିନ୍ତା ବୁତା ଅନୁଖନୁ ସୀତାରାମ୍‌କର୍ ସନ୍ତୋଷ୍
ଭୁଲି ଯାଏଁ ନିଜେ କଲିଁ ବଲି କହେବାର୍ ଦୋଷ୍ । ॥୪୨॥

ଥିତା କାହିଁ ସୀତା ମେତାଲ୍ ନାରୀ ଇ ସଂସାରେଁ ?
କେନ୍ ମା ଏତେ ସେନ୍‌ହେ ଦେବା ତାକର୍ ଅନ୍‌ସାରେଁ ? ॥୪୩॥

ସେ ସେନେହୁଁ ଅଏଦ୍‌କା କାଣା ନୁହବା ଆତ୍ମା-ପୁରୁଷ୍
ଜଗଦ୍ ସାରାର୍ ଶକ୍ତି ଭରା ମୂରତି ହୁଏ ଦୁରୁଷ୍ । ॥୪୪॥

ଭଲେ ନିଜେଁ ରହେଲା ନାଇଁ ଦି ହର ସୁଖର୍ ଭୁଲେଁ
ଅଯୋଧ୍ୟାନେ, ଜନମ୍ ଯାଇଥିତାନ ଫୁର୍କୁଲେ । ॥୪୫॥

ସୀତାରାମ୍‌ର ସାଙ୍ଗେଁ ରହି ମନ୍ ଯାଇଛେ ରମି
ତାହାକୁଁ ଛାଡ଼ି ମନେ ଆର୍ କେ ନାଇଁ ପାରେ ଶମି । ॥୪୬॥

ସୀତା ମିତାଲ୍ ଦିଶନ୍ ସ୍ତ୍ରୀ-ଲିଙ୍ଗର୍ ସବ୍ ପରାନୀ
ପୁରୁଷ୍ ସବୁ ଦୁସ୍‌ରା ନୁହନ୍ ରାମ୍‌ର ଲେଖେଁ ଜାନି । ॥୪୭॥

ସର୍‌ଲାର୍ ପାଇ ସରଗ୍-ମହରଗ୍ ସୀତା-ସରାଗ୍
ଜୀବନ୍ ଗୀତେଁ ଆଲାପ୍ ଧରେ ନୂଆଁ ନୂଆ ରାଗ୍ । ॥୪୮॥

ସୀତା-ରାମ୍ ଚିନ୍ତା ଭିତ୍‌ରେଁ ଥିବାର୍ ତଙ୍କ-ରଦ୍
ବନ୍‌ଏ ଲାଗେ, ବାହାରି ଆଏଲେଁ ବନିହାଁ ବିର୍‌କଦ୍ । ॥୪୯॥

ଗୋଦାବରୀ ଖଁଡ଼ି ଲକ୍ଷ୍ମଣ୍ ଭାବ୍‌ନା-ପୁରୁଗ୍-ଆବ୍‌ରି
ସୋଜ୍ ଭାବ୍‌କେ ଆଏବାକେ ନାଇଁ ପାର୍‌ବାର୍ ଉବ୍‌ରି । ॥୫୦॥

ଥାବ୍ ନାଇଁ ନ ହଠାତ୍ ତାକର୍ ଭାବ୍‌ନା ହେଲା ବନା
ଶୁଦ୍ଧିଲା ଲେଖେଁ ଲାଗ୍‌ଲା ବାକେ କା'ର୍ ପାହାର୍ ପଁହ୍‌ନା । ॥୫୧॥

ସେ ଆଡ଼୍‌କେ ଅଜାନ୍ ତକେଁ ନଜର୍ ହେଲା ଟାନି
ନଜର୍ ସାଙ୍ଗେଁ ନର୍‌ଦିଲା ମନ୍ ମନା ନାଇଁ ମାନି । ॥୫୨॥

ନଏଦ୍ ଆଡୁଁ କୁରିଆ ଦିଗ୍‌କେ ଆସେ ନାରୀ ଜନ୍‌ଏ
ବଏସ୍ ନୁହେ ଜହ ଆର୍ ଚେହେରା ବନିହାଁ ବନ୍‌ଏ । ॥୫୩॥

ମଣି ମୁକ୍ତା ସୁନାର୍ ଅଲଙ୍କାର୍ ହଇଛେ ଛାଇ
ସାଙ୍ଗୋ ନାଇଁ ଥିବାର୍ ଜାଗା ଦିହେଁ କାହିଁ ନାଇଁ । ॥୫୪॥

ଦିହ୍ -ପଥିରେଁ ସୁନ୍ଦର୍ ପନ୍ କିଏ ଆନି କାଟୁଛେ
ବା'ରି ନୁହେ ନାରୀଟାକ ଚାଲୁଛେ କି ନାଚୁଛେ । ॥୫୫॥

ଆଏଁଖି ମିଟ୍‌କା ନାଇଁ ମାରୁନ୍ ଲାଗିଁଗଲା କୁରିଆନେ
ଲକ୍ଷ୍ମଣ୍ କାହିଁ ରହିପାର୍‌ତେ ? କୁରିଆଠାନୁ ଦୂରିଆନେ । ॥୫୬॥

ଗଛ ଉଢାଲେଁ ଅଛନ୍ ବର୍ଲି ନାଇଁ ଜାନ୍‌ବାର୍ ନାରୀ
ସୀତା ରାମ୍‌କୁଁ ଦେଖି ନିଜର୍ କବାର୍ ରଖିଲା ଜାରି ॥୫୭॥

ରାମ୍-ରୂପ୍‌କେ ପା'ଏଲା ମାତ୍‌ରେଁ ପିଇ ବସ୍‌ଲା ଆଁଖି
ଦେହର୍ ରଙ୍ଗ ତେଲ୍‌କେ ଭିତର୍ ବାହାର୍ ହେଲା ମାଖି । ॥୫୮॥

ସୀତାର୍ ଚେହେରା ଦେଖୁନ୍ ଦେଖୁନ୍ ପଡ୍‌ଲା ଅଡ୍‌ଚନେ
ଦେଖିନାଇଁ ପାରେ ନାଇଁ ଧରି ପାରେ ବି ମନେ । ॥୫୯॥

ନାରୀ ନୁହେ ସେ ମାୟାର୍ ରୂପ୍ ଜଗଦ୍ ଦେବା ନାରି
ହାରି ନାଇଁ ନେବା ହୁରୁଦ୍ କେନ୍ ଦେଖନ୍‌ହାରୀ ? ॥୬୦॥

ସୁନ୍ଦର୍ ରୂପ୍ ଧଏଲା କରି କେତେ କଳ୍ପନା
ରୂପେଁ କିଏ ଠେଠେଇ ହେବା ପରେ ଯାହାଜନା । ॥୬୧॥

ଦୁଇଟା ସୁନ୍ଦର୍ ରୂପ ତାକର୍ ତାକର୍ ମିଶା ମିଶି
ହଇଁ ହଇଁ ଦିନୁ ଦିନ୍‌କେ ସୁନ୍ଦର୍‌ଁ ସୁନ୍ଦର୍ ଦିଶି । ॥୬୨॥

ରାମ୍-ରୂପ୍‌ନେ ପୁର୍ ପୁର୍ କରି ଘୁରେଇଁ ପୁରେଇଁ ହେତିଁ
ଦିହ୍ ଥିବା ତକ୍ ଈ ଦିହ୍‌ନେ ହଉଥିତିଁ ରେତିଁ । ॥୬୩॥

ଦେହେ ଧରିଁ ଏନ୍ତା ଦେହର ନାଇଁ ପାଏଲେଁ ରସ୍
ଦେହେ ରହେବା ସୁଖର୍ ଭୁଖା ପ୍ରାଣ୍ ହେବା ନିରସ୍ । ॥୬୪॥

ପଚାରେ ତୁମେ କିଏ ଅଗୋ ! ଆଉଛ କେ'ନୁ ତୁହେ
ନାଁ ମାନେ କାଁ କା'ଣା ? କାଏଁ ମାଏନ୍ ଫେର୍ ହୁଏ ? ॥୬୫॥

ରାମ୍ କହେଲେ ଆଉଁ ଆମେ ଅବଧ୍ ରାଜା ରାନୀ
ଝାର୍ ଆଇଛୁଁ ନିଝାର୍‌ବାକେ ଅଛେ ଯାହା ପାନି । ॥୬୬॥

ମତେ କହେସନ୍ ରାମ୍ ମୋର୍ ସିଆନୀ ଯେ ସୀତା
ଦେଖ୍‌ଲେଁ ଦିଶନ୍ ଲୁକ୍ ଲୁଭାନି ଚାଖ୍‌ଲେଁ କୁହ୍ ପିତା । ॥୬୭॥

ଜାନ୍‌ଲା ଲୁକ୍‌କୁଁ ଅମ୍‌ରତ୍ ମୂର୍ତ୍ତି ଅଜାନ୍‌ବାର୍ କେ ଜୁଏ
ମୋର୍ ଛଡ଼ା ଆର୍ କାହାରେଁ ନାଇଁ ସଁଭାଳିଁ ହୁଏ । ॥୬୮॥

ଠଠେଇ ହେଲେ ବାଏ ଖୁଜେନ୍ ଆଏ ମାନ୍‌ଙ୍କେ ପୂରା ତୁଲ୍‌ସୀ
ବୁଝିଥିଲେଁ ପୂର୍‌ସୀ ପୁର୍‌ଥୀ ବିର୍‌ଝିଲେଁ ସେ ହଲ୍‌ସି । ॥୬୯॥

ସୀତାକୁଁ ଦେଖି କହେଲେ ହେମା ଆମେ କାଁ ମାଏନ୍
କହେଲେ ଜନକ୍ ଜେମା ଜନ୍‌ଏଥିଁ କାଏଁ ମାଏନ୍ ଦାଏନ୍ ॥୭୦॥

ରାମ୍ କହେଲେ ତୁମେ କିଏ ? କେନ୍‌ନେ ତୁମ୍‌ର ଘର୍
କାହାର୍ ଝି' ବହ ବହେନ୍ କିଏ ତୁମର୍ ବର୍ ? ॥୭୧॥

କେନ୍ତା କାମେ ବାହାରି ପଡ଼୍‌ଲ ଏକ୍‌ଲା ନିଘଂଚ୍ ଝାରେଁ
ମହୀ ମଣ୍ଡଳେଁ ମହାନ୍ ଅ' ମହିଲା-ସଂସାରେ । ॥୭୨॥

ନାରୀ କହେ ''ଜାନିଥିବ ତ୍ରିପୁର୍ ଜିତା ରାବଣ୍‌କେ
ଜାନିଥିବେ ବି ତାକର୍ ଭାଏ ତିର୍ଶିରା ଖର୍ ଦୂଷଣ୍ କେ । ॥୭୩॥

ସେମାନ୍‌କର୍ ବହେନ୍ ମୁଇଁ ମାଲ୍‌କେନ୍ ଇ ଝାରର୍
ଫୁଲ୍‌ଟେ ଆଏଁ ସୁନ୍ଦର୍ ଗୁଲ୍ ଗୁଲ୍ ନାରୀ ଗୁଁଥା ହାର୍‌ର୍ । ॥୭୪॥

କଥା ହେଲିଁ କି ଅଥା ହେଲିଁ ନ ସୁନ୍ଦର୍‌ପନ୍ କେ ଦେଖି
ଦେବ୍‌ତା କରି ତୁମ୍‌କୁଁ ଫୁଲ୍ ସରାଗେଁ ଦେମି ଟେକିଁ । ॥୭୫॥

ସେ ଆଶ୍ ଛାଡ ବାସ୍‌ମତୀ ଗୋ ବାସ୍‌ନାନେ ନାଇଁ ମନ୍
ପାଶେଁ ଥିବା ଦେଖିନିଅ ମୋର୍ ଭାଏ ଲକ୍ଷ୍ମଣ୍ । ||୭୬||

ନୁରୁଥିବା ତନ୍-ଫୁଲ୍ ଭାଏଲ୍ ବାସନାନେ ଥିବା ମନ୍ ?
ପଚରେଇ ଦେଖ ଇଁଚରେଇ କରି ତାର୍ ମନ୍ ଯଉବନ୍ । ||୭୭||

ଖସ୍‌ରିଁ ଗଲା ନାରୀ ତାର୍ ତନ୍-ପସ୍‌ରା ସାଜିଁ
ଅମ୍‌ରେଇ ପାର୍‌ଲେଁ ଲକ୍ଷ୍ମଣ୍‌କେ କରେଇ ନେବା ରାଜି । ||୭୮||

ଇତାର୍ ସାଙ୍ଗେ ସିଆନୀ ଅଛେ ବଲିଁ କଲା ମନ।
ଏକ୍‌ଲା ଅଛେ ଲକ୍ଷ୍ମଣ୍ ତାର୍ ଥିବା କେତେ କାମ୍‌ନା । ||୭୯||

ଭାବୁନ୍ ଦେଖ୍‌ଲା ଖଁଡେ ଧୂରେଁ ଏକ୍‌ଲା ଜନ୍‌ଏ ବସିଛେ
ଯେ ଆଏ ନ ଲକ୍ଷ୍ମଣ୍ ଶୁନିଥିବା ହେଲେଁ ଫସିଛେ । ||୮୦||

କଥା ନାଇଁ ଅଥା ଦିହେଁ ହେବାକେ ଘେଁସ୍‌ରେଇ
ପାଶ୍‌କେ ଯାଉନ୍ ଲକ୍ଷ୍ମଣ୍ ନିଜେଁ ହେଲେ ଖସ୍‌ରେଇ । ||୮୧||

କାମିନୀ ଗୋ କେ'ନୁ ଆଇଛ କେନ୍ କାମନା ନେଇ
ଆଶ୍ ନାଇଁ କର ଦାସ୍ ନାଇଁ ପାରେ ଦେଇ । ||୮୨||

ଭୂଲ୍‌ତା ନଚେଇ ଭୁର୍‌ଥାଇ ବସେ ରାମାନୁଜ୍ କେ ରାମା।
ଲକ୍ଷ୍ମଣ୍ କହନ୍ ବିହି ତତେ ବାମ୍ ହେଲା ନ ବାମା । ||୮୩||

ରାମ୍ କୁଁ ସୀତା ପଚାରି ବସ୍‌ନ୍ କିଏ ଥିଲା ସେ ଜନ୍‌କ
କେତେ ଛଟ୍‌କେଁ କଥା କହେ ଡରି ମଲିଁ ସେ ଛନ୍‌କ । ||୮୪||

ରାମ୍ କହନ୍ କାମିନୀ ଆଏ କାମ୍ ବାସ୍‌ନା ଭାରୀ
ଇନ୍ଦ୍ରିୟ ହାତେଁ ସଁପି ହଏ ତା'ର୍ ସେବାକାରୀ । ||୮୫||

ସେବା ପାଇ ଇନ୍ଦ୍ରିୟମାନେ ହଇଛନ୍ ବଡ୍ ବଡ୍
ଦେହ୍ ସାଙ୍ଗେ ମନ୍ ଚଏତନ୍ ପାଲ୍‌ଟି ଯାଇଛନ୍ ଜଡ୍ । ||୮୬||

ଇନ୍ଦ୍ରିୟ-ସେବା କାମ୍ ଯାର୍ ମନ୍ ରହେବା କାଏଁ ଥାବେଁ
ଜୀବନ, ମନ୍, ବିବେକ୍, ପଡ଼୍‌ବେ ଇନ୍ଦ୍ରିୟର୍ ଜାବେଁ । ॥୮୭॥

ଭୋଗ ରାଗ୍  ପାଇ ଇନ୍ଦ୍ରିୟ ହୁଅନ୍ ରୋଟ୍ ମୋଟ
ଦିନୁ ଦିନ୍ ମାଗନ୍ ଖାନା ଦୁହୁରି ଆହୁରି ପୋଟ୍ । ॥୮୮॥

ସାନ୍ ନୁହନ୍ ନାକ୍ କାନ୍ ଜିଭ୍ ବଢ଼େ ଜହ
ଖାଏମି ଖାଏମି ହଇଁ ହଉଥାଏ ଲହ ଲହ । ॥୮୯॥

ମିଶା ମିଶି ହଇଁ ପାଏବାକେ ଛିଆ ଛୁଇ ସୁଖ୍
ଦିହର୍ ଚୁଆଁ ଚୁନ୍ଧ ବଢ଼ି, ହୁଅନ୍ ବଢ଼େ, ମୁଖ୍ । ॥୯୦॥

ଯେତା ଦିଶେ ସେତା ନୁହେ ଆସିଛେ ଯେନ୍ ନାରୀ
ଇ ରୂପେଁ ସେ ଉପେ କରୁଛେ ସମକୁଁ ଦେବା ନାରି । ॥୯୧॥

ବଡ଼ ନାକ୍ କାନ୍ ଜିଭ୍ ଲହ ଲହ୍ ମୁହଁ ଦିହି ଯାକ
ସେ ଅନୁସାରେଁ ନଖ୍ ଦାଁନ୍ ଥିଇ ମୂରତି  ଆଁକ । ॥୯୨॥

କିଦିରି ବୁଲେ ମେଟାବାକେ ଇନ୍ଦ୍ରିୟଙ୍କର ନିଶା
କୁର୍‌କୁଡ଼ି ହେବାର୍ ପେଶା ତାର୍ ହର୍ ଘଡି ହର୍ ମିଷା । ॥୯୩॥

ହେଁ ଥିର୍ କାଯେଁ ହାତେଁ ଗୁଡ଼େଁ, କୁଲା ଲେଖେଁ ନଖ୍
ସୁପ୍‌ଲେଖେଁ ନଖ୍ ନାଆଁ ସୁପ୍‌ନଖୀ ପର୍‌ତଖ୍ । ॥୯୪॥

ସୀତା ସାଙ୍ଗେଁ କଥା ହଉଁ ଆଏଲା ସୁପ୍‌ନଖୀ
ଭୟାଙ୍କାର୍ ଦିଶେ ଦେବା କାହାକେ ଭାଏଲ୍ ଭଖି । ॥୯୫॥

କହେ ଅପୁରୁଷ୍ ଆଏ ତ ତୋର୍ ଭାଏ ଲକ୍ଷ୍ମଣ୍
ଅବସ୍ଥା କାହିଁ କା'ଣା ହେଲି ହୀନସ୍ତା ଇ କ୍ଷଣ୍ । ॥୯୬॥

ସୁନ୍ଦରୀ ସ୍ତିରୀ ପାଇ ପାହା ନାଇଁ ପଡ଼େ ତୋର୍ ତଳେଁ
ସେ ନାଇଁଥିଲେଁ ପଡ଼୍‌ବା ମନେ ଗିଲ୍‌ସିଁ କଲେଁ କଲେଁ । ॥୯୭॥

ଉପ୍‌ଡେଗ୍ରି ସୂପ୍‌ନଖୀ ବଡ୍ ବଡ୍ ପାହା ପକେଇ
ସୀତା ନିକେ ଗଲା ଅଚାନକ୍ ଆନ୍‌ବା ଖକେଇ ।  ॥୯୮॥

ସୂପନଖୀ ଆର୍ ସୀତା ମଝୁଁ ରାମ୍ ପକାଲେ ତାକ୍
ଲକ୍ଷ୍ମଣ୍ ସେ କ୍ଷଣ୍ ପୁହୁଁଚି ପର୍‌ଲେ କୁରିଆ ପାଖ୍ ।  ॥୯୯॥

ରାମ୍ କହେଲେ ଟୁକେଲାଟାକ ଯାଏ ଉବାଟିଆ
କିଦରେଇ ନିଅନ୍ ଇନ୍ଦ୍ରିୟ ଭିଲ୍ ଉତ୍‌ପାତ୍ ଉଁରାଟିଆ ।  ॥୧୦୦॥

ଦୟା ଲାଗେ ଦୀନ୍ ମନ୍ ହୀନ୍ ବିଚାର୍ ଦେଖ୍ଁ
କାମ୍ ନେଇ କରମ୍ କପାଲ୍ ହଇଥିସି ନ ଲେଖ୍ ।  ॥୧୦୧॥

ହେତେଇ ନେ ତାର୍ ଧରମ୍ କରମ୍ ବତେଇ ନେ ତାର୍‌ବାଟ୍
ବଲିଁ ତାର୍ ଇନ୍ଦ୍ରିୟକୁ ଚଲିଁ ଯିବା ଭଲି କାଟ୍ ।  ॥୧୦୨॥

ଅଖ୍‌ରେଁ ଅଖ୍‌ରେଁ ପାଲନ୍ କଲେ ଲକ୍ଷ୍ମଣ୍ ସେ କଥା
ଉପ୍‌ଡେଗ୍ରୀ ସୂପନଖୀର ନାକ୍ କାନ୍ ହେଲା କଟା ।  ॥୧୦୩॥

କାନ୍ଦି କାନ୍ଦିଗଲା ତାର୍ ଭାଏର୍ ରାଏଜ୍ ପାର୍
ଦୁହିପାଖେଁ ବୁହିଁ ଯାଏ ତିନ୍‌ଟା ରକ୍ତ ଧାର୍ ।  ॥୧୦୪॥

ଚାଲ୍ ଧାର୍ ଆର୍ କପିଲ୍ ଧାରେଁ ଗେରୁଦେଲା କେ ଗୁଲିଁ
ଇନ୍ଦ୍ରିୟକର୍ ସାଙ୍ଗେଁ ଲକ୍ଷ୍ମଣ୍ ଖେଲ୍‌ଲେ ରକ୍ତ ହୁଲି ।  ॥୧୦୫॥

ଇନ୍ଦ୍ରିୟମାନେ ଲକ୍ଷ୍ମଣକୁଁ କରୁଥିଲେ ଥଟା
ରାମ୍ ଇସାରାନେ ଇହାଦେ ସାରା ହଇଁ ଗଲେ ହଟ୍‌ହଟା ।  ॥୧୦୬॥

ସୂପନଖୀ ଯାଇ ଭେଟ୍‌ଲା ଖର୍ ଦୂଷଣ୍ ତିର୍‌ଶିରା
ମୂଲ୍ ହେଲା ଅସୁର୍-କୁଲ୍ ହେବାକେ ନିର୍ବୀରା ।  ॥୧୦୭॥

ବାଲ୍‌ମୀକି କହନ୍ ସଂଧ୍ୟା ହେଲା ଇ ଅଧାନେ ରହୁ
ଅସୁର୍ ମହୁଘରା ଝାରେଁ କାଏଲ୍ ନୁର୍‌ମା ମହୁ ।  ॥୧୦୮॥



# ପାଉଚ୍-୫

# ସୂପ୍‌ନଖୀ-ରାବଣ୍ ଆର୍ ରାବଣ୍-ମାରିଚ୍ କଥା

ଆଶ୍ରମର୍ ସକାଲ୍ ସଭା ଚାଲେ ବଢ଼େ ପୁରୁଁ
ରୁଣ୍ ପୁଣ୍‌ନେ ମୁନି ଟୁଣ୍ ଶୁଭେ ଥାଇଁବି ଦୂରୁଁ । ।।୧।।

ଜନସ୍ଥାନ ଠାନର୍ ନାଁ ଦୁର୍ଜନ୍‌କର୍ ରହନି
ଅସୁର୍ ମାନ୍‌କର୍ ବାସ୍ ମୁନୁଷ୍ ତାକର୍ ଅସହନି । । ।।୨।।

ଖର୍ ଦୂଷଣ୍ ତିର୍ଶିରା ତିନି  ଭାଇ ସେନେ ରଜା
ସଁପି ସାରିଛେ ଲଙ୍କରାଜ୍ ତାଙ୍କର୍ ଲାଗି ଖଁଜା । ।।୩।।

ସାଙ୍ଗେଁ ରହେ ରାବଣ-ବହେନ୍ ନାଆ ସୂପ୍‌ନଖୀ
ଚ଼ଲୁଥାଏ ଝାର୍ ପଦ୍‌ରାର୍ ଜଁତ୍ ଜାନୁଆର୍ ଭକ୍ଷି । ।।୪।।

ଇନ୍ଦ୍ରିୟକର୍ ସେବ୍‌କାରୀ ସବ୍ ନାରୀ ହଉ କି ପୁରୁଷ୍
ମୁନୁଷ୍ ଆଚର୍ ବିଚାର୍ ନାଇଁ କେ କହେବା ମୁନୁଷ୍ । ।।୫।।

କିଏ କହେ ଅସୁର୍ କିଏ ଦଏତ କିଏ ଦାନବ୍
ଜଁତ୍ ଜାନୁଆର୍ ଖାଇ, ଖାଇ ପାରସନ୍ ବି ମାନବ୍ । ।।୬।।

ଜୋର୍ ଦେଇ ମୁନି କହନ୍ ସୋର୍ କର୍‌ବ ପିଲେ
ତପ୍ କର୍ଲେଁ ଫଲ୍ ମିଲେ ଯେ ମନ୍ ଜାନି ଭଲ୍ ମିଲେ । ।।୭।।

ଦୁନିଆଁନେ ବନିହାଁ ଅଛନ୍ ଏନ୍ତା କେତେ ଜନ୍
ଦିହ୍‌କେ ନିହ୍ କରି ଗାଡ଼ି ନେସନ୍ ନିଜର୍ ମନ୍ । ।।୮।।

ଆତ୍‌ମାକେ ଢ଼ାପି ନେସନ୍ ତମ୍ -ପର୍‌ଦାର୍ ତଲେଁ
ନିଜର୍ ଭଲ୍ ଭାବୁଥିସନ୍ ଖାଲି ଦିହର୍ ଭଲେଁ । ।।୯।।

ଦିହ୍‌କେ ନେଇ ଅହରହ ଦିଅନ୍ ନିଜର୍ ପର୍‌ଚେ
ଦିହ୍‌କେ ଛାଡି ଦୁସ୍‌ରା ବିଷେ ଭାବନ୍ ନାଇଁ ଟିଁଚେ । ॥୧୦॥

ତପ୍ କର୍‌ଲେଁ ଯେତେବେଳେଁ ପାଆନ୍ ତପ୍‌ର ଫଲ୍
ସେଟା ହେସି କେବଲ୍ ଦିହର୍ ସୁଖ୍ ଦିହର୍ ବଲ୍ । ॥୧୧॥

ଦିହ୍ ଦିହ୍ ହଇ ଦିହ୍‌କେ ନାଇଁ ଡେଗି ପାରେ ଘାଏ
ଦେହ୍‌ବାନ୍ ରହେ ହତମାନ୍ ହଇଁ ଆତ୍‌ମା କରେ ହାଏ । ॥୧୨॥

ଦିହ୍‌କେ ନେଇ ଗରବ୍ କରି ଗୁଏଁଇ ନେସନ୍ ଗିଆନ୍
ଦିହର୍ ଲାଗି ଜପ୍‌ତପ୍ ଦିହର୍ ଲାଗି ଧିଆନ୍ । ॥୧୩॥

ସେମାନକର୍ ଭିର୍ଲି ଆନ୍ ଖର୍ ତିର୍ଶିରା ଦୂଷଣ୍
ଅତ୍ୟାଚାର ଧରମ୍ କରମ୍ ଅନାଚାର୍ ଭୂଷଣ୍ । ॥୧୪॥

ସୂପ୍‌ନଖୀକେ ଦେଖିଁ ପଡିଗଲା ହଲାହୋଲ୍
ଏବୁଆ ! ଇଟା କାଣା ହେଲା ଦିହ୍‌ଟା ରକତ୍ ଝୋଲ୍ । ॥୧୫॥

ନାକୁ ନାଏଁନ ଅଧେ କାନୁ ନାଇଁନ ଫାଲେ ଫାଲେ
ଘିଏଁ ସେନ୍ଦୁର୍ ଗୁର୍ଲି ପଥର୍ ମୂର୍‌ତିନେ କେ ଢାଲେ । ॥୧୬॥

ସୂପ୍‌ନଖୀ ଚୁପ୍ ନୁହେ ଶୁନି ଲୁକ୍‌କର ହାଏ ହାଏ!
ଭାଏର୍ ନିନ୍ଦି ଭାଏ ମାନ୍‌କୁଁ ନିନ୍ଦେ ଘାଏ ଘାଏ । ॥୧୭॥

ଦିହ୍‌ର୍ ରକତ୍ ଆ'ନ୍ ସହଜେଁ ଦେଖି ଦିହ୍‌ର ଦଶା
ବହେନ୍ ହେଲା ଖଁଡିଆ ନିଜେ ହେବେ ଲୋକ୍‌ହଁସା । ॥୧୮॥

ଗର୍‌ଜିଁ ଆସେ ଗରବ୍ ଗର୍‌ଡି ବିବେକ୍-ଶୁଖାପତ୍‌ର
ଉଡିଁ ପଲାଲା କାହିଁଟା କାହିଁ ହଇ ଛିନ୍ ଛତ୍‌ର୍ । ॥୧୯॥

ହୁରି ପଡ୍‌ଲା ବାହାରି ଆସରେ ଯିଏ ଅଛ ଯାହିଁ
ପଁଚବଟୀ କେ ଚାର୍ଟି ଲେଖେଁ ସଭେ ପଡିଛନ୍ ଧାଇଁ । ॥୨୦॥

ବେଙ୍ଗ ଧରିଛେ ସାଁପ୍‌କେ ଜାବେ ଗାଙ୍ଗୋ ଧରିଛେ ଚରେ
ଧପେଇ ନେବାର୍ ଆଶେଁ ଆସି ମୁନୁଷ୍ ଝଁପେଇ ପରେ । ''  ॥୨୧॥

କହି ଧାଇଁଛନ୍ କେତେ ଯେ ଲୋକ୍ କେ କରୁଛେ ସୁମାର୍
ହଲ୍ଲା ଶୁଭେ କିର୍ଲା ବୁବା ଧର୍ ଧର୍ ମାର୍ ମାର୍ ।  ॥୨୨॥

ଲକ୍ଷ୍ମଣ୍ କହନ୍ ଲଖ୍ ଲଖ୍ ଲୋକ୍ ଆସନ୍ ଦଦା ! ମାଡ଼ି
ଭାବେଁ, ଦୁହେଁ ପାର୍‌ମା କାଏଁ ସଁଭାଳି ଲୋକର୍ ଧାଡ଼ି ।  ॥୨୩॥

ରାମ୍ କହେଲେ ରୁଆ ଗଦାକେ ଗଦେ ଲୁଏ କାଏଁ ନୁରା ?
ମୋର୍ ହାତେଁ ଥାଉ ଧନୁଶର୍ ସାଙ୍ଗେଁ ଶର୍ ଦୁରା ।  ॥୨୪॥

ସୀତା ନେଇ ଯା'ତ ତୁଇଁ ନିତର୍ ଜାନି ଠାନ୍‌କେ
ଏକ୍‌ଲା ଦେଖ୍‌ମି ମୁକ୍‌ଲା ପାପର୍ ହାପ୍ପର୍ ଅମ୍‌ରା ଟାନ୍‌କେ ।  ॥୨୫॥

ସୀତା ଲକ୍ଷ୍ମଣ୍ ବାହାରି ଯାଉଁନ୍ ନିଜେଁ ଆଏଲେ ବାହାରି
ନିଜର୍ ବଳେଁ ବିଶ୍ୱାସ୍ ଯାର୍ ସାହେଯ୍ ନୁର୍‌ବା ? କାହାରି ।  ॥୨୬॥

କୁରିଆ ଆଗେଁ ଢ଼ିପ୍ ଉପ୍‌ରେଁ ଠିଆ ବଡ୍ ପଥ୍‌ରେଁ
ସାମ୍‌ନେ ଅଛେ ବଡ୍ ପଏଦର୍ ଡାକର୍ ନାକର୍ ସୁତ୍‌ରେଁ ।  ॥୨୭॥

ଗଛ୍-ଅରେଣ୍‌କେ ଚିରି ଚିରି ଲୋକ୍-ଅରେଣ୍‌ଟେ ଆଏଲା
ନାଇଁଦିଶ୍‌ବାର୍ ମାଟିରମୁହ୍ଁ ଲୋକ୍ -ମୁଡେଁ କେ ଛାଏଲା ।  ॥୨୮॥

ଯେ ଆଉଛେ, ରାମକୁଁ ଦେଖି ହଇଁ ଯାଉଛେଁ ଦଁଭୀତ୍
ସୁନ୍ଦର୍ ଦେହେକେ ଦେଖିଁ ଅବାକ୍ ଦିହ୍-ଭାଷାର୍ ପଣ୍ଡିତ୍ ।  ॥୨୯॥

ଏଡ଼େ ସୁନ୍ଦର୍ ଚେହେରା କେଭେଁ କିହେ ନାଇଁ ଦେଖି
କପ୍‌ଟିଆ ଅସ୍‌କଟିଆ ମନେ ନାଇଁ ହଇଁ ତ ଲେଖି ।  ॥୩୦॥

ଦେହ୍ -ସର୍‌ବସ୍ ସଭେ ଅ'ନ୍ ଦେହ ଦେବ୍‌ତାର ପୂଜାରୀ
ସୁନ୍ଦର୍ ଚେହେରା ଦେଖି ମନର୍ ମଏଲାକେ ନିଝାରି ।  ॥୩୧॥

ରାମ୍‌କୁଁ ଦେଖିଲେଁ ଆରାମ୍ ଆସେ ମନେ ଭରେ ଆନନ୍ଦ୍
ଅନ୍‌ମୁନ୍‌ଷିଆ ଭାବ୍‌ନା ମାନ୍‌କର୍ ଲାଗିଁ କବାଟ୍ ବନ୍ଦ୍ । ।।୩୨।।

ବଡେଇ ଗଲା ହତ୍ ବଡ଼େଇ ଲଡେଇର୍ ବିଚାର୍ ଭାଗେ
ଆନନ୍ଦ୍-ରୂପ୍ ପୂରା ପିଏ କେ କାର୍ ଭାଏଗେଁ ଭାଗେ । ।।୩୩।।

କେ କହୁଛେ ଏତେ ସୁନ୍ଦର୍ ଚେହେରା ଥିଲା କାହିଁ ?
ସୂପନଖୀର୍ ରୂପ୍ ଖଁଡିଆ କଲା ତ କଲା ମାର ନାହିଁ । ।।୩୪।।

ଈ ରୂପ୍ ଗଲେ ସୁନ୍ଦର୍ ପନର୍ ବିହନ୍ ଯିବା ବୁଡ଼ି
ଦେଖୁଥିମା ବୋ ! ରଖିଥାଉଁ ଯେ ମନେ ବନେଇ ଗୁଡ଼ି । ।।୩୫।।

ଆଗୁଁ ପାଛୁଁ ଅଲଗେଇ ଥିଲେ ରାମ୍ ଲକ୍ଷ୍ମଣ୍-ସୀତା
ଏକ୍‌ଲା କରି ଦେଖୁନ୍, ପାଶେଁ ଦ୍ୱନ୍ଦ୍-କାଏଁ ଯେ ଥିତା ? ।।୩୬।।

ଏକ୍ ସୁରିଆ ଏକ୍ ଧରିଆ ଦେଖନ୍‌ହାରୀର୍ ନଜର୍
ହେଲେଁ ହେବା ଦର୍ଶନ୍‌ଟା ମନେ ବନ୍‌ଏ ବଜର୍ । ।।୩୭।।

ତାହାହିଁ ହେଲା ରାମ୍ ଚେହେରା ସମ୍‌କିର ମନେ ନାଚେ
ହଂସା ଈର୍ଷାର୍ ହୁର୍ଗଲା ଭାବ୍ ବର୍କସ୍ କରି ଆଁଛେ । ।।୩୮।।

ରାମ୍‌କୁଁ ଛାଡି ଦୁସ୍‌ରା ରୂପ୍ ନାଇଁ ଦିଶେ କା'ର୍ ଆଖିଁ
ସବେଁ ସମ୍‌କର୍ ଠାନେ ଅନ୍‌ଭବ୍ କରନ୍ ରାମର୍ ଚାଖୀ । ।।୩୯।।

ହେଲେଁ ଶ୍‌ତରୁ ଭାବ୍‌ଟା କାହାର୍ ଭିତ୍‌ରୁଁ ନୁହେ ବାହାର୍
ସଭେ ସମ୍‌କୁଁ ରାମ୍ ଭାବି ପକାନ୍ ମରନ୍-ପ୍ରହାର୍ । ।।୪୦।।

ସଭେ ଭାବନ୍ ରାମ୍‌ର ମାରେଁ ନିଚେଁ ଯାଉଛନ୍ ମରି
କେନ୍‌କେ ଯାଆନ୍ ସେ ଜାନ୍‌ବେ ରାମ୍-ଭାବ୍‌ନା ଧରି । ।।୪୧

ରାମର୍ ଧୁନୁ ଶର୍ ଯାଉଛେ ହର୍‌ମେଷ୍ ସବ୍ ସବ୍
ଶତ୍‌ର ଯିବାର୍ ବାଟ୍‌କେ ଭାଏଲ୍ ସାଫ୍ କରେ ତର୍‌ସର୍ । ।।୪୨।।

ସୂପନଖୀ ଟିକେ ଅଲଗେ ଥାଇ ଦେଖୁଥିଲା ଇ ସବ୍
ମୁରତୁ-ସମୁଦରେ ସଭେ ବୁଡୁ ଥିଲେ ଟବ୍ ଟବ୍ । ॥୪୩॥

ନାକର୍ କାନର୍ ରକତ୍ ଧାର ନାଇଁ ଶୁଖୁଥାଇଁ ତାଏଲ୍
ଆଖୁଁ ବୁହିଲା ପାନିର୍ ଧାର୍ ଧୁଇବାର ଲାଗି ଭାଏଲ୍ । ॥୪୪॥

ଲହ-ଲୁହକେ ସର୍‌ବସ କରି ଧଏଲା ଲଙ୍କାର୍‌ବାଟ୍
ମନ୍ ମଝେ ନାଇଁ ଲିଭିଥାଇ ମହା, ମୁତ୍ୟୁର୍ ନାଟ୍ । ॥୪୫॥

ଗିଧା ରାବଣ୍ କୁଆ ଆସି ମୁର୍ଣ୍ଡର୍ ମାନ୍‌କେଁ ବସି
ଜାନ୍ ଗଲେଁ ଦିହ୍‌ର କଥା କହୁନ୍ ହସି ହସି । ॥୪୬॥

ଲଙ୍କାନେ ଶଙ୍କା ନାଇଁ ରାଜ୍ ସଭା ଧରେ ଯମକ୍
ସୂପନଖୀର ସେ ରୂପ୍‌ଦେଖି ଖେଲିଗଲା ଚମକ୍ । ॥୪୭॥

କଟା ନାକ୍ କାନ୍ ଦେଖି ସଭେ ହେଲେ ଆଶ୍ଚରିଯ୍
କେ କଲା ଇ ଗୁଲ୍‌ଗୁଲା, ରାଜ୍ ବାଲାକେ କଦ୍‌ରିଯ୍ । ॥୪୮॥

ସଭା ଭାଙ୍ଗି ରାବଣ୍ କହେଲା ''କିଏ କଲା ଏ କାମ୍
ନାଆଁ ଧର୍‌ତ ଧର୍‌ତାନୁ ତାର୍ ମେଟେଇ ନେମି ନାମ୍ ।'' ॥୪୯॥

କହେ ସୂପନଖୀ କାନ୍ଦି କେନ୍ ରଜାର୍ ତୁଇଁ ରଜା
କେନ କାଣା ହେଲା କହେବାର୍ ଲାଗି ନାଇଁ ଖଁଜା । ॥୫୦॥

ମରଦ୍ ବୁଲଉ କେନ୍ ଶଧେଁ ମଦ୍-ହଦେଁ ବୁଡି
ଉସ୍ତାର୍ ହେଲେଁ ପୁଷ୍ପକ୍ ଧରିଁ ମନ୍‌କେ ଯାଉ ଉଡି । ॥୫୧॥

ଏଖେଇ ଥର୍‌କେଁ ଭାବ୍‌ସୁ ପରେ ଦଶ୍‌ଟା ଜଟିଲ୍ କଥା
ସେଥିର୍ ଲାଗି କହନ୍ ସଭେ ତୋର୍ ଦଶ୍‌ଟା ମଥା । ॥୫୨॥

ଦୁଇଗୁଡିଆର୍ ଗତି ଜିତି ଦଶ୍ ଗୁଣ୍ ତୋର ଗତି
ଦଶି ଦିଗର୍ କଥା ଶୁନୁ କୁଡେ କାନ୍ ପାତି । ॥୫୩॥

ମୋର୍ କଥା ଶୁନି ପାର୍‌ବୁ କାଇଛେ ତୋର୍ କାନ୍
ତୋର୍ ଲାଗି ମୋର୍ ଜାନ୍‌ଯାଏ, ନାଇଁ ଜାନିତ ଜାନ୍ । ॥୫୪॥

ଏ'ଦେ ଏଭେଁ ଯାଇଥିଲି ଦଣ୍ଡକ୍ ବନ୍ ବୁଲି
ପଁଚ୍‌ବଟୀନେ ଦେଖ୍‌ଲିଁ ସୁନ୍ଦର୍ ପତି ପତ୍‌ନୀ ଯୁଲି । ॥୫୫॥

ସାଙ୍ଗେଁ ଅଛେ ଛାଏ ମେତାଲ୍ ସେ ମୁନ୍‌ଷର୍ ଭାଏ
କାଟ୍‌ଲା ନାକ୍ କାନ୍ ବନ୍‌ଏ କରି ଦେଖ ଘାଏ । ॥୫୬॥

ମୋର୍ ନୁହେ ତୋର୍ ନାକ୍ କାଟି ବଟେଇ ନେଲା ମତେ
ବୁଝ୍, ବୁଝ୍‌ବାର୍ ଶକ୍ତି ଯଦ୍‌ରି ବିହି ଦେଇଛେ ତତେ । ॥୫୭॥

ପୁରୁଷ୍‌ଟାତ ସୁନ୍ଦର୍ ଆଏ ନ ନାରୀକେ ନାଇଁ କହ
ତିନ୍‌ହି ପୁରେଁ ନାଇଁନ, ଆର୍ ନାଇଁ କହେଁନ ଜହ । ॥୫୮॥

ସବୁ ରାନୀର୍ ସାଙ୍ଗେଁ ଯଦ୍‌ରି ମନ୍ଦୋଦରୀ ବହୂ
ମିଶ୍‌ଲେଁ ବି ଗୁଡର୍ ଚିନି ଆଙ୍ଗୁଟ୍ ସରି ହଉ ? ॥୫୯॥

ସେ ନାରୀକେ ଆନି ଭେଟ୍ ଦେମି ତୋର୍ ପାଦେଁ
ଚେରେଷ୍ଟା କର୍‌ଲିଁ ବେଲ୍‌କେ ପରିଁଗଲି ପର୍‌ମାଦେଁ । ॥୬୦॥

ସାନ୍ ଭାଏ ତାର୍ ନାକ୍ କାନ୍ କାଟି ଦେଲେ ବଟେଇ
ସେ ଦଶାନେ ଖର୍ ଦୂଷଣ ତିର୍ଶିରା ଦେଲି ପଠେଇ । ॥୬୧॥

ପଁଚ୍‌ବଟୀକେ ପୁହୁଁଚିବାକେ ସମିୟା ଲାଗ୍‌ଲା ଖାଲି
ନାଇଁ ଫିର୍‌ଲେ ଜନ୍‌ଏ କିହେ ମର୍‌ଲିଁ ଭାଲି ଭାଲି । ॥୬୨॥

ଦହସତ୍ ଯାହା ହେଲିଁ ସତ୍ ସତ୍ କହେଲିଁ ମୁଇଁ
ନାକ୍ କାନ୍ ଗଲା ନାଇଁ ଯାଉ ନାରୀ ଗୁଇଁ । ॥୬୩॥

"ରାଇବ୍‌ଏଦ୍ ଆସି କରୁ ତୋର ଉପଚାର୍
ବାକି ବିଷେ କା'ଣା କର୍‌ମା କର୍‌ମି ନ ବିଚାର୍ । ॥୬୪॥

ସାନ୍ ସୁରୁ ନୁହେ ବଫୁ ନାଇ ଥିବା ଜମ୍
ଖର୍ ଦୂଷଣ୍ ତିର୍ଶିରା ଯଦି ନାଇଁ ଧଏଲେ ଦମ୍ । ''   ॥୬୫॥

ଏତ୍କି କହି ରାବଣ୍ ବାହାରି ବସ୍ଲା ତୁନ୍ ମୁନ୍
ସୂପ୍‌ନଖୀ ଫେର୍ କହେଲା ସୁତର୍ ଭାବେଁ ଦଦା ଶୁନ୍ ।   ॥୬୬॥

ଅବଧ୍ ଦେଶର୍ ରଜା ପିଲା ଆ'ନ୍ ଦୁହିଭାଇ
ଦୁଇକେନିଆଁ ଗଛର୍ ମେତାଲ୍ ଛଡ଼ା ଛଡି ନାଇଁ ।   ॥୬୭॥

ସାନ୍ ଭାଇର୍ ନାଁ ଲକ୍ଷ୍ମଣ ବଡର୍ ନାଁ ରାମ୍
ଦେଖିବାର୍‌କେ କେଡେ ଅଏନ୍ ଆଏଁଖ୍ ରହେସି ଜାମ୍ ।   ॥୬୮॥

ନାରୀ ଆଏ ଢେ଼ରୀ ବଡର୍ ସିଆନୀ ନାଁ ସୀତା
ଦମ୍ ଧରି ନୁହେ ଦେଖି ସୁନ୍ଦରୀ ଜଗତ୍ ଜିତା ।   ॥୬୯॥

ଦୁଇ ଭାଏକୁଁ ମାର୍‌ବାକେ ଜହ ନାଇଁ ହ'ଭାବି
ପାଇ ପାରିଛେଁ ମୁଇଁ ତାକର୍ ମରନ୍ ଘରର୍ ଚାବି ।   ॥୭୦॥

ସୀତା ବିନା ରାମ୍ ମର୍‌ବାର୍ ଲାଗ୍‌ବା ଘଡେ ଛନ୍ଏ
ସୀତା ବି ନାଇଁ ଜାନ୍ଏ ରାମ୍‌କେ ଲାଗେ କେଡେ ବନ୍ଏ ।   ॥୭୧॥

ରାମ୍ ପଛା ପଛ୍ ଭାଏଟା ଯିବା ସୁରୁଯ୍ ପଛେଁ ଖରା
ଖରା ପଛେଁ ଅଁଧାର୍ ଅଁଧାର୍ ପଛେ ଯେନ୍ତା ତରା ।   ॥୭୨॥

ପାର୍‌ବୁ ହେଲେଁ ଜୀବନ୍-ଜୁଆନେ ପକା ଏଖେଇ ପାରେ
ଜିତ୍‌ଲେଁ ସେ ଜିତ୍‌କେ ସରଗ୍ ଜିତ୍ ନାଇଁ ପାରେ ।   ॥୭୩॥

ରାବଣ୍ କହେ ସୂପନଖୀ ଗା ! ଚୁପ୍ କରି ତୁଇଁ ରହ
ଯିମି ଯାଉଛେଁ ଯାହା ବି ହଉ, ଯାଚି ନାଇଁ କହ୍ କହ ।   ॥୭୪॥

କାହାରିକେ ଆର୍ ନାଇଁ କହିଁନ ବାହାରି ପଡ୍‌ଲା ଘରୁଁ
ସାଫ୍ ନୁହେ ମନ୍ ଚତ୍‌ରେଇ ଆନ୍‌ଲେଁ ଚାରି ତରୁଁ ।   ॥୭୫॥

କେନ୍ତା ରକମେ ଜହ୍ନ୍ କେ ଜନକ୍‌ରାଏତ୍ ଆନ୍‌ବା ଛଡ଼େଇ
ଆକାଶ୍ ଦିହୁଁ ନୀଲିଆ ରଙ୍ଗ ଆନି ହେବା କାଏଁ ଅଡ଼େଇ । ॥୭୬॥

ପୃଥ୍ୱୀନୁ ପୃଥକ୍ କରି ପାର୍‌ବା କାଏଁ ସାଗର୍
ଛିନି ଆନ୍‌ବା ମଣି କେନ୍ତା ଜୀଇଁତା ଜାଗ୍ରତା ନାଗର୍ ॥୭୭॥

ନୁହିଲା କଥା କର୍‌ବାକେ ମନେ ବାଁଧିଛେ ଆଶ୍
ଫିକର୍ ପାଁଚେ ସୀତାର୍ ଲାଗି ଫାନ୍ଦ୍‌ବା କେନ୍ ଫାଶ୍ । ॥୭୮॥

ଗରିକଁଟା ପକାବା ତ ଫାନ୍ଦ୍‌ବା କେନ୍ ଚରା
ମୀନ୍ ନୟନା ସୀତା ସହଜେଁ ପଡିଯିବା ଧରା । ॥୭୯॥

ଭାବି ଭାବି ଇ ଆତ୍ତୁଁ ସେ ଆତ୍ତୁଁ ମନେ କଲା ଠିକ୍
ହେର୍ଣ୍ଣାଟେ ହେତା କରୁଥିତା ଚିକ୍ ଚିକ୍ । ॥୮୦॥

ସୁନା ରଙ୍ଗର୍ ଛାଲେଁ ମଣିମୁକ୍ତା ପର୍‌ତା ଚିତ୍‌ରି
ଲୁଭ୍‌ନି ଆଏଁଖିକେ ଲୁଭୁ ଲୁଭାନୀ ଥିତା ସବୁ ମିତ୍‌ରି । ॥୮୧॥

ସୀତା ଆଏ ରଜାର୍ ଝି' ରଜା ଘରର୍ ବହ
ହେର୍ଣ୍ଣା ଦେଖି ଏକେଁ ହେତା କେତେ ଗହ ଗହ । ॥୮୨॥

ସୁନାର୍ ଛାଲେଁ ମଣି ମୁକ୍ତା ବିନ୍ଦୁ ଲକ୍‌ଚାତା ନାଇଁ ?
ରାମ୍‌କେ ନାଇଁ କହେତା କାଏଁ ଧରିଆନ୍‌ଅ ସାଇଁ । ॥୮୩॥

ସୀତା ଛାଡି ରାମ୍ ହଟାବା ବଲିଁ ସୁନାର୍ ଜଁତ୍
ଦଉଡିବା ବେଲେଁ କେନ୍‌ କେ ଯିବା କାହିଁ ପାଏବା ଅଁତ୍ । ॥୮୪॥

ସୋଜ୍ ତ ଧରି ନାଇଁ ପାର୍‌ବା ପେଶ୍‌ବା ଯେଭେ ଶର୍
ହେର୍ଣ୍ଣା ଉତ୍ରେଇ ପାର୍‌ତା ଯଦ୍‌ରି ରାମର୍ ନିଜର୍ ସ୍ୱର୍ । ॥୮୫॥

ଡାକ୍‌ତା ଭାଏ ଲକ୍ଷ୍ମଣ୍‌ରେ କାହିଁ ଅଛୁ? ଆ ଦଉଡି
ଆ' ଆ' ଘାଏ ସାହେଯ୍ କର୍‌ବୁ ବିପଦ୍ ଆନେ ଘଉଡି । ॥୮୬॥

ତୁରତି ଆଏତା ଭାଏ ଲକ୍ଷ୍ମଣ୍ ସୀତା ରହେତା ଏକ୍‌ଲା
ଝାଏଁ କର୍‌ତା ପଁଚ୍‌ବଟୀ ବନ୍ କୁରିଆ ରହେତା ମୁକ୍‌ଲା । ॥୮୭॥

ଠକିଁ ନାରି ନାରୀଟାକ ବୁହି ଆନ୍‌ତି ଭୁଲେଇଁ
ଲୁକ୍‌ନିଆ ଥିତା ପୁଷ୍ପକ ତାହିଁ ବସେଇ ଆନ୍‌ତି ଉଡେଇଁ । ॥୮୮॥

ସୀତାର ବିନେ ମର୍‌ତା ରାମ୍ ପଛା ପଛ୍ ତାର୍ ଭାଏ
ସୀତା ଥିତା ଲଙ୍କା ପୁରେଁ କିଏ ଆଏତା ଘାଏ । ॥୮୯॥

ମୋର୍ କାମ୍ ମୁଇଁ ଖେଷେଁ କର୍‌ତିଁ ଯାଏତିଁ ଯୁଗୀ ବେଶେଁ
ବେଶ୍ ବଦ୍‌ଲା ପାରଗ୍ ଲୋକ୍ କିଏ ଅଛେ ମୋର୍ ଦେଶେଁ । ॥୯୦॥

ହରିନ୍ ବେଶେଁ ସୀତାର୍ ମନ୍ କିଏ ପାର୍‌ବା ହରି
କୁଁଥ୍ କୁଁଥ୍ ନୁହି ରାମର୍ କଂଠ୍ କେ ପାର୍‌ବା ଅନ୍‌ସରି । ॥୯୧॥

ଇ କବାର୍ କେ ପାର୍‌ବାର୍ ଲୋକ୍ ଅଛନ୍ କମ୍ ବେଶି
ହେଲେଁ ମାରୀଚ୍ ମାମୁଁ ଅଛାନ୍ ବାହୁ ବହୁବେଶୀ । ॥୯୨॥

ମାରୀଚ୍ ଦୁଆରେଁ ଅମ୍‌ରି ପର୍‌ଲା ଏଖେଇ ଘାଏକେଁ ଯାଇ
ମାରୀଚ୍ ମନେ ଅଇନା ଡରର୍ ବାଦ୍‌ଲ୍ ଗଲା ଛାଇ । ॥୯୩॥

ଆପେଁ ଆପେଁ ଆପଦ୍ ଆଏଲା ମାରବା ଘାଁଟି ସାନି
ରାବ୍ ହେଲା ଧୀରଯ୍-ଧନ୍ ରାବଣ୍ ଆଏବାର ଜାନି । ॥୯୪॥

ମାରୀଚ୍ କହେଲେ କାଏଁ କବାରେଁ ନିଜେଁ ଆଏଲୁ ଧାଇଁ
ପାଇଥିଲେଁ ଖବର୍ ଟିକେ ଯାଇଥିତିଁ ନାଇଁ । ॥୯୫॥

ରାବଣ୍ କହେ ଜାନ୍‌ଉ ମାମୁଁ ! କଲା ପୂଜାରୀ ଆଏଁ
ହେଲା ନାଇଁ କରେଁ କଲାର୍ ମାନ ରଖ୍‌ବାକେ ଚାହେଁ । ॥୯୬॥

ଯୋର୍ ହେଲା ତୋର୍ ବେଶବଦ୍‌ଲା କଲାର୍ ବାହାଦୁରି
ପର୍‌ଖିଁ ପର୍‌ଖି ନେମି ପର୍‌ଶଂସା ନୁରି ନୁରି । ॥୯୭॥

ବତ୍ ତଳିଟେ ନାଇଁ କର୍‌ନ ବାନ୍ଧମା ସୁରୁ ପୂରା
ମାମ୍‌ଲି କଥାଟାକର୍ ଲାଗିଁ ତତେ ପରିଛେ ନୁରା । ॥୯୮॥

ଜାନ୍‌ଉ କି ନି ରାମ୍ ଲକ୍ଷ୍ମଣ୍ ଆସିଛନ୍ ଇ ଝାର୍
ତାକର୍ ସାଙ୍ଗେ ଅଛନ୍ ସୀତା ସୁନ୍ଦରୀ-ସଂସାରୀ-ସାର୍ । ॥୯୯॥

ସୀତା ପାଶୁଁ ରାମ୍‌କେ ଟିକେ ଆନି ପାର୍‌ଲେଁ ଖସେଇ
ବାକୀ ବୁତାମୋର୍ ଆଏ ପାର୍‌ମି ନ ଉସେଇ । ॥୧୦୦॥

ଗୋଦାବରୀ ନଦୀ ଖଁଡ଼ି ବର୍‌ଭଦ୍‌ରି ଭିତ୍‌ରେଁ
ଅଛନ୍ ରାମ୍ ଲକ୍ଷ୍ମଣ୍ କରି କୁରିଆ ଡାଲ୍ ପତ୍‌ରେଁ । ॥୧୦୧॥

ସାଙ୍ଗେଁ ଅଛନ୍ ସୀତା ଜଗତ୍ ଜିତା ରୂପ୍ ଧରି
ତାହାକୁଁ ନାଇଁ ଆନ୍‌ଲେଁ କାଏଁ ଲାଭ୍ ଜୀଇଁ କରି । ॥୧୦୨॥
ଗୁଟେ କଥା କର୍ ମାମୁଁ ! ହଇଁ ଯା ପଟେ ଚିଥଲ୍
ମଣି ମୁକ୍ତାର ଚିତ୍‌ରି ଦିହ୍ ଜଳୁଥାଉ ଥଲ୍ ଥଲ୍ । ॥୧୦୩॥

କୁରିଆ ପାଶେଁ ସୀତା ଦେଖିବାର ମିଡାଲ୍ ନେବୁ ଚହଲିଁ
ପାଏବାକେ ହଇଁ ତହକ୍ ବିକଲ୍ ମନ୍ ଯାଉଥିବା ଦୁହୁଲିଁ । ॥୧୦୪॥

ପାଶ୍‌କେ ପାଶ୍‌କେ ଆଏଲା ବାଗିର୍ କର୍‌ବୁ ଘାଏ ଘାଏ
ଜୀବନ୍ ଛଡା ଉଡ଼ିନେବୁ ନ ଧର୍‌ବାକେ ଯଦି ଯାଏ । ॥୧୦୫॥

ସୀତାର୍ ମନର୍ ବୋଧ୍ ଲାଗି ଦେବାକେ ବି ପ୍ରାନ୍
ନାଇଁ ହଦ୍‌ରେ ତୋର୍ ପଛେଁ ଦଉଡିବା ନ ରାମ୍ । ॥୧୦୬॥

ଦଉଡି ଧୁପି ବନିହା ଧୂର୍‌କେ ନେଇଁ ଯିବୁ ଘାଏ
ମୋର୍ କବାର୍ କର୍‌ମି ନ ମୁଇଁ ଆର୍ କା'ଣା ଥାଏ । ॥୧୦୭॥

ରାବଣ୍ କହେଲା କଥା ମାରୀଚ୍ ମନ୍‌ଦେଇ ଶୁନ୍‌ଲା
ରାମର୍ ଡର୍ ଛାଡି ଜଁଟିଁ ଦୁହ୍‌ରି ଚିହ୍‌ରି ଝୁନ୍‌ଲା । ॥୧୦୮॥

କହେଲା ରାମର୍ ବିନ୍ ଫରର୍ ବାନ୍ ଇନ୍‌କେ ଆନ୍‌ଲା ଉତେଇ
ତୋର୍ କହେଁ ଆଏଇ୍ ଫର୍ ଲଗା ଖରେଁ ମାରୁ ନ ଫେର୍ ଗୁତେଇ । ॥୧୦୯॥

ରାମ୍‌କେ ନାଇଁ ଚିହ୍ନି ଭଙ୍ଗା ତାର୍ ସାଙ୍ଗେଁ ନାଇଁ ଲାର୍
ଅଜ୍ଞାନ୍ -ନିଦେଁ କେତେ ଶୁଇବୁ ? ଏଛନି ହେଲେଁ ଛାର୍ । ॥୧୧୦॥

ଉପ୍‌ଦେଶ୍ ଶୁନି ନାଇଁ ଆସି ବୋ ଆଇଛେଁ କବାର୍ ଟାକେଁ
କରମ୍ କପାଲ୍ ସଲଖା ତୋର୍ ଯାଉଛେଁ ନାଇଁ ଟାକେଁ । ॥୧୧୧॥

ଲଙ୍କାପୁର୍‌କେ ଯାଉଛେଁ ତୁଇ ଯିବୁ ଖମନ୍‌ପୁର୍
ପଠାବାକେ ବେଲ୍ ନାଇଁ ଲାଗେ ପାହେନୁହେ ଭି ଧୂର୍ । ॥୧୧୨॥

ମାରୀଚ୍ ଭାବେ ରାମ୍‌ଦେଖୁଁ, ଦେଖୁମି ଦୁହ୍‌ରି ତିହ୍‌ରି
ମନ୍ ଥିଲା ସେ କଲ୍ପନା, କାଲେଁ ନାଇଁ ଯାଇଁ ଉହ୍‌ରି । ॥୧୧୩॥

ଫେର୍ ଦେଖୁମି ରାମ୍ ଚିନ୍ତା କେତେ ମହାନ୍ ଆଏ
ଥର୍‌କେ ଥର୍ ଫଲ୍ ଦଉଥାଏ ଦେଖିପାର୍‌ଲେଁ ଘାଏ । ॥୧୧୪॥

ରାମ୍ ଲକ୍ଷ୍ମଣ୍ ଦେଖିଥିଲିଁ ନାଇଁ ଦେଖୁଁ ସୀତା
ଆଏଇ୍ ଦେଖୁମି ଏନ୍ତା ସୁଯୋଗ୍ ଆଉର୍ କେଭେ ଥିତା ? ॥୧୧୫॥

ମର୍‌ବାର୍ ତ ସତ୍ ରାବଣ୍ ହାତେଁ କାଏଁ ମର୍‌ମି
ରାମ୍‌ର୍ ହାତେଁ ମରି ଆନନ୍ଦ ରୂପ୍‌କେ ଅନୁସର୍ ମି । ॥୧୧୬॥

କହେଲା ରଜା, କାଏଁ ତୁଇ ଦୁଖିମନା ହେବୁ ସୋଇ୍
ବର୍‌ଗୁଲୁ ତ ଥରେ କହ୍‌ମି ନାଇଁ ବରଗୁତ ରୋଇ୍ । ॥୧୧୭॥

କେତେବେଳେଁ ଯିମା ? ରାବଣ୍ କହେଲା ଇ ଘଡି
ଲଲ୍‌ଦି ଯା ମୁଇଁ ବି ଯାଏଁ ସମିୟା ଯିବା ଗଡି । ॥୧୧୮॥

ଦୁହେ ଗଲେ ବେଲ୍ ଆଏଲା ସିଧା ମୁଡ୍ ଉପର୍‌କେ
ଥାଉନ ଇନ ବାଲ୍ମିକୀ କହନ୍ ସଁଖିଲି ପୁଥି ପତର୍‌କେ । ॥୧୧୯॥



# ପାହୁଡ଼-୬

# ସୀତାଚୋରୀ

କାଲର୍ କୁଲେଁ ବେଲ୍ ଖେଲୁଛେ ସକାଲ୍ ସଂଙ୍ଗ୍ କରି
ଅଲ୍‌ଗେଇ ନୁହନ୍ କିହେ କାହାକେ କେତେ ଯୁଗ୍ ଧରି । ॥୧॥

କାଲ୍-ସମୁଦର୍ କଁଟ୍‌ବାକେ ବେଲ୍‌କେ କଲେଁ କଁଟ୍
ନିଜ୍‌ର ଜିମା ନେବାର୍ କାଯେଁ ଅର୍ବାଚୀ ଫାରେ ଅଂଟ୍ । ॥୨॥

ତାକେ ଆ'ନ ଶମନ୍-ଛୁଆ, ଅଁଟ୍‌କେ ଶମିଆ
ତୁଇଁତ ଆଉ ସତ୍ ସଏଖାତ୍ ନାଇଁ ଟାଲୁ ସମିଆ । ॥୩॥

ବାଲ୍‌ମିକୀ ମୁନି ମନେ ଭାବନ୍ ସୁରୁଯ୍ ନୁହନ୍ ସୁରୁ
ସମିଆ ଜୁଗୁଆ ସତ୍-ମୁର୍‌ତି ଯୁହାର୍ ତାହାକେ ଦୂରୁ । ॥୪॥

ସତର୍ ଲୁଭେଁ ତାହାର୍ ଅଂଶୁଁ ବାହାରି ବଂଶ୍ ଧାରା ।
ଉତ୍‌ରି ଆସେ ରାମର୍ ତକ୍ ସତ୍ ନାଇଁ ଯାଇ ମାରା । ॥୫॥

ରାମ୍‌ର ବାଟ୍ ଦୁଇ ଭଗିଆ ପରିଛେ ଘାଟି ଠାନେ
କହେଲେଁ ମନ୍ ଦୁଖ୍ ନାଇଁ କହେଲେଁ ନାଇଁ ମାନେ । ॥୬॥

ରାମ୍ ସୀତା ଅଭିନ୍ ଜନ୍‌ଏ, ଜୀବନ୍ ଶରୀର୍ ଇନ୍‌ଏ
ଭିନ୍ ଭିନ୍ କଲା ଲୁକର୍ ନାଇଁ ହଏ କେଭେଁ ବନ୍‌ଏ । ॥୭॥

ମନ୍ ନାଇଁ କହେବାକେ ସେ କଥା ମାନେ
ନାଇଁ କହେଲେଁ ରହେ ନାଇଁ ରାମ୍ ଚରିତ୍‌ର ମାନେ । ॥୮॥

କେତେ ସ ତ୍ କରି ସେ କଥା ପାର୍‌ମି ବର୍‌ନି
ସାଁକୁର୍ ପାଁକୁର୍ ଲାଗେ ଅଛନ୍ ସୀତା ସୁନା ବର୍‌ନୀ । ॥୯॥

ସତ୍-ସରୂପ୍ ରାମ୍ ସୁମରି କହୁଛେଁ ସେ କଥା
ରାମ୍ ସୀତା ବୁଝିନେବେ ମୋର ମନର୍ ବଥା । ॥୧୦॥

ଆନନ୍ଦ୍ ଧାମ୍ ହେ ରାମ୍ ବଳି ରାମେନ୍ କଲେ ମୂଲ୍
ଶୁନ୍‌ବାର୍ ଲୁକେ ହେ ରାମ୍ ! କହି ହସଲେ ମୁଲ୍ ମୁଲ୍ । ॥୧୧॥

କୁରିଆ ଭାଉଁରେ ଫଗୁନ ଠାନୁ ଦୁଗୁନ୍ ଫୁଲ୍ ଫୁଟେ
ଭଅଁର୍ ଆସି ଲହର୍ ଲଗେଇ କହର୍ ଯାକ ଲୁଟେ । ॥୧୨॥

ହୁର୍ ହୁରିଆ ଧୁକା ମାରେ ବର୍ ଭଦ୍‌ରିର୍ ତଲେଁ
ଉଲଗି ହ'ନ୍ ଫୁଲ୍ ଗଛ ସବ୍ ମାଁକେ କଲେଁ କଲେଁ । ॥୧୩॥

ଝାରେଁ ଧରେ ଚରେ ମାନ୍‌କର୍ ଗୀତ ଗତର୍ ଯମକ
ଗଛ୍-ସଂସାରେଁ ଖେଳି ଯାଏ ସାଗୁଆ ରଙ୍ଗର୍ ଚମକ୍ । ॥୧୪॥

ପଛୀମନେ ପଛିକନେ ରାମ୍ ସୀତା ବସି
ତାକର୍ ତାକର୍ ଲାତ ଖିଆଲ ହୁଅନ୍ ହସା ହସି । ॥୧୫॥

ରାମ୍ କହନ୍ ? ଲୋକ୍ କହେସନ୍ ସୁନ୍ଦର୍ ହିରନ୍ ଆଁଖି
ଦେଖ, ତୁମର୍ ଆଏଁଖି ଦେଖିବା ହିରନ୍ ରହେ ଟାକି । ॥୧୬॥

ଲେହେଁଟି ଦେଖ୍‌ଲେ ସୀତା ସତେଁ କୁରିଆ ପାଶେଁ ଚିଥଲ୍
ଚିକ୍ ଚିକେଇ ଯାଏ ବରନ ଶରୀର୍ ଥଲ୍ ଥଲ୍ । ॥୧୭॥

ସୁନାର୍ ଦେହେଁ ମଣି ମୁକ୍ତାର ବିନ୍ଦୁ ପଡ଼ିଛେ ଚିତ୍‌ରି
ସିଙ୍ଘ ବୁଥିଁ ମାଟିଁ ଝାରଲେଁ ମାଏଟ୍ ପରେ ଛିଛ୍‌ରି । ॥୧୮॥

ଚର୍‌ଲା ଚର୍‌ଲା ମେତାଲ କରି ଏ ଆଡ୍ ସେ ଆଡ୍ ମଲ୍‌କେ
ଅଟ୍‌କିଲା ଲେଖେଁ କରି ଫେର ଘଡେ ଛନ୍‌ଏ କେଁ ଛଲ୍‌କେ । ॥୧୯॥

କୁରିଆ ପାଖକେ ଆସି ଯାଏ ଗଛେଁ ହଉଛେ ଭେଁଟି
ସୀତା ଭାବ୍‌ଲେ ଧରି ପାନ୍‌ଲେଁ ଫିରଲା ବେଲ୍‌କେ ନେଟି । ॥୨୦॥

ରାଜ୍ ମହଲେଁ ଏନ୍ତା ଜିନ୍ତୁର୍ ଦେଖା ପାଏବେ କାହିଁ ?
ମାଆଁକର୍ ସାଙ୍ଗେ ବହେନ୍ ମାନେ ଆଶ୍ରିୟ୍ ହେବେ ନାଇଁ ? ॥୨୧॥

ମନ୍ ଭାବ୍‌ନା କହେବେ ବଲିଁ ନିଜ୍‌କେ ଟିକେ ଖସ୍ରେଇଁ
ରାମ୍ ଦିହେଁ ବନ୍‌ଏ କରି ଛନ୍‌ଏ ହେଲେ ଘେଁସ୍ରେଇଁ । ॥୨୨॥

ଇ ପାଖ୍ ସେପାଖ୍ ଦେଖିଁ ଖଦେଁ ପକେଇ ଡେବ୍ରିହାତ୍
କହେଲେ ଦେଖ ଜିଦ୍‌ଟାକ ସୁନ୍ଦର୍‌ପନ୍ ସଏଖାତ୍ । ॥୨୩॥

ସୁନାର୍ ଦିହେଁ ଛାଇ ହଇଛେ ମଣି ମୁକ୍ତାର୍ ବୁନ୍ଦି
ସୁନେଲି ପର୍‌ନା ଉପ୍‌ରେଁ କିଏ ରତନ୍ ରଖେ ଖୁନ୍ଦି । ॥୨୪॥

ଏନ୍ତା ଜିଦ୍ ତ ଦେଖିବାର୍ ଛାଡ ନାଇଁ ବି କେଭେଁ ଶୁନି
କେତେ ସୁନ୍ଦର୍ ? ଅହିଁକାରେଁ ବି କେ ପାର୍‌ବା ଖୁନି । ॥୨୫॥

ରାମ୍ ହାତ୍‌କେ ନିଜର୍ ହାତେଁ ଧରିଁ ଥୁଇଲେ କୁଲେଁ
କହେଲେ ପାର୍‌ଲେଁ ଧରି ରଖିତିଁ ନିଜର୍ ଛୁଆ ତୁଲେଁ । ॥୨୬॥

କଅଁଲି ଘାଁସ୍ ପତର୍ ଛିଡେଇ ଖୁଆତିଁ କେରି କେରି
ଏକ୍‌ଲା ନାଇଁ ଲାଗ୍‌ତା କୁରିଆ ତୁମେ କଲେଁ ଦେରି । ॥୨୭॥

ବନ୍‌ବାସ୍ ସାରି ଫିର୍‌ଲା ବେଲେଁ ନେଟିଁ ଜନ୍‌ବାସ୍‌କେ
ବର୍‌ନନା କରି ହେତା ସୁଖେଁ କାଟ୍‌ବାର୍ ବନ୍‌ବାସ୍‌କେ । ॥୨୮॥

ରାମ୍ ଅଲପ୍‌ର୍ ହିଁସି କହେଲେ ସୀତା ହଉଛ ବେଡୀ
ଲୋଭର୍ ପଛେଁ କ୍ଷୋଭ୍ ଥାଇ ଗୁଡେଁ ଲଗାଏ ବେଡି । ॥୨୯॥

ନୁହିଲା ଦରବ୍ ଦେଖିଲେଁ, ଶୁନ୍‌ଲେଁ ନାଇଁହେଲା କଥା
ପଦେଁ ପଦେଁ ବିପଦ୍ ଥାଇ କରେ ଅକଥନ୍ ଅଥା । ॥୩୦॥

ତୁମର୍ କହେଁ ନାଇଁ କଲା କଥା କର୍‌ମି ସେ ଘଡି
ତୁମର୍ ସଉକ୍ ଧାରେଁ ପଛେ ସୁଖ୍ ଯାଉ ଗର୍‌ଗଡି । ॥୩୧॥

କଥା ଶୁନି ସାରି ସୀତା ମୁଡ୍‌କେ କଲେ ତଲ୍
ରାମ୍ ଦେଖିଲେ ଆଏଁଖ୍ ଦୁହିଥୁଁ ପାଏନ୍ ହଏ ଛଲ୍ ଛଲ୍ । ।।୩୨।।

ଧୁନ୍ ଶର୍ ଧରି ଉଠି କହେଲେ ଶୁନ୍ ଭାଏ ଲକ୍ଷ୍ମଣ୍
ଯାଉଛେଁ ମୁଇଁ ଭୁରିଆ ଲୁଗି ରହିଥିବୁ ହର୍‌କ୍ଷଣ୍ । ।।୩୩।।

ସୀତାର୍ ପାଶେଁ ପାଶେଁ ଥିବୁ ନାଇଁ ଛାଡ୍ ତୁ ଛନ୍ଏ
ସମିୟା କାଏଁ ହରୁ ମିଶା ଯାଏସି ବନ୍ଏ ବନ୍ଏ ? ।।୩୪।।

ଚିଥଲ୍ ଆସି ରାମ୍‌କେ ଥରେ ହେଲା ଟିକେ ଦେଖେଇ
ଚଁ କରି ଫେର୍ ବଡ଼କି ନେଲା ରାମ୍‌ଗଲେ କି ପାଖେଇ । ।।୩୫।।

ତିଙ୍ଗର୍ ବାଗିର୍ ଡେଗିଁ ଭାଗେ ଡଙ୍ଗର୍ କରଖ୍ କର୍‌ଖି
ଧର୍‌ବାର୍ ଧରବାର୍‌କେ ହେଲେଁ ଘାଏକେଁ ଯାଏ ମଲ୍‌କି । ।।୩୬।।

କଅଁଲି ପତର୍ କେରେ ଧରି ରାମ୍ ଡାକନ୍ ଆ-ଆ
ସଉକ୍ ପାଖିକେ ସଉ ଭାଏଗ୍ ଆସେ ଚିଥଲ୍ କହେ ଥାଆ । ।।୩୭।।

ପାହା ଲାଗୁଛେ କେତେ କେତେ ବେଲେଁ ଭାଏଲ ଭୁଇଁ
କେନ୍‌ଘଡି ଭାଏଲ୍ ଉଡିଯାଉଛେ ମଝିଆକାଶ୍ ଛୁଇଁ । ।।୩୮।।

ରାମ୍ ଭାବ୍‌ଲେ ଧରା ଦେବା ମାଗା ଗଲେଁ ଯାଇଁ
ମର୍‌ବାର୍‌ଟା ଜାନ୍ଏ ଯଦି ଜାଇଁବାର୍ ଜାନ୍ଏ ନାଇଁ । ।।୩୯।।

ମରନ୍ ଯାହାକେ ମନ୍ କର୍‌ସି କହି ପାର୍‌ବା କେ ମନା ?
ଜାନୁଥିବ ତ ଜୀବନ୍-ଦେବ୍‌ତା ନାଇଁ ହେବ ଦୁଖ୍ ମନା । ।।୪୦।।

ହୁର୍‌ତେଇ ହେବା ମଟନ୍‌କେ କାଏଁ ଭୁର୍‌ଥେଇ ହେବା କାଲ୍ ?
ବାହା ବର୍‌କସି କେ ଡେଗ୍‌ବା ? ମୁର୍‌ତୁର ମହାଖୋଲ୍ ? ।।୪୧।।

ଅଲ୍‌ଗେଇ ମନ୍ଟୁଧରବାର୍ ଆଶ ପେଲ୍‌ଘେଇ ନେଲେ ଶର
ଚିତ୍‌ଘାଲ ହଇଁ ଚିଥଲ ପଡ଼ଲା ଶୁଭ୍‌ଲା ନିଜର ସ୍ୱର । ।।୪୨।।

ଭାଏ ଲକ୍ଷ୍ମଣ୍ ଆ'ରେ ଘାଏ ଯେତେ ପାର୍‌ବୁ ତୁରତି
ଦେଖ୍‌ଲେ ଚିଥିଲ୍ ନୁହେ ମୁର୍ଦ୍ଦାର୍ ମାରୀଚର୍ ମହା ମୂର୍‌ତି । ॥୪୩॥

ଇ ମାରୀଚ୍‌କେ ନାଇଁ ମାରି ଘାଏ ଥ୍‌ଲିଁ ବଅଁଚେଇ
ବିହିର୍ କାଟ୍‌ବାଛୁ, ବାଟ୍‌କେ ଆଏଜ୍ ନେଏ ପୁହଁଚେଇ । ॥୪୪॥

ଦୂରିଆଠାନୁ ଆଏଲା କୁରିଆନିକେ ସେ ଶବଦ୍
ଶୁନି ସୀତା ଅଥା, କାଥେଁ ମାଏଲା ମେତାଲ୍ ତବଦ୍ । ॥୪୫॥

ସୀତା କହେଲେ ଲକ୍ଷ୍ମଣ୍ ହୋ ! ତୁମର୍ ଦଦାର୍ ଡାକ୍
ଶୁନ୍‌ଲ କି ନି ! ଦଉତ ତୁର୍‌ତି ଶବଦ୍ ଆଏଲା ପାଖ୍ । ॥୪୬॥

ଲକ୍ଷ୍ମଣ୍ କହନ୍ ''ବହୁ ! ତୁମେ ନାଇଁ ଚିହ୍ନି କାଏଁ ଦଦାକୁଁ
ଆନନ୍ଦ୍‌କାରୀ ବିପଦ୍‌ହାରୀ ସାରା ଶକ୍ତିର୍ ଗଦାକୁଁ । ॥୪୭॥

ଆପଦ୍ ଆପେଁ ଅପ୍‌ସରିଁ ଯାଏ ଆସେ ଯଦି ପାଶ୍‌କେ
କୁରିଆ ନାଇଁ ଛାଡ୍‌ବାର୍ କାଯେଁ କହି ଯାଇଛନ୍ ଦାସ୍‌କେ । ॥୪୮॥

କେନ୍ କଥାର୍ କଥା ହେଲା ଯେ ତୁମେ ଏଡ୍‌କି ଅଥା
ସେ କାଁ ହେବା ? ଯେ ଘୁଚାସି ସାରା ଜଗତର୍ ବଥା । ॥୪୯॥

ନାଇଁ ମାନ୍‌ଲା ସୀତାର୍ ମନ୍ ହଇଥ୍‌ଲା ରନ୍‌ଭନ୍
ମନା ବୁଝାଥିଁ ନାଇଁ ଟଲ୍‌ଲେ ଟିକେ ବି ଲକ୍ଷ୍ମଣ୍ । ॥୫୦॥

ତାହାର୍ ପରେଁ ଯାହା କହେଲେ ନାଇଁ ପାର୍‌ଲେଁ ସହି
ପାହା ବଢାଲେ କୁରିଆ ବାହାରେଁ ସୀତାକୁଁ ଗଲେ କହି । ॥୫୧॥

ଧ୍ନୁନ୍ ଟିପିଥିଁ ତିନ୍‌ଟା ଗାର୍ କାଟ୍‌ଲେ କୁରିଆର୍ ବାଟେ
''ଇ ଗାର୍ ନାଇଁ ଡେଗ୍‌ବ ଯେତେ ପଡ୍‌ଲେ ବି ଅକାଟେଁ । ॥୫୨॥

ତୁମ୍‌କୁଁ ବିଡ୍‌ଲେ ରାମ୍, ଏଛନି ତୁମେ ବିଡୁଛ ମତେ
ରାମ୍‌କୁଁ ନାଇଁ ମାନି ଯାଉଛେ ତୁମ୍‌ର ଆଦେଶ୍ ମତେ । ॥୫୩॥

ମୋର୍ କାଟ୍‌ଲା ଗାର୍‌କେ ପାର୍ କରି ପାର୍‌ଲା ବାଗିର୍
ଲୋକ୍ ନାଇଁ ନ ମୋର୍ ଚିନ୍ତା ଖାଲି ତୁମର୍ ଲାଗିର୍ । ॥୫୪॥

ଇ ଗାର୍ ଯେ ପାର୍ କରି ବାହାର୍ଁ କୁରିଆ ଭିତର୍
ଆଏବା ନାଇଁ ଜାନି ପାରେ ତଲ୍ ଗଲା କି ଉପର୍ । ॥୫୫॥

ଲୁକ୍‌ନିଆଁ ଥାଇ ରାବଣ୍ ଶୁନିସାରି ସବୁ କଥା
ଭାବ୍‌ଲା ବିନାହାକେଁ ହଇଥିଲା ନ ସେ ଅଥା । ॥୫୬॥

ଲକ୍ଷ୍ମଣ୍ ଯିବାର୍ ଘାଏ ନୁହେ ହଏ ଯୁଗୀ ଟେ ଆସି
କହେ ''ମିଲୁ ଭିଖ୍ ମୁ ଠେ ହୋ କୁରିଆ ବାସୀ । ॥୫୭॥

କୁରିଆ ଭିତ୍‌ରୁଁ ଦେଖିଲେ ସୀତା କିଏ ଆଏ ଭିକାରୀ
ବାବାଜୀ ବାଗିର୍ ବେଶ୍ ମନ୍ ଦିଶେ ଅହଂକାରୀ । ॥୫୮॥

ଗତି ରୀତି  ଚାଲି ଚଲନ୍ ସାଧୁ ସମାନ୍ ନୁହେଁ
ପିଁଧନ୍ ଉଢ଼ନ୍ ବେଶ୍ ଭୂଷଣ୍ ନେ ସାଧୁ କିଏ ହୁଏ ? ॥୫୯॥

ଅଭ୍ୟାଗତ୍‌ଟେ ଭିକ୍ ମାଗେ ନାଇଁ ଦେଲେଁ ସମ୍ମାନ
ଘର୍‌ନାରୀ ପରେ ପଲେଇଁ ଯାଏସି  ଅର୍ଜିତ୍ ଧରମ୍ ମାନ୍ । ॥୬୦॥

ଡ଼ରି କହେଲେ ସୀତା ''ତପି ! କୁରିଆ ଗୁସିଆଁ ନାଇଁ
ଟାକ ଟିକେ ଅତିଥ୍ ପୂଜା କର୍‌ବେ ଆଏଲେଁ  ଯାଇଁ । ॥୬୧॥

ଦର୍‌ଛପିଆ ସୁନ୍ଦର୍ ପନର୍ ଭଁଡାର୍ ସୀତା-ରୂପ୍
ଦେଖିଁ ଯୁଗୀ ଜଡ୍ ପାଲ୍‌ଟେ ଇନ୍ଦ୍ରିୟ ମାନେ ଚୁପ୍ । ॥୬୨॥

ଚେତା ହେତା କାହିଁ ଥିତା ? ନାଇଁ ପାଏଲା ସୋର୍
ଚୋର୍‌ର୍ ସବୁ ଚୁରି ହେଲାନ କାଏଁ ଚୋର୍‌ର୍  ସେ  ଚୋର୍ ? ॥୬୩॥

ଜଡ଼୍ ପାଲ୍‌ଟି ଲଡ୍ ଖଡାଲା ହାଡ୍‌ଗୋଡ୍ ସବୁ ତାର୍
ଗଛର୍  ଉ ଧେଁ ଠାଡେଁ ଠାଡେଁ ଫିରି ପାଏ ଫେର୍ ବିଚାର୍ । ॥୬୪॥

ସୁପନଖୀ କାହିଁ ବର୍‌ନି ପାର୍‌ତା ଇ ସୁନ୍ଦରୀର୍ କଥା
ଆଏଁଖ ତ ଦେଖି ଅଥା ବିଥା, ଜିଭ୍‌, ପାଏତା କାଏଁ ପତା । ॥୬୫॥

କେନ୍ ଭାଷାର୍ କେନ୍ ଅଖରେଁ ଅଛେ ଏତେ ଶକ୍ତି
ଇତାକେ ବୁହିଁ କହି ପାରଲେଁ ରହି ପାର୍‌ବା ବର୍ତ୍ତି ? ॥୬୬॥

ଇ ମୂର୍‌ତି ମରତ୍ ସାରାର୍ ସୁନ୍ଦ୍‌ରୀ ମଏଧେଁ ସାର୍
ଦେଉଲେଁ ଥାପି ପୂଜ୍‌ବାର୍ ଛାଡି କେ ପଠାଲା ଝାର୍ ? ॥୬୭॥

ମନ୍ ଦଉଲେଁ ରଖ୍‌ତିଁ ଯେ ମୋର୍ ସେଟା ସର୍ବାର୍ ସାନ୍
ଗଛ୍ ଖୁଲେଁ କେ ଜନ୍‌କେ ରଖ୍‌ଲେଁ ରହେବା କାଏଁ ମାନ୍ ? ॥୬୮॥

ଜୀଇଁଥିବା ତକ୍ ଦେଖୁଥିତିଁ ନାଇଁ ଛିଇତିଁ ପଛେ
ବର୍‌ହ୍ମା କାଏଁ ମୋର୍ କର୍‌ମେ ହେନ୍ତା ଲେଖିଅଛେ ? ॥୬୯॥

ସୁନ୍ଦର୍ ପନର୍ ବିନା ଜୀବନ୍, କାଁ ଜୀବନର୍ ଜୀବନ୍
ପିଁଡ୍ ପରାନର୍ ଯୋଟ୍ ଖାଲି ଖେଲେ ଗୁଟେ ପବନ୍ । ॥୭୦॥

ଇତାକେ ଛାଡି ପଲାଲେଁ ମୋର୍ ଜୀବନ୍ ଯିବା ଛାଡି
ସୁନ୍ଦର୍ ପନ୍ ବିନା ଜୀବନ୍ ପଡ୍‌ସି ମାଡି ମାଡି । ॥୭୧॥

ତହେଁକି ତହେଁକି ଆଏସି ଆତ୍ମା ଯାହାକେ ପାର୍‌ଲେଁ ଲହେଁକି
ତାର୍ ପୁହୁଁଚିବାର୍ ଠାନ୍ ଯେନ୍‌ନୁ ନାଇଁ ପାରେ ଆର୍ ବହେଁକି । ॥୭୨॥

ସେନିକେ ମୁଇଁ ପୁହୁଁଚି ଆଇଛେଁ କାହାକେ ଆର୍ ଡର୍ ?
ଜୀବନ୍ ନଏଦ୍ ମିଲିତ୍ ହେଲା ମହାନ୍ ସମୁଦର୍ । ॥୭୩॥

ଦର୍ଶନୀ କରି ରଖ୍‌ମି ନେଇ ସାରା ରାଏଜର୍ ଲାଗି
ସୁନ୍ଦର୍ ଦେଖି ଅସୁନ୍ଦ୍‌ରିଆ ଚଲନ୍ ଯିବେ ଭାଗି । ॥୭୪॥

ଖରା ଆଏଲେଁ ଧରାର୍ ଅଁଧାର୍ ପାର୍‌ସି କାଏଁ ରହି ?
ସତ୍ ର ସୁଆଦ୍ ପାଏଲେଁ ଜିଭ୍ ମିଛ୍ ପାର୍‌ସି କାଏଁ କହି ? ॥୭୫॥

ଈ ମୂରତି ଦେଖ୍‌ଥିଲିଁ ଜନକ୍ ରଜାର୍ ସଭାନେ
ନାଇଁ ବାହାରି ଥାଇଁ ଫୁଲ୍ ଥିଲା ତାଲର୍ ଗୁଭାନେ । ॥୭୬॥

ସତ୍ ଥିଲା ସୁନ୍ଦର୍ ଥିଲା ଥିଲା ଏକ୍‌ଲା ପନ୍
ଚିତ୍ ଆନନ୍ଦ୍ ପାଏବାକେ ଦେଖୁଥିଲା ସପନ୍ । ॥୭୭॥

ସତ୍ ହେଲା କାଏଁ ସପନ୍ ତାର୍ ଆଏଜ୍ ଦିଶେ ଭିନ୍‌ଏ
ଶ'ଶ' ଜନମ୍ ଭିତ୍‌ରେଁ ମିଳେ ଏନ୍ତା କେଭେଁ ଦିନ୍‌ଏ । ॥୭୮॥

ଲଙ୍କାନେ ଥୁଇନେମି ସୁନ୍ଦର୍ ଚୁମ୍ବକ୍ ପଥର୍
ଲୁହା ରହି ପାର୍‌ବା କାଏଁ ବାହାରେଁ ନିଦକ୍ ନିଥର୍ । ॥୭୯॥

ଦେଖ୍‌ମି କେନ୍ତା ଆସେ ନାଇଁ ରାମ୍ ଲଙ୍କା ପୁର୍
ଅହଂକାରୀ ଅପବାଦ୍ ହେବା ମୋର୍ ଦୂର୍ । ॥୮୦॥

ଭାବୁଥିଲା ମନେ ନଖେଁ ଖେବୁଥିଲା ପୁର୍‌ଥୀ
ଜନ୍‌କର୍ ଠିଆ ହେ'ବା ଯୁକ୍ତିରି ମାଏଟ୍ ହିଟ୍‌ଲା ଡୁର୍‌ତି । ॥୮୧॥

କହେଲା ଭିକ୍ ଦେବାର୍ ଥିଲେଁ ଜଲ୍‌ଦି ଏକା ଦିଅ
ନହେଲେ ହେବା ଯେନ୍ ଅଧରମ୍ ବୁଚ୍‌କା ବାଧିଁନିଅ । ॥୮୨॥

ତତାପନା ହଇଁ ସୀତା ମିଠାଫଲ୍ କେତେ
ଧରି କହେଲେ ନିଅ ଦଉଛେ ଏଛନି ଅଛେ ଯେତେ । ॥୮୩॥

ଯଜ୍‌ବଜ୍ ପାଇଥିତ ଇଛନ୍ ଥିଲେଁ ଦୁଇଭାଇ
ଚିହ୍ନିଜାନି ମାନିଥିତେ ଠିକ୍ ପର୍‌ଚେ ପାଇ । ॥୮୪॥

ଯୁଗୀ କହେ ସନ୍ୟାସୀ ଆଏଁ କା'ର୍ ଘର୍‌ର ସୀମ୍‌ନା
ନାଇଁ ମାଡେ, ଦୀକ୍ଷା ମୋର୍, ମତେ ଅଛେ ମନା । ॥୮୫॥

ଯାହା କିଛି ଦେବାର୍ ଅଛେ ଦିଅ ଆସି ବାହାରେଁ
ଈନେ ଆର୍ କିଏ ଅଛେ ଲାଜ କର ବାହାରେଁ । ॥୮୬॥

ଦେଲାବେଳେଁ ନଖ୍ କୁଡ଼୍ଲା ଠାନେ ଠିଆ ସୀତା
ମାଏଟ୍ ସହେତେଁ ଉଠେଇ ନେଲା ଚକ୍‌ନି ଧରି ପିଠା । ॥୮୭॥

କୁକୁର୍ ନେଇ ପଲାଏ ଯେନ୍ତା ସେନ୍ତା ବାବାଜୀ
ନଉଁନ ମଉନ୍ ସୀତାର୍ କାନ୍‌ଜେଁ ବଜର୍ ଗଲା ବାଜି । ॥୮୮॥

ଅଟ୍‌ପଟ୍ ଇ ଅବସ୍ଥାନେ ସୀତା ହେଲେ ଛଟ୍‌ପଟ୍
ରାବଣ୍ ତାର୍ ରଥ ବାହେ ଯେତ୍‌କି ପାରେ ଝଟ୍‌ପଟ୍ । ॥୮୯॥

ସୀତା କାନ୍ଦନ୍ ଅହିରୁଦନ୍ ଶୁଭେ ରାମ୍ ରାମ୍
ସୀତା ଦେଖି ଆଏଁଖ୍ ସାଫୁଲ୍ ଶୁନି ସନ୍ତୋଷ୍ କାନ୍ । ॥୯୦॥

ଆଁଖିର୍ ବାଟେଁ ସୀତା ଯାଇ ଆବ୍‌ରିଥିଲେ ଠାନ୍
ରାବଣ୍ ମନ୍ ଭିତରେଁ, କାନର୍ ବାଟେ ଗଲେ ରାମ୍ । ॥୯୧॥

ଯାର୍ ମନେ ସୀତାରାମ୍ ବସନ୍ ଆସନ୍ ପାରି
ଦୁସ୍‌ରା କେନ୍ କଥାକେ ସେ କେ'ନ ପାର୍‌ବା ବାରି । ॥୯୨॥

ଏଦେ ଆଏବା ସେଦେ ଆଏବା ରାମ୍‌ର୍ ଆଡେଁ ଡ଼ର୍
ମନ୍ଦର୍ ଲେଖେଁ ମଥେ ତାର୍ ମନର୍ ସମୁଦର୍ । ॥୯୩॥

ବଇଦେହୀ କାନ୍ଦନ୍ ରହି ଦହି ଗଦେଇ ଲହ
ପତର୍ ପକେଇ ଗଛ୍ କାନ୍ଦୁଛନ୍ ଗୁର୍‌ମୁଟେଇ ଲହ । ॥୯୪॥

ଗୋଦାବରୀର୍ କାନ୍ଦ୍‌ଲା ଲୁହେଁ ଉଦା ହଏ ବାଏଲ୍
ସୁଁ ସୁଁ ହଇ ଶବଦ୍ ଶୁଭେ ପବନ୍ କାନ୍ଦେ ଭାଏଲ୍ । ॥୯୫॥

ରଥ୍ ଘୁଁ ଘୁଁ ଶୁନି ଜଁତ୍ ଉପର୍ ମୁହଁ କରି
ଆଖୁଁ ଥିପେ ଲହ ଟପ୍ ଟପ୍ ନାଇଁ ପାର୍‌ବାର୍ ଚ଼ରି । ॥୯୬॥

ସୁତର୍ ଚ଼ରେ ମାନେ କାନ୍ଦନ୍ ଡ଼ରେଁ ଧରି ଗୁଡ଼ା
ଗୁଲିହା ଗିଧା ଲେଖେଁ ଲବୁଆ ଚ଼ରେ ମାରନ୍ ଉଡ଼ା । ॥୯୭॥

ବଢ଼େ ଜାବର୍ ଗିଧା ପଟେ ରଥର୍ ବାଟ୍ ଛେଁକି
ଅଟ୍‌କାବାକେ ଚେରେଷ୍ଟା କଲା ଡେ଼ନା ଦୁହିଟା ଟେକି । ||୯୮||

କହେଲା ତୁଇଁ କିଏ ? କହ ଉତ୍‌ପାତ୍ ହଉ ଜହ
ପର୍‌ବାଏ ନାଇଁ ଚୁରାବାକେ ପରର୍ ଝି' ବହ । ||୯୯||

କେ'ନ ଶୁନ୍‌ଏ ? ରାବଣ୍ ତାର୍ ବାଟେଁ ଯାଏ ଚାଲି
ଚରେ ଜୀବ୍‌ନେ ମରେ ଅସ୍ ଦିଏ ରାବଣର୍ ଡାଲି । ||୧୦୦||

ନଖ୍‌ଠେଁଟ୍ ଖଁଡ଼ା ତରୁଆଲ୍ ହେଲେ କଟା କଟି
ଡେ଼ନା କଟ୍‌ଲା ଗିଧା ହଟ୍‌ଲା ଲଢ଼େଇ ଗଲା ପଟି । ||୧୦୧||

ଗିଧା କହେ ବଏସ୍ ଗଲା ବଢ଼ିଁଗଲା ତୋର୍ ଆୟୁ
ନେହେଲେଁ ଜାନିଥିତୁ କା'ଣା କରିଥିତା ଇ ଜଟାୟୁ । ||୧୦୨||

ସେ ଦିନୁ ସେ ଜାତିର୍ ଚ଼ରେ ପାଏ ରାବଣ୍ ଡ଼ାକ୍
କହନ୍ ରାମ୍-ମାମୁଘର୍ କୋଶଲର୍ ଲୋକ୍‌ବାକ୍ । ||୧୦୩||

ଚ଼ରେ ଆଏଲେନ ଗୁଡ଼ାକେ ଉଡ଼ି ବୁଡ଼ି ଆଏଲାନ ବେଲ୍
ଜନ୍ ଆଏବା ତରା ଆଏବେ ଖେଲ୍‌ବେ ତାକର୍ ଖେଲ୍ । ||୧୦୪||

ସମିୟା ହେଲା ବେଲ୍‌ହଉ ବେଲା କହେମି ପରର୍ କଥା
ପୁଥି ପତର୍ ସଁଖ୍‌ଲି ଉଠ୍‌ଲେ ମୁନି-ସମ୍‌ରଥା । ||୧୦୫||



# ପାଉଚ୍-୭

# ସୀତା ନୁର୍‌ବାର୍ ଆର୍ ଜଟାୟୁ ଭେଟ୍

ସୁରୁଯ୍ ଆସେ ଆଶ୍ରମ୍‌କେ ଖରା-ଚାଦର୍ ଟାନି
ତଲେଁ ସଜା ରଙ୍ଗୀନ୍ ଫୁଲ୍‌ର୍ ସୁନ୍ଦର୍ ମଙ୍ଗଲ୍ ଖାନି । ॥୧॥

ଗଛର୍ ଛଏରାତଲେଁ ଖରାର୍ ଝୁଁଟି ହଇଛେ ଲେଖା
ଡାଲେଁ ଝୁଲ୍‌ଲା ଫଲ୍ ଫାନସ୍ ଲେଖେଁ ଯାଏ ଦେଖା । ॥୨॥

ଫୁଲ୍ କହରେଁ ଆଶ୍ରମ୍ ଟାକେ ବାସେ ମହମହ
ରାମ୍ କଥାକେ ମୁନି ହେବେ ବଲିଁ  ଗହ ଗହ । ॥୩॥

ଧିଆନେ ମୁନି ଦେଖୁଥିଲେ ସୀତା ପଞ୍ଚବଟୀର୍
ରାବଣ୍ -ରଥେଁ ବସିଥିବାର୍ ଛାଡି  ପତର୍-କୁଟୀର୍ । ॥୪॥

ଇ ସୀତା ଆର୍ ସେ ସୀତା ଯେ ଥିଲେ ରାବଣ୍ ରଥେଁ
ଯୁଲେଇ ଦେଖ୍‌ଲେଁ ବିଶ୍ୱାସ୍ ନାଇଁ କରିହଏ ସଥେଁ । ॥୫॥

ସେ ସୀତାର୍ ଆଖିଁ ତେଭେଁ ଜଳୁଥିଲା ଜୁଏ
ଛିଇଲେଁ ଜଳିଯିବା ବଲି ରାବଣର୍ ଭଏ ହୁଏ । ॥୬॥

ସେ ସୀତା ଆଶ୍ରମେ ଏତେ ଶିଷ୍ଟ, ଶାନ୍ତ ଆଁନ୍
ଲୁହା ଜାନି ପାଏନ୍ ପିଆନ୍ ସହଜେଁ ସରବ୍ ଜାନ୍ । ॥୭॥

ମୁନି କୁମାରୀ ଭିଲିଁ ସୀତା ଅଛନ୍ ସିନେ ବସି
ମନ୍-ବିମାନେ ବସି ପଂଚ୍‌ବଟୀନେ ପଡ୍‌ନ ଖସି । ॥୮॥

କେତେ କଟୁକଥା କହେଲେ ଲକ୍ଷ୍ମଣେ ସେ ଦିନ୍
କେନ୍ତା ହଇଁ ଗଲେ ରାଗ୍ ରିଶ୍‌ମିର୍ ଅଧୀନ୍ । ॥୯॥

ସେ ଦୁସ୍‌କୃତ-ଫଲ୍ ଫଲାଲା ହେଲା ଲଂକା ବାସ୍
ନିଜେଁ ଜାନନ୍ ମୁନି ନାଇଁ କଲେଁ ବି ପ୍ରକାଶ୍ । ॥୧୦॥

ମୁନି କହେଲେ ରାମ୍ ଜୟ ରାମ୍ ସୀତାରାମ୍
ଲଂକା ମୁହାଁ ଧାଉଁଥିଲା ରାବଣର୍ ବିମାନ୍ । ॥୧୧॥

ରାମ୍ ଲକ୍ଷ୍ମଣ୍ ପଂଚବଟୀ ନାଇଁ ପୁହୁଁଚି ଥାଇ
ସେ କଥାର୍ ଚର୍ଚ୍ଚା କର୍‌ମା ମନେ ରାମ୍ ଧାଇ । ॥୧୨॥

କୁଶ କହେଲା ବାବା ! ଗୁ ଟେ କଥା ବୁଝି ନୁହେ
ରାବଣ୍ କେନ୍ତା ସୀତା ମାଁକୁଁ ମାଏଟ୍ ସହେତେଁ ବୁହେ । ॥୧୩॥

ଆମର୍ ଶୁନ୍‌ବାର୍ ଉଚିତ୍ ଯଦ୍‌ରି କହେତ ସେ କଥା
କଥା ବୁଝି ନାଇଁ ପାର୍‌ଲେଁ ମନେ ଆଏସି ବଥା । ॥୧୪॥

ମୁନି କହେଲେ ସେ କଥାକେ ଯେତେ ବନ୍‌ବା ଚ଼ର୍‌ଚା
କର୍‌ମା ତୁମର୍ ମନ୍‌ମାନେ ହେବାର୍ ଯାଏ ପର୍‌ଛା । ॥୧୫॥

ଦେହର୍ ଦେହେରି ଭିତ୍‌ରେଁ ରାବଣ୍ ବଡ଼, ସଂଦେହ୍ ନାଇଁ
ଦେହ୍ ଛିଇଲେଁ ଦେହେର୍ ଭୋକ୍ ବଢେ, କାହିଁଟା କାହିଁ । ॥୧୬॥

ଦେହର୍ ଭୁଗେଁ ଦେହର୍ ଭୋକ୍ ଥର୍‌କେଁ ନାଇଁ ସରେ
ବଢୁଥିସି ଆହୁରି ଆହୁରି କେଭେଁ ନାଇଁ ମରେ । ॥୧୭॥

ନିଜର୍ ଦେହ୍ ଉପରେଁ ଥାଏ ନିଜର୍ ଅଧିକାର୍
ନାଇଁ ଛିଇ ହଏ ବିନା ଗୁସିଆଁର୍ ସୀଉକାର୍ । ॥୧୮॥

ନାରୀ ମାନ୍‌କର୍ ଶରୀର୍ କଥା ଆହୁରି ଟିକେ ଭିନ୍
ଦିହ୍‌ଟା ତାକର୍ ସର୍‌ବସ୍ ଜାଇଁଥିବେ ଯେତେଦିନ୍ । ॥୧୯॥

ଦିହ୍ ନେଇ କରି ଚ଼ଲନ୍ ତାକର୍ ହେସି ଜନାଶୁନା
ଥରେ କାହାକେ ଦେଲେଁ ଦୁହ୍‌ରି ହେବାର୍ ହେସି ଗୁନ୍‌ହାଁ । ॥୨୦॥

ଦିହ୍ ଲାଲ୍‌ଚୀ ଦିହ୍-ବେପାରେଁ ଦେଇଥିସି ତ ମନ୍
ସେ' ଥିଁ ତାର୍ କାମ୍ କବାର୍ ସାଧନ୍ ରନ୍‌ଭନ୍ । ॥୨୧॥

ସେନ୍ତା ଥରେ ରମ୍ଭା ଅପ୍ସରୀର ଅସୀଭକାରେଁ
ଦିହ୍‌କେ ନେଇ ଖେଲ୍‌ଲା ବଲି ପଡ଼୍‌ଲା ବିପଦ୍-ଧାରେଁ । ॥୨୨॥

ଦିହ୍-କର୍‌ତା ଧାତା କହେଲେ ହେନ୍ତା କଲେଁ ଆର୍
ମୁଡ଼େଁ ବୁହିବାର୍ କଡ଼ା ହେବା ସେ ଅକରମ୍ ଭାର୍ । ॥୨୩॥

କରିଥିଲା ଯାହା ତପିସା ଥିଲା ତାର୍ ଫଲ୍
ସାଙ୍ଗେଁ ସାଙ୍ଗେଁ ଗଲା ସରି ଭାଁଗ୍‌ଲା ମନର୍ ବଲ୍ । ॥୨୪॥

ଦିହର୍ ଭୋକ୍ ସଁଭାଲି ନୁହେ ହେଲେଁ ବି ଅଙ୍ଗୀରନ୍
ପୁଂଜିକା ସ୍ଥଳୀ ପରୀକେ ଦେଖି ସେନ୍ତା ଅଥୟ ମନ୍ । ॥୨୫॥

କୁବେରର୍ ପୁଓ ନଲ୍‌କୁବର୍ ତାର୍ ପୁତ୍‌ରା ଆଏ
କହେଲା କେନ୍ତା ଲାଜେଁ ନାଇଁ ଜଲିଁ ଯାଉ ଘାଏ । ॥୨୬॥

ଇନୁ ଇଆଡ଼୍ ଯଦ୍‌ରି ଆଉର୍ କରୁ ଏନ୍ତା କରମ୍
ଯେନ୍ ଦିହ୍ ନେଇ ଅଦିର୍ଯ୍ୟା ସେ ହେବା ନିଶ୍ଚେ ଭସମ୍ । ॥୨୭॥

ସେଥିର ଲାଗିଁ ସେ ଦିନୁ ଆର୍ କାହାରି ଦିହ୍ ଉପ୍‌ରେଁ
ହାତ୍ ନାଇଁ ଦିଏ ଅରାଜିନେ ମନ୍ ରଖିଛେ ସୁତ୍‌ରେଁ । ॥୨୮॥

ହେଁଥିର୍ କାଯେଁ ମାଏଟ୍ ସହିତେଁ ଉଠେଇ ନେଲା ସୀତା
ଯଦିଓ ତାର୍ ଗରବ୍ ଥିଲା ଆଏ ସରବ୍ ପିତା । ॥୨୯॥

ପାଏ ସମ୍‌କର୍ ମନ୍‌କେ ଶୁଭେ ଶ୍ରୀରାମ୍ ଜଏ ଜଏ
ନିରାନନ୍ଦ୍‌ନାଶୀ ଜଏ ରାମ୍ ଆନନ୍ଦ ମଏ । ॥୩୦॥

କହି ମୁନି ମାରୀଚ୍ ମରନ୍ ନିକେ ନେଲେ କଥା
କଥାର୍ ମହାରଥୀ ମୁନି, ଶ୍ରୋତା ବି ବାଘ୍‌ନଥା । ॥୩୧॥

ମାରୀଚ୍ ମରନ୍-ବାଟେଁ ଦେଖେ ରାମ୍କୁ ଏକସ୍କଁଟି
ରାମ୍-ରୂପ୍‌ନେ ବୁଡ଼ି କେତେ ଗହେର୍ ଦେଖେ କଁଟି । ॥୩୨॥

ଆଏଁଖ୍ ଦୁହିଟା ପଖ୍‌ଲା ହଇଛେ ଆନନ୍ଦ୍ ରସେଁ ରସେଁ
ରାମ୍ ରୂପେଁ ପ୍ରାଣ୍ ହଏ ପଶେଁ ପାଇଁ ପଶେଁ । ॥୩୩॥

ରାମ୍ ବି ଦେଖନ୍ ତାର୍ ଦେଖାନେ ଅନ୍‌ଦେଖାନାଇଁ କରି
ସ୍ନେହେ-ଜର୍‌ଜର୍-ନଜର୍ ତାକର୍ ଦିହେଁ ଯାଏ ଚ଼ରି । ॥୩୪॥

କାହିଁଗଲା ସୁନାର୍ ଶରୀର୍ ମଣି ମୁକ୍ତାର୍ ଚ଼ିଦ୍‌ରି
ନିପଟ୍-କପଟ୍ -ଅସଦ୍ ଭିଦ୍‌ରୁଁ ସଦ୍ ଉଦ୍‌ରେ ନିଥ୍‌ରି । ॥୩୫॥

ଭାବନ୍, ଡାକ୍‌ଲା ଲକ୍ଷ୍ମଣ୍ କେ ସଏକାଦ୍ ତାକର୍ କଁଠେ
ସେ ଶବଦ୍ ତ ଠିକ୍ ସେନ୍ତା ଶୁଭିଥିବା ଉଠେଁ । ॥୩୬॥

କୁରିଆ ନିକେ ଶୁଭିଥିବା ଲକ୍ଷ୍ମଣ୍ ଆଏବା ଧାଇଁ
ସୀତା ଏକ୍‌ଲା ଥିବେ କେନ୍ତା କର୍‌ବେ ଦେଖେଁ ଯାଇ । ॥୩୭॥

ରାମ୍ ପାହାଦୁ ନାଇଁ ପକାନୁ ଦେଖ୍‌ଲେ ଆସେ ଲକ୍ଷ୍ମଣ୍
ଧଁ ପଁ ହଇଁ ଦେଖି ଦେଖି ଇ ପାଖି ସେ ପାଖି କ୍ଷଣ୍ କ୍ଷଣ୍ । ॥୩୮॥

ପଚ଼୍‌ରାବାର୍ ଆଗୁଁ କହେଲେ ମହା ଗୁଲ୍‌ଗୁଲା ହଇଁ
କାଁ କର୍‌ଟି ? ସୀତା ମତେ ନାଇଁ ଦେଲେ ରହି । ॥୩୯॥

ବନୋଟି ତୁମର୍ ସ୍ୱର୍‌କେ ସେ ସଥେଁ କର୍‌ଲେ ସଦ୍
ପଠାଲେ ମତେ କହି ବନିହାଁ କଥା ଯଦ୍‌ଖଦ୍ । ॥୪୦॥

ତୁମର୍ କଥା ନାଇଁ ମାନ୍‌ଲିଁ ସେଥିକେ ଅଛେ ଖେମା
ତାକର୍ କଥା ନାଇଁ ମାନ୍‌ଲେଁ ଜୁଏ ଜନକ୍ ଜେମା । ॥୪୧॥

ରାମ୍ କହେଲେ ଯାହା ହେଲା ହେଲା ଯିମା ଚାଲ୍
ମଝା ଝାରେଁ ଏକ୍‌ଲା ନାରୀ ବାଟ୍ ଦେଖୁଥିବା କାଲ୍ । ॥୪୨॥

ଭାଲୁର୍ କୁଟୁର୍ ହଇଁ ହଇଁ ଆଏଲେ କୁରିଆ ନିକେ
ସୀତା କେନ୍ତାଥିବେ ବଲିଁ ମନ୍ ସୁଖ୍ ନାଇଁ ଟିକେ । ||୪୩||

ଦୂରିଆନୁ ଦିଶ୍‌ବେ କୁରିଆ ଦୁଆରେଁ ଥିବା ସୀତା
କାହିଁ ଥିତେ ସୀତା ବିନା ଆଶ୍‌ପାଶ୍ ବି ଶିଠା । ||୪୪||

କୁରିଆ ନୁରି ଆନି ପାଶ୍ ପାଁଜର୍ ଆନ୍‌ଲେ ଛାନି
ପାଁଚ୍ ଅଙ୍ଗୁଲିଆ କରି ଆନ୍‌ଲେ ଝାଡ଼ର୍ କାନି କାନି । ||୪୫||

ଢୁଡ଼ା ନଲିଆ ଗଛ୍ ପଥର୍ ଉଡ଼ାଲ୍ ନୁରି ନୁରି
ଜନ୍‌ମୁହୀ କାହିଁ ନାହିଁ ଜନକ୍ ଜେମା କନକ୍ ଗୁରୀ । ||୪୬||

ସୀତା ନାଇଁ ତ ନାଇଁ, ନାଇଁ କାହିଁ ଚିହ୍ନା ବନା
ଅନାଏତ୍ ଦୁଇ ଭାଇ ଆ'ନ୍ ନିହାଏତ୍ ତନାବନା । ||୪୭||

ଗୋଦାବରୀ ନଏଦ୍ ଭିତ୍ରୁ ଡ଼ଙ୍ଗର୍ ଖୋଲ୍ ଯାଏ
କେନ୍‌ସି ବି ଠାନ୍ ନାଇଁ ଛାଡ଼୍‌ଲେ ଦୁହି ଭାଏ । ||୪୮||

ରାମ୍ ଭାବ୍‌ଲେ ସୀତା ଭାଏଲ୍ କରୁଥିବେ ଥଟା
ଥଟା ଥିଁ ଭି କାହିଁ ଦେଖ୍‌ତେ ଏତ୍‌କି ହଟ୍‌ହଟା । ||୪୯||

ଗଛ୍‌କେ ଗଛ୍ ନାଆଁ ଧରି କାନ୍ଦି କାନ୍ଦି ରାମ୍
''କେ ଦେଖିଛ କହନି ଯେ'' ପଚାରନ୍ ଅବିରାମ୍ । ||୫୦||

ଜାନ୍‌କୀ ମୋର୍ ଜାନ୍ ଜୀବନ୍ ସଉଭାଏଗ୍ ଆର୍ ସୁଖ୍
ସେ ନାଇଁ ତ, ମୁଇଁ ବି ଦେଖେଇ ନାଇଁ ପାରେଁ ମୁଖ୍ । ||୫୧||

ଆଖିଁ ଝରେ ଲହ ଝରନା, ଭାଷାର୍ ଝର୍‌ନା ମୁହୁଁ
ଆମେ ଦୁହେ ମିଶିଁ ଜନ୍‌ଏ, ଅଲଗ୍ ଅଲଗ୍ ନୁହୁଁ । ||୫୨||

''କେ ଦେଖିଛ ସୀତାକେ ମୋର୍ ବତାଇ ନିଅ ଘାଏ
ହେତାଇ ନିଅ ଚେ଼ତାଟିକ ହର୍ଜି ହର୍ଜି ଯାଏ '' । ||୫୩||

ଲକ୍ଷ୍ମଣ୍ କହନ୍ ଏତେ ଅବୁଝ୍ ହେବାର୍ ସୁନ୍ଦର୍ ନୁହେ
ତୁମର୍ ବେଭାର୍ ଉନିଆଁ ମାନ୍‌କର୍ କର୍‌ବାର ମନ୍ ହୁଏ । ।।୫୪।।

ଆସ ଟିକେ ଦେଖ୍‌ମା କୁରିଆ ଆଗେଁ ହଇଛେ ଖାଲ୍
ପୃଥୀର ଝି’ କାଏଁ ଲୁକିଗଲେ ? ପୃଥୀ ଅନ୍ତରାଲ୍ । ।।୫୫।।

ଚାଲ୍ ଦେଖ୍‌ମା କହି ରାମ୍ ଆସନ୍ କୁରିଆ ଦୁଆର୍
ଢୁଡା ଅଛେ ରାବଣ୍ ଯେନୁ ମାଏଟ୍ କେ କରି ବାହାର୍ । ।।୫୬।।

ସୀତା ନେଲା, ସେ ଠାନ୍ କେ ଦେଖି କହନ୍ ରାମ୍
ପୃଥୀ ସାଙ୍ଗେଁ ତାର ଝି’ କେ ନେଲା କେ ହାରାମ୍ । ।।୫୭।।

ଲକ୍ଷ୍ମଣ୍ କହନ୍ ଝି’ର୍ ଲାଗିଁ ମା’ର୍ ଛାତିଁ ଗାଡ୍
ସହଜେଁ ନୁହେ ଜାନି ଝି’ର୍ କାଯେଁ ମା’ର୍ ଲାଡ୍ । ।।୫୮।।

କୁରିଆ ଠାନେ କୁରିଆ ରହେଲା ଗଲେ ଦୁହିଭାଇ
ଅଗା ପଛା ଅଡା ଯୁଆଡି ନୁରନ୍ ସୀତା କାହିଁ ? ।।୫୯।।

ରାମ୍ କହନ୍ ସୀତାର୍ ମୋର୍ ଆଏଁଖ କେ ନାଇଁ ସହି
ହିରନ୍ ଦଲ୍‌ଟା  ଧୀରଯ୍ ଧରି ନାଇଁ ପାର୍‌ଲେ ରହି । ।।୬୦।।

ସେ ନେଇଥିବେ ଆଏଁଖି ଦୁଇଟା ସିଂହ ନେଇଥିବା ଅଁଟା
ଚାଲି ଦେଖି ହାତୀଭାଲିଁ ଗୋଡ୍ ନେଇଥିବା ବଁଟା । ।।୬୧।।

କଂଠ୍ ନେଇଥିବା ମଠ୍ ନାଇଁ କରି କୁଇଲି କଲ୍‌କଁଠୀ
ଚଁପା ଫୁଲ୍‌କେ ଦେହର୍ ବରନ୍ କେ ନ ଥିବା ଅଁ ଟି । ।।୬୨।।

ଫୁଲ୍‌ମାନେ ତାର୍ ମୁଲ୍‌କି ହଁସାର୍ ଚଣ୍ଡ୍ରେ ଟିକେ ଟିକେ
ବାଁଟି ନେଇଥିବେ, ଲହ ଲହଁପି ଥିବେ ଦେହର୍ ନିକେ । ।।୬୩।।

ନୁର୍‌ମା ଯେ କାହିଁ ପାଏମା କରିଥିବେ ଖିନ୍‌ଭିନ୍
କେ ବୁଝ୍‌ବା ସୀତା ବିନେ ରାମ୍ କେତେ ଦୀନ୍ ହୀନ୍ । ।।୬୪।।

ଦେଖି ଲକ୍ଷ୍ମଣ୍ ରାମ୍‌କର୍ ଦୁଖ୍ କନ୍ଦା କଟା ଭାବ୍
ମୁନୁଷ୍ ଆନ୍ ଥିବା କାଁ କରି ସେ ସଭାବର୍ ଅଭାବ୍ । ॥୬୫॥

କହନ୍ ରାମ୍ ତୁମର୍ କବାର୍ ଯେତେ ସୁନ୍ଦର୍ ଆଏ
ତୁମର୍ ଲାଗି ସମାନ୍ ହେସି ହଁସି ହାଏ ହାଏ । ॥୬୬॥

ଚାଲି ଚାଲି ଯାଆନ୍ ଭାଲି ଭାଲି ସୀତାର୍ କଥା
ବସା ଉଠା ନାଇଁ, ନାଇଁ ଲାଗେ କାଏଁ ଅଥା । ॥୬୭॥

ଧିରୁଁ ଦେଖିଲେ ଗିଧ୍ ଚ଼ରେଟେ ଡ଼ଙ୍ଗର୍ ବାଗିର୍ ପରିଛେ
ଜନା ନାଇଁ ଯିବାର୍ ସେ ଜୀଇଁଛେ କି ମରିଛେ । ॥୬୮॥

କଟା ହଇଛେ ଡ଼େନା ଦୁହିଟା ଝରେ ରକତ୍ ଧାର୍
ଜୀଇଁଛେ ବି ଯଦ୍‌ରି ତାହାକେ ଜୀବନ୍ ଲାଗେ ଭାର୍ । ॥୬୯॥

ପୁହୁଁଚ଼ିଲେ କି ରାମ୍ ଲକ୍ଷ୍ମଣ୍ ମୁହୁଁକେ ଟିକେ ଟେଁକ୍‌ଲା
ଦୁହି ଭାଇକୁଁ ଦୁହି ଆଖିଁ ମନ୍ ଭର୍ ଭର୍ ଦେଖିଲା । ॥୭୦॥

ଦଶରଥ କର୍ ପୁଓ ରାମ୍ ଲକ୍ଷ୍ମଣ୍ ଦୁହିଭାଇ
ତୁମର୍ ଲାଗିଁ ଅଛେଁ ବାବୁ ଜୀବନ୍ ତେଜି ନାଇଁ । ॥୭୧॥

ତୁମେ ଅ' ମୋର୍ ମିତ୍ ପୁଓମାନେ ଦଶରଥ୍ ମୋର ମିତ
ସୀତା ନୁର୍‌ବାର୍ ନାଇଁଥିଲେ କାଏଁ ଇନ୍‌କେ ଆସିଥିତ । ॥୭୨॥

ରାବଣ୍ ରଥେଁ ବସେଇ ନଉଥିଲା ମିଠ୍ ବହକେ
ପବନ ସମାନ୍ ଗତି ବିମାନ୍ ଉପରେଁ ମୋର୍ ବହଁକେ । ॥୭୩॥

ବାଟ୍ ଛେଁକ୍‌ଲି, କାଟ୍‌ଲା ମୋର୍ ଡେନା ଇନେ ପଡ଼୍‌ଲି
ତୁମକୁଁ କହି ମର୍‌ମି ପାଣେଁ ଥିବ କାଏଁ ରଡ଼୍‌ଲିଁ । ॥୭୪॥

ବଏସ୍ ଥିଲା ବେଲେଁ ହେଲେଁ ପଲେଇ ପାର୍‌ତା ଭାଏଲ୍ ?
ଲଢେଇଁ କହେ ଯେତ୍‌କି ପାର୍‌ଲି ସେତ୍‌କି କଲିଁ ଘାଏଲ୍ । ॥୭୫॥

ତମେ ଆଏଲ ମର୍‌ମିନ୍ ତାର୍ ଆଗୁଁ ଦେଖ୍‌ମି ଘାଏ
ସେ ମୁହଁକେ ଆନନ୍ଦ ଅନୁଖନୁ ଯାହିଁ ଥାଏ ।                                    ॥୭୬॥

ଆନନ୍ଦ ଆଏନ ସୁଖ୍ ଶାନ୍ତି ଆନନ୍ଦ ଗତି ମୁକତି
ତୁମ୍‌କୁଁ ନାଇଁ ଦେଖିଥିଲେଁ କେନ୍ତା କରି ଭୁଗ୍‌ତିଁ ।                                    ॥୭୭॥

ସୀତା ମାତା ବିନା ଆନନ୍ଦ-ସାଗ୍‌ରୁଁ କାହିଁ ରଁଚେ
ଉନା ନୁହେ ସେ ମତେ ଦିଏ ଆନନ୍ଦ ମୂର୍ତ୍ତିର୍ ପର୍‌ଚେ ।                                    ॥୭୮॥

ଯାଉଛେଁ ବାପା ! ଦକ୍ଷିଣ୍ ଦିଗ୍ ଯାଇଛେ ସେ ହାରାମ୍
ଏତ୍‌କି କହୁନ୍ ଜୀବନ୍ ଗଲା କହି ରାମ୍ ରାମ୍ ।                                    ॥୭୯॥

ରାମ୍ ବସିଛନ୍ ଜଟାୟୁ ଚ଼ରେର୍ ମୁଡ଼୍‌କେ କୁଡ଼େଁ ଧରି
ପଦମ୍ ଫୁଲୁଁ କାକର୍ ଲେଖେଁ ଲହ ଆସେ ଝରି ।                                    ॥୮୦॥

କହନ୍ ଦେଖ୍‌ତ ଲକ୍ଷ୍ମଣ୍ ! ଚ଼ରେ ଜୀବ୍‌ନେ କେଡ଼େ ଆଦର୍
ଅଜାଡ଼ି ଆମ୍‌କୁଁ ଘଡ଼୍‌କେଁ କଲେ ବଂଧୁ ବିରାଦର୍ ।                                    ॥୮୧॥

ପିତାର୍ ମିତ ପିତା  ମେତାଲ୍ ଦେମା ତାହାକୁଁ ମାନ୍
ଶ' ଜଲାମା ଶୁଦ୍ଧ ଶୁଖା କାଠ ଖଣ୍ ଦୁ ଆ'ନ୍ ।                                    ॥୮୨।

ପାଶେଁ କେ ନ ଅଛେ ଦେଖ୍ ଗୋଦାବରୀର୍ ଧାର୍
ସ୍ନାନ୍ ଶଉଚ୍, ତିଲ, ତର୍‌ପଣ୍ ଆଏ କର୍‌ବାର୍ ।                                    ॥୮୩॥

ଶବ୍ ସତ୍‌କାର ପରେଁ ଜଟାୟୁର୍ ଅସ୍ଥି ଧରିଁ
ନଦୀ ପକେଇଁ କଲେ ତର୍‌ପଣ୍ ପିଁଡ଼୍ ପର୍‌ଦାନ୍ କରିଁ ।                                    ॥୮୪॥

ଲବ ଆସି ମୁଡ଼ିଆ ମାରି ମୁନି ପାହା ତଲେଁ
କହେଲେ କହେଁତି ପଦେ କହେବାର୍ ଆଦେଶ୍ ମୁନି କଲେଁ ।                                    ॥୮୫॥

ଶୁନି ମୁନି କହେଲେ ବାବା ! ନିର୍‌ଭଏ ନେ କହ
କେନ୍ କଥା କାଏଁ ଅବୁଝା ରହେଲା ସଂଶ୍ଏ ରହେଲା କହ ।                                    ॥୮୬॥

ଲବ କହେଲା ଗଛ୍ ଲହ୍ ଜଁଦ୍ ଜାନୁଆର୍ ଚରେ
ବୁଝନ୍ କାଏଁ ମୁନୁଷ୍ ଯଦ୍‌ରି କଥା ବାର୍‌ତା କରେ । ॥୮୭॥

ହଁସି ହଁସି ଖୁସି ମନେ କହେଲେ ମୁନି ମହାନ୍
ଭାଷା ଥିସି ତାହିଁ ଯାହିଁ ରହିଥିସି ପ୍ରାନ୍ । ॥୮୮॥

ଆତ୍‌ମା କେ ଯେ ଦେଖି ପାରେ ସବୁ ପରାନୀର୍ ପାଶେ
କେହେନି ଭାବର୍ ଦିଆନିଆ ନାଇଁ ରହେ ନିରାଶେଁ । ॥୮୯॥

ସମ୍‌କର୍ ଭାଷା ସଭେ ବୁଝ୍‌ବେ କହି ବୁଝି ଜାନ୍‌ଲେଁ
ପର୍‌ମାତ୍ମାକେ ସବୁ ଆତ୍ମାନେ ଥିବାର୍ ଯଦ୍‌ରି ମାନ୍‌ଲେଁ । ॥୯୦॥

ସଭେଁ ହଁ କରି କଲେ ରାମ୍ ନାମର୍ ଜୟ
କଲେ ବେଲ୍‌କେ ଦେଖ୍‌ଲେ ସମିଆ ଜିତିଁ ଯାଉଛେ ଜହ । ॥୯୧॥

ମୁନି କହେଲେ କରି ଆସ ଯାଇ ସଂଧିଆ ସ୍ନାନ୍
ବେଲ୍‌ହଉ ତାର୍ ପରର୍ କଥାକେ ସଭେ ଦେମାଧାନ୍ । ॥୯୨॥

❑

# ପାଉଚ୍-୮

# ଶବରୀର୍ କଥା

ପଶ୍ଚିମ୍ ମୁହାଁ ସୂରୁଯ୍ ଦେଖି ଘର୍ ମୁହାଁ ହଏ ଚରେ
ତାର୍ ଭାଷାନେ ଗୀତ୍ ଗାଇ ନିଜର୍ ଗୁଡା ଧରେ । ॥୧॥

ବେଲ୍‌ହଉର୍ ବେଲ୍‌କେ ବାଲ୍‌ମିକୀ ହାତ୍ ଯୁରି କଲେ ଯୁହାର୍
ରାମେନ୍ କହେବେ ବଲି ପୁଥି ପତର୍ କଲେ ବାହାର୍ । ॥୨॥

ସୀତା ନୁହେ ଆସନ୍ ମୁନି କୁମାରୀ ଭିତରେଁ ନାଇଁ
ରାମ୍ ଖୁଜନ୍ ରାମେଣ୍ ନେ ତ ଇନେ ଗଲେ କାହିଁ ? ॥୩॥

ମୁନି ଜାନ୍‌ଲେ ଶୁନି ରାମର୍ କରୁଣା କନ୍ଦା କଟା
ସୀତାକୁଁ ବନ୍‌ଏ ନାଇଁ ଲାଗ୍‌ବାର୍ ହେବାର୍ ହଟ ହଟା । ॥୪॥

ଯେତ୍‌କି କରୁଣ୍ ଭାବେଁ ରାମ୍ କରନ୍ ଖୁଜା ନୁରା
ଭାଷାର୍ ହେତେ ଶକ୍ତି କାହିଁ ଉଦ୍ରେଇ ପାର୍‌ବା ପୂରା ॥୫॥

ମୁନୁଷ୍ ଜନମ୍ ନେଇ ମୁନୁଷ୍ ମହାନ୍ କବାରେଁ ଦେବାମନ୍
ନରନେ ଦେଖ୍‌ବା ନାରେନ୍ ବସେ, ନିଜେଁ ନାରାୟଣ୍ । ॥୬॥

ଗାଧୁଆ ପାଧୁଆ ଖିଆ ପିଆନେ କାହାରି ଥିତା ସୋର୍
ସୀତା ନୁରି ନୁରି ସୀତାର୍ ସୁରେଁ ଅଛନ୍ ଭୋଲ୍ । ॥୭॥

ଗୋଦାବରୀନୁ ଗାଧୁଆ ସାରି ଗଲେ ଉନିଆଁ ଝାର୍
ସୀତା ନାଇଁ ପାଏବାର୍ ତକ୍ କାହିଁ ମାନ୍‌ତେ ହାର୍ ? ॥୮॥

ଇନୁ ସେନୁ ହଇଁ ପୁହୁଁଚିଲେ ଗୁଟେ ଝାର୍
ଫଲ୍‌ମୂଲର୍ ନାଆଁ ନାଇଁ ନାଇଁ ବି ଜଲାଧାର୍ । ॥୯॥

ଭୋକ୍ କିହ୍‌ରେ ଅସୁର୍ ଲେଖେଁ ଲୋକ୍ ନୁରି ନୁରି
କନ୍ ପରାନୀ ଚ଼ରେ ଚିଗୁର୍ନ ସଭେ ଢୁରି ଢୁରି । ॥୧୦॥

ସଭେ ପଡ଼ିଛନ୍ ତାର୍ ହାବ୍‌ଡେଁ ନାଇଁ ଉବ୍‌ରେ କିହେ
ମୁଡ୍ ନାଇଁ ତ ମୁଲ୍ଲୁଁ, ଭାବ୍‌ନାର୍ ଉଷ୍ଟାର ପାଏ ନିହେ । ॥୧୧॥

ମୁଡ୍ ନାଇଁ ନ ତ ପେଟ୍ ମୁହଁ ଅଛନ୍ ଗୁଟେ ଠାନେ
ଗୋଡ଼ ନାଇଁ ତ ଲମ୍ବା ହାତେଁ ସବ୍ ସାଆଁଟି ଆନେ । ॥୧୨॥

ମୁଡ୍ ନାଏଁନ ଗଏଣ୍ ଅଛେ ପଡ୍ଡେ କବନ୍ଧ ଡ଼ାକ୍
ତାର୍ ହାବ୍‌ଡେଁ ପଡ଼ି ଦୁହି ଭାଇ ହେଲେ ଅବାକ୍ । ॥୧୩॥

ଭାବ୍‌ଲେ ଲକ୍ଷ୍ମଣ୍ ରାମ୍ ତ ଆ'ନ୍ ଆନନ୍ଦ୍ ସରୂପ୍ ପୂରା
ଠାନ୍‌ଏ ଅଧିକର୍ ନୁହନ୍ ଆଏ ସାରା ଜଗତର୍ ନୁରା । ॥୧୪॥

ଭୋକ୍ ଆଏ ଅଏରି ବଲି ଭୋକ୍ ଜାନିଛନ୍ ସବ୍
ଇତାକେ ନିହଡିଆ କର୍‌ବାର୍ ପର୍‌ଥମ୍ କର୍‌ତବ୍ । ॥୧୫॥

ହାତ୍ କାଟି ନେଲେ ତାର୍ ବତାଲା ସରୂପ୍ ନିଜର୍
ପଚାର୍‌ଲେସେ ଜାନିଛେ କାଏଁ ସୀତାର୍ ଖୋଜ୍ ଖବର୍ । ॥୧୬॥

ସେ କହେଲା କାଁ ଜାନ୍‌ଏ ସେ ଛାଡ଼ି ପେଟର୍ କଥା
ପମ୍ପା ସରୋବରେଁ ଅଛନ୍ ମୁନି ସାମ୍‌ରଥା । ॥୧୭॥

ସେମାନେ କହି ପାର୍‌ବେ ତୁମେ ଚାହିଁଛ ତ ଯାହା
ସେନ୍‌କେ ଯିବାର୍ କାଯେଁ ନିଜେ ବଢ଼େଇନେଲା ରାହା । ॥୧୮॥

ଝାର୍ ପରବତ୍ ଡେ଼ଗି ଯାଆନ୍ ପଂପା ସରୋବର୍
ଗଲା ବାଟେଁ ସୀତାର୍ ନିଘା ରଖିଁ ବରାବର୍ । ॥୧୯॥

ଯାଉନ୍ ଯାଉନ୍ ଦେଖିଲେ ଗୁଟେ ଡ଼ାଲ୍ ପତରର୍ କୁରିଆ
ସେନୁ ନୁହେ ପଂପା ସରୋବର୍ ଜହ ଦୂରିଆ । ॥୨୦॥

ବାଟ୍ ଦୁଆରେଁ ବାଟ୍ ଦେଖୁଛେ କେତେ ଯୁଗର୍ ବୁଢ଼ୀଟେ
ଜୁନ୍‌ହାଁ ପୁରନା ଚୂନ୍ ଛଡା କେନ୍ କାଉଁର୍ ବସା ଗୁଡ଼ିଟେ ।  ॥୨୧॥

ଦିହେଁ ମୁଡେଁ କାହିଁ ନାଏନ ଗୁଠେ କଲା ବାଲ୍
କେବ୍ କେଚା ହଇ ଲୁଚାକୁଚା ଦିହର୍ ସବୁ ଛାଲ୍ ।  ॥୨୨॥

ଗୁରୁଦେଲା ରାମ୍ ନାମ୍‌କେ ମୁହେଁ ହଉଛେ ଘୁଷି
ସେ ବତାଲା ରାମ୍ ରୂପ୍‌କେ ଆଁଖିଁ ରଖେ ପୁଷି ।  ॥୨୩॥

କାନେ ଶୁଭେ ଅନୁଖନୁ ରାମ୍ ରାମ୍ ଶବଦ୍
ଗୁନ୍ ଗୁନାଏ ରାମ୍ ଗୁନ୍‌କେ ମନ୍‌କେ ରଖି ଜବତ୍ ।  ॥୨୪॥

ଗୁରୁ କାଏଁ ତାର୍ ସୁରୁ ଆନ୍ ? ସେ କହିଛନ୍ ରାମ୍
ବୁଲି କିନ୍ଦ୍ରି ଆଏବେ ସେନ୍‌କେ ମନ୍ ନାଇଁ କଲେଁ ଆନ୍ ।  ॥୨୫॥

କେତେ ବର୍ଷା ଚାଲି ଗଲାନ ବଏଲ୍ ଝଁକେର୍ ପର୍ଷି
କେତେ ଶୀତ୍ ବିତି ଗଲାନ ହେମାଲ୍ କାକର୍ ବର୍ଷି ।  ॥୨୬॥

କେତେ ଜେଠର୍ ରଠ୍ ଖରା ଝାରି ଝାଞ୍ଜି ଝାଉ
ଆଇଛେ ଯାଇଛେ ପାଚ୍‌ଲା ବାଳେଁ ସହେ କାଲର୍ ଦାଉ ।  ॥୨୭॥

ଏ'ଦେ ଆଏବେ ସେ' ଦେ ଆଏବେ ବର୍ଲି ବର୍ଲି ରାମ୍
ଜୀବନ୍-ସାରା ଟାକି ବସିଛେ ଦିନ୍ ରାଏତ୍ ଅବିରାମ୍ ।  ॥୨୮॥

ରାମ୍ ଆଏଲେ କାଁ ବଲ୍‌ବେ ? କୁରିଆ ରଖେ ସାପ୍
ମନ୍-କୁରିଆ ଭିତ୍‌ରେଁ ବାହାରେଁ ନାଇଁ ମଏଲାର୍ ଛାପ୍ ।  ॥୨୯॥

ରାମ୍ ଆଏଲେଁ ଖାଏବେ ବଲି କେତେ ସୁନ୍ଦର୍ ଚିଜେଁ
ଶରଧା ସହିତ୍ ସଂଖ୍ଲି ରଖେ ନାଇଁ ଖାଇ ନିଜେଁ  ॥୩୦॥

ନାଇଁ ଖାଉନୁ ରାମ୍ କେନ୍ତା କରି ନିଜେଁ ଖାଏତା ?
ପୋକ୍ କିର୍‌ଙ୍ଗା ଖାଉନ୍ ପଛେ ସିଇ ହଇକରି ସାଏତା ।  ॥୩୧॥

ଉସ୍ତାର୍ ଦେଖିଁ ତାର୍  ତାର୍ ଝାର୍‌କେ ଝାର୍ ବୁଲି
ସୁଆଦ୍ ସୁନ୍ଦର୍ ଅଏନ୍ ଫଲ୍ ରଖେ ଆନି ତୁଲି ।  ॥୩୨॥

ଶବର୍ ଘରେଁ ଜନ୍‌ମି  ଶବ'ର୍ ଲେଖେଁ କଲା ଦେହେ
ଦେହର୍ ଭାଗେଁ ନାଇଁ, ରାମ୍‌ନେ ଢାଲେ ସବୁ ସ୍ନେହେ ।  ॥୩୩॥

କାଏଁ ନୁର୍‌ତା ସୁଖ୍ ? ସୁର୍‌ତା ନାଏଁ ନ ଦୁଖର୍ ନାମ୍
ଜାନ୍‌ଏ ଏତ୍‌କି ରାମ୍‌ର୍ ନାମ୍ ଆଏ ସୁଖର୍ ଧାମ୍ ।  ॥୩୪॥

ଆନନ୍ଦ୍ ବିନା ଜୀବନ୍ ହଏ ଅଗ୍‌ବା ଦୁଖର୍ ଦୁକାନ୍
ଦୁଖ୍ ଶଉଦା ହର୍‌ମିଷା ଦୁଖ୍ ଲାଭ୍ ନୁକ୍‌ସାନ୍ ।  ॥୩୫॥

ଘର୍ ଛାଡ଼ିଁ ଆଏଲା ଝାର୍ ଯୁଆନ୍ ଦିନର୍ କଥା
ମତଙ୍ଗ ମୁନିର୍ ଆଶ୍‌ରା ନେଲା ପଦେଁ ପାତି ମଥା ।  ॥୩୬॥

ମତ୍‌ଙ୍ଗ ଋଷି ତପ୍ କରନ୍ ପଂପା ସର୍ ପାଶେଁ
ଷୁଲ୍‌ହ ହଜାର୍  ଋଷି ଥିଲେ ସେ ଆଶ୍ରମ୍-ବାସେଁ ।  ॥୩୭॥

ଷୁଲ୍‌ହ ହଜାର୍ ବ୍ରହ୍ମଚାରୀ ଭିତ୍‌ରେଁ ଯୁଆନ୍ ନାରୀ
ରହେବାର୍ ବନ୍‌ଏ ନୁହେଁ ବଲିଁ କହେବାର୍ ଲୋକ୍ ଭାରୀ ।  ॥୩୮॥

ଗୁରୁ କହେଲେ ନୁରୁଛେ ଯେ ନାରେନ୍ ଅବିରଦ୍
ନିଜେଁ ନୁରି ନାରେନ୍ ଇନ୍‌କେ ଆଏବେ ଆଏ ସଦ୍ ।  ॥୩୯॥

ଇ ଆଶ୍ରମର୍ ନାଁ ରହେବା ଅଗନା ଦିନ୍ ଯାଏ
ରହେବା ଯେ ଆଶ୍ରମ୍ ଛାଡ଼ି ନାଇଁ ଯାଏ ଘାଏ ।  ॥୪୦॥

ଗୁରୁ ଗଲେନ ଆଶ୍ରମ୍ ଛାଡ଼ି ଆଶ୍ରମ୍ ଅଛେ ରହି
ଶବ୍‌ରୀ ଅଛେ ସେନ୍ତା ସଙ୍ଗେଁ ଖରାକାକର୍ ସହି ।  ॥୪୧॥

ଶବ୍‌ରୀ ଗାଧିବାର୍ ମନା କଲା ବାବା ଟେ ଜାଏତ୍ ବଅରା
ପଂପା ସରର୍ ପାଏନ୍ ହେଲା ଅସ୍‌କଟ୍ ପୋକ୍ ପହଁରା ।  ॥୪୨॥

ଶବ୍‌ରୀ ସବ୍‌କେ ସାଫ୍ ସୁତ୍‌ରା ରଖୁଥିଲା ନିଜେଁ
ପଡ୍‌ଲେଁ ପାନି ବେଟି ଆନ୍‌ଏ ଅଦର୍‌କାରୀ ଚ଼ିଜେଁ । ॥୪୩॥

ମନା ହେଲା କି ଶବ୍‌ରୀ କେ ଭନ୍ ଭନାଲା ସବ୍
ଖିଆ ପିଆକେ ଅଚ଼ଲ୍ ପାଏନ୍ ହେଲା ମଏଲାର୍ ଘର୍ । ॥୪୪॥

ଷୁଲ୍‌ହ ହଜାର୍ ରଷି ଇଆଡ୍ ସେଆଡ୍ ପାନିର୍ ବିନେ
ବିନ୍ ପାନି କାଏଁ ଦିନ୍ କାଟ୍‌ବେ ଚ଼ଲି ନୁହେ ଦିନେ । ॥୪୫॥

ମତଙ୍ଗ ଗଲେ ଦିନୁ ଅଲଗ୍ ରହୁଥିଲା ଶବ୍‌ରୀ
ରାମ୍ ଆଏବେ ଭରସା ଟିକେ ମନ୍‌କେ ରଖେ ଆବ୍‌ରି । ॥୪୬॥

ତନ୍ ବୁଲୁଥାଏ ଝାର୍ ଝରନା ରାମ୍‌ନେ ଥାଏ ମନ୍
ରାମ୍‌ନେ ମନ୍ ଏକ ଧର୍‌ସିଆ ତନ୍ ତ ତନ୍‌ର ତନ୍ । ॥୪୭॥

ରାମ୍ ଆଏଲେଁ ବସ୍‌ବେ ବଲିଁ ପିଁଢ଼ା,  ଥାଏ ଧାରିଁ
ରୋଜ୍ ରୋଜ୍ ଲିପା ପୁଛା ସୁନ୍ଦର୍ ଦିଶେ ଭାର । ॥୪୮॥

କୁରିଆ ଟିକ୍‌କେଁ କିଛି ନାଏଁନ ଖାଲି ଫଲେ ଫଲ୍
କଁଚା ଗେଧ୍‌ରା ପାଚ଼୍‌ଲା କରି ସୁଆଦ୍ ସୁନ୍ଦର୍ ଭଲ୍ । ॥୪୯॥

ଫଲ୍ ମାନ୍‌କର୍ ସୁଆଦ୍ କହଁର୍ କୁରିଆ ଯାଏ ଢ଼େହଁକି ।
ବାସ୍‌ନାନେ ପାଶ୍ ପାଁଜର୍ ମହ୍ ମହ୍ ଯାଏ ମହକି । ॥୫୦॥

ପେଟେଁ କେନ ଭୋକ୍ ଅଛେ ଯେ ଫଲ୍‌ଟେ ହେଲେଁ ଚାଖ୍‌ତା
ମନର୍ ଭୋକ୍ ଅନୁଖନୁ ରାମ୍ ଆଏଲେଁ ଦେଖ୍‌ତା । ॥୫୧॥

ଯେ ଆଏଲେଁ ରାମ୍ ଆଏଲା ଲେଖେଁ ଲାଗେ ତାହାକେ
ଗୁରୁଦୟାନେ ରାମ୍ ବିନୁ ନାଇଁ ଜାନ୍‌ଏ କାହାକେ । ॥୫୨॥

ରାମ୍ ଦେଖ୍‌ଲେ ଲକ୍ଷ୍ମଣ୍‌କେ ଚେହେରା ଯାଉଛେ ଶୁଖି
ଭୋକ୍ ଦେଖୁଛେ ଭକ୍ ଭକ୍ ଭିତ୍‌ରୁଁ ଲୁକି ଲୁକି । ॥୫୩॥

ରାମ୍ ଲକ୍ଷ୍ମଣ ଠିଆ ହେଲେ କୁରିଆର୍ ବାଟ୍ ଆବ୍‌ରି
ରାମ୍ ଆଏଲେ ବଲିଁ ଶବ୍‌ରୀ ବାହାରି ପର୍‌ଲା ଶବ୍‌ରୀ । ।।୫୪।।

ହାତେଁ ଧୁନ୍ ମୁଣ୍ଡେଁ ଜଟା ଦିହେଁ ବଲ୍‌କଲ୍
ଶବ୍‌ରୀ ବୁପ୍‌ରୀ ରୂପର୍ ଚୁପେଁ ପରି କଲ୍‌ବଲ୍ । ।।୫୫।।

ଏ ମା ଗୋ ! ଆସିଁ ଗଲେନ ନିଶ୍ଚେ ମୋର୍ ରାମ୍
ନିରାନନ୍ଦ-ନିବ୍‌ନା [illegible]ଜେଁ ଅଟୁଟ୍ ଆନନ୍ଦ୍ ଧାମ୍ । ।।୫୬।।

କହି ନାଇଁ ପାରେ କିଛି ଭକା ଛାଡ଼ି ଦେଖୁଛେ
ଆନନ୍ଦ୍ ମୂର୍ତ୍ତିର୍ ରୂପ୍ ଅମୃତ୍ ଥାକିଁ ଥାକିଁ ଢୁକୁଛେ । ।।୫୭।।

ଆଖିର୍ ଲୁହେଁ ଝରି ଆସେ ଆତ୍‌ମା ତାର୍ ନିଥରି
ନାଇଁ ସର୍‌ବାର୍ ଭଷଦ୍ ରସ୍ ଆସେ ଅସ୍‌ରା ଉତ୍‌ରି । ।।୫୮।।

ଟାକର୍ ଟାକର୍ ରାମ୍ ଲକ୍ଷ୍ମଣ୍ ପିଁଢ଼ାନ ଯାଇ ବସ୍‌ଲେ
ବୁଢ଼ୀ ବାଢ଼୍‌ଲା ଭକ୍ତି-ରସ୍ ନିମିଷ୍‌ଟାକେଁ ରସ୍‌ଲେ । ।।୫୯।।

କା'ଣା କହେବା କା'ଣା କର୍‌ବା ନାଇଁ ବୁଢ଼ୀର୍ ସୋର୍
ହଜି ଗଲାନ ଭାବ୍‌ନା ହେଜା ନାଇଁ 'ତୋର୍' 'ମୋର୍' । ।।୬୦।।

ଏକସ୍‌କଁଟି ଦେଖିଶେଷେଁ ଲକସ୍ ଟକସ୍ ହଇଁ
ଫଲ୍ ସବୁକେ ବାହାର୍ କଲା କେ'ନେ ପାରୁଛେ କହି । ।।୬୧।।

ଲକ୍ଷ୍ମଣ୍ ନିକେ ଆଢ଼େଇ ନେଲେ ଫଲ୍ କିଛି ଚାମ୍
ନିଜେ କିଁଛି ଖାଏବାକେ କଲେ ରାଗ୍ ତାନ୍ । ।।୬୨।।

ମିଠା ଶିଠା କଷା ମଧୁର୍ କେ'ନ ପାର୍‌ବେ ଜାନି
ଶବ୍‌ରୀ ନିଜେଁ ବାଛି ନିଛି ଫଲ୍ ଧରାଲା ଆନି । ।।୬୩।।

କେନ୍‌ଟା ନଖେଁ ନିଛି କେନ୍‌ଟା ହାତେଁ ରସ୍ ଥିପେଇ
ଚାଖିଁ ସୁଆଦ୍ ବା'ରି ରାମ୍‌କୁଁ ଦିଏତ ଲହଁପେଇ ।।୬୪।।

ନାଇଁ ଖୁପ୍‌ଲେଁ ନଖେଁ ଦାଁତ୍ ଲଗେଇ ଚାଖି ଦେଖେ
ମନ୍-ପଟାନେ ଆଁଖିର୍ ବାଟେଁ ରାମ୍-ପୁତ୍‌ଲା ଲେଖେ । ॥୬୫॥

ଚାଖିଁ ଚାଖିଁ ଦିଏ ସବୁ ଯାହା ଲାଗେ ମିଠା
ଅଲ୍‌ଗାଇ ନିଏ ଯେନ୍‌ଟା ଲାଗେ ଟିକେ କଷା ପିତା । ॥୬୬॥

ଖୁଆବାର୍ ତାର୍ ନିଶା ହଇଛେ ଖାଏବାର୍ହେଁ ବି ରାମ୍
ଘୁଚୁର୍ ପୁଚୁର୍ ନୁହନ୍ ଅବିକାର୍ ଅବିରାମ୍ । ॥୬୭॥

କେତେବେଲେଁ ଶସ୍‌ରସ୍‌କେ ପକେଇଁ ଦ୍ୱିଏ ଛାଲି
ଖାଇନଉଛନ୍ ରାମ୍ ଆର୍ ପଛ ନାଇଁ ଭାଲି । ॥୬୮॥

ନାଇଁ ଜାନ୍‌ବାର୍ ଶବ୍‌ରୀ ନିଜେଁ ଖୁଆଉଛେ କାଏଁ ବଲି
କେ ଖୁଆଏ କିଏ ଖାଏ ନାଇଁ ପାରନ୍ କାଏଁ କଲି । ॥୬୯॥

ନୁହେ ବାଆରି ରାମ୍ ଶବ୍‌ରୀ ଦୁହେ ହଇଛନ୍ ଗୁଟେ
ଦୁଇଟା ଆତ୍ମା ଏକ୍ ହେବାର୍ ସୁଯୋଗ୍ ଇନେ ଯୁଟେ । ॥୭୦॥

ରାମ୍ ଖାଏଲେଁ ଯାଇ ମେଟ୍‌ବା ସଉମିତ୍ରୀର୍ ଭୋକ୍
ଏନ୍ତା ଦଦା ଭାଏ ଭାଏଲ୍ କାହିଁ ଦେଖିଛନ୍ ଲୋକ୍ । ॥୭୧॥

ରାମ୍ କହେଲେଁ 'ହେଲା' ହେଲା' ଆର୍‌ଗୁଟେ କହେ ଶବରୀ
ଆର୍ ଗୁଟେକେ ଚାଖି ରଖେ ଗୁଟେ ସାଏଲେଁ ଯଦ୍‌ରି । ॥୭୨॥

ନାଇଁ ମାନ୍‌ଏ ଇ ବିଚ୍‌ରୀ ବଲି ରାମ୍ ଉଠିଁ ଠିଆ
ତାମ୍‌ଡି ହାତ୍‌ଲିଁ ସଁଖିଲି ବୁଟ୍‌ଲି ଆନ୍‌ଲେ ଶବରୀ ହିଆ ॥୭୩॥

କେତେ ଗହେର୍ ଶବ୍‌ରୀ ଭାଇ ଶୁଦ୍ଧ୍ ସେନ୍‌ହେ ସର୍‌ସର୍
ଆନନ୍ଦ-ଆସନ୍ ପାରି ତାହିଁ ବସେ ଆତ୍‌ମା ତର୍‌ସର୍ । ॥୭୪॥

ନାଇଁ ପଚାରୁଁ ରାମ୍ କହେଲେ ଆମେ ଦୁଇ ଭାଇ
ରାମ୍ ଲକ୍ଷ୍ମଣ୍ ଅବଧ୍ ରଜାର୍ ପୁଓ ଆଇଛୁଁ ଧାଇଁ । ॥୭୫॥

ବନ୍‌ବାସ୍‌କେ ଆସିଥିଲୁଁ ପିତା ସତ୍‌କେ ପାଲି
ସାଙ୍ଗେ ଥିଲା ସୀତା, ମୋର ବିହା ହେଲା ନାରୀ । ॥୭୬॥

ଗୋଦାବରୀ ନଦୀର୍‌ ଖଁଡି ବର୍‌-ବୁରେର୍‌ ତଲେଁ
ଡ଼ାଲ୍‌ କୁରିଆ କରି ଥିଲୁଁ; ଭଲା କେନ୍‌ କଉଶଲେଁ । ॥୭୭॥

ଚୁରି କରି ନେଲା କିଏ ସୁନା ଗୁରୀ ସୀତା
ତାହାକେ ନୁରି ଇନ୍‌କେ ଆଏଲୁଁ ଇନେ କାହିଁର୍‌ ଥିତା ? ॥୭୮॥

ଯୁଗ୍‌ ଜନ୍‌ମା ଯୁଗ୍‌ନୀ ମାଗୋ ତୁମେ ସବ୍‌ ଦର୍‌ଶୀ
ଜନାଅ ଯଦ୍‌ରି କହିନିଅ ମା, ଆଏବା ସାଧୁ ବର୍‌ଷି । ॥୭୯॥

ଉଛ୍‌ନା ଉହୁଲୁ ପାଏନ୍‌ ଅଛ୍‌ରା ମରୁଭୂଇଁର ବାଲିଁ
ହଜ୍‌ଲା ଲେଖେଁ ହଜିଥିଲା ରାମ୍‌ର୍‌ ଭାବେଁ ବାଲୀ । ॥୮୦॥

ଚେ଼ତ୍‌ ପାଏଲା ହେତ୍‌ ଆଏଲା ରାମ୍‌ର କଥା ଶୁନି
ପାଟ୍‌ଗଲା କେନ୍‌ ବରୁଆ ଶରମ୍‌ ପାଇ ହେଲା ଝୁନି । ॥୮୧॥

ଆଏଁଖ୍‌ ଫାରି ଦେଖ୍‌ଲା ସବୁ ସତ୍‌ ଆଏ କି ସପନ୍‌ ?
ଅଜାନ୍‌ ତକେଁ ଅଁଜେଇ ହେଲା ତାର୍‌ ଅଜାନ୍‌ ପନ୍‌ । ॥୮୨॥

ଦୀନ୍‌ ମୁଇଁ ହୀନ୍‌ ନାରୀ ଅଜାନ୍‌ ବାରେଁ ଶିଘା
ଅଛିଆ ଘରେଁ ଜନମ୍‌ ମୋର୍‌ ଅଗ୍‌ବାର୍‌ ନୀଚ୍‌ ନିଘା । ॥୮୩॥

ଆଏଜ୍‌ ହଏ ସୋର୍‌ ମୋର୍‌ ଗୁରୁ କହେଲେ ଦିନ୍‌ଏ
ବେଦ୍‌ମତୀ କେନ୍‌ କୁଆଁରୀ ସାରା ସୁନ୍ଦରୀ ଭିତରେଁ ଭିନ୍‌ଏ । ॥୮୪॥

କୁଶଧ୍ୱଜ୍‌ ରଷିର୍‌ ବେଦ୍‌ ପଢ଼ାନୁ ଥିଲା ବାହାରି
ଧାତା ଗଢ଼ିଥିଲା ସାରା ଉପ୍‌ଲଏଖ୍‌ ଚିଜ୍‌ ବାଆରି । ॥୮୫॥

ରଷିର୍‌ ମନ୍‌ ଥିଲା ମର୍‌ତେଁ ଭେଟ୍‌ବେ ଯଦି ନାରେନ୍‌
ତାଙ୍କର ହାତେଁ ସଁପି ନେବା ଆସାମାଏନ୍‌ ଇ ସାମେନ୍‌ । ॥୮୬॥

ରାଏଜ୍‌କେ ସୁନ୍ଦର୍ ନାଇଁ ହଇଁଥାଇଁ କିଶୋରୀ ବେଦ୍‌ମତୀ
ଶୁଇ ପରିଥିଲେ ଦିନ୍‌ଏ ସେ କୁଶଧ୍ୱଜ୍ ଯତି । ॥୮୭॥

ଅନ୍‌ମୁନ୍‌ଷିଆ ଶୁଂଭ ଅସୁର୍ ଦେଲା ତାହାକୁଁ ମାରି
ପାଲକ୍ ପିତାର୍ କଲ୍‌ପନାକେ ସତ୍ ରଖିଲା ଜାରି । ॥୮୮॥

ତପ୍ ଜୁଏନେ ତପେଇଁ ତନ୍ ସୁନ୍ଦର୍ ହେଲା ଦୁହୁରି
ଦିନୁ ଦିନ୍‌କେ ଲୁଭ୍‌ଲୁଭାନି ଦିଶ୍‌ଲା ଆହୁରି ଆହୁରି । ॥୮୯॥

ଲଙ୍କାର୍ ରଜା ରାବଣ୍ ଦେଖି ହଇଁ ଗଲା ମୋହିତ୍
ଢ଼େନା ବାହା କରି ମୂଲେଇ ନେଲା ନିଜର୍ ଅହିତ । ॥୯୦॥

ଜୁଏନେ ଝଁପେଇ ହଇନନୀ ଦୁସ୍‌ରା ଜନ୍‌ମ ନେଲା
ସେ ହଇଥିବା ସୀତା ସତୀ ବୁଡ଼୍‌ଲା ରାବଣ୍ ଭେଲା । ॥୯୧॥

ଅନ୍‌ମାନେ ମତେ ହେନ୍ତା ଲାଗେ ନୁହେଁ ସରବ୍‌ଜାନ୍
ହୁରୁଦ୍ କହେ, ଗୁରୁର୍ କଥା ନୁହେ କେବେଁ ଆନ୍ । ॥୯୨॥

ରାମ୍ କହେଲେ ଚାଲ ନିଯେ ଯିମା ଗୁରୁନିକେ
ଈ ବିଷେଥିଁ କା'ଣା ହଇଛେ ପଚାରି ଆଏମା ଟିକେ । ॥୯୩॥

ଶବ୍‌ରୀ କହେ "ଗୁରୁ ମୋର୍ ମତଙ୍ଗ୍ ମହାଋଷି
ଦିହ୍ ଛାଡ଼୍‌ଲେନ କେତ୍‌ନି ଦିନୁ ସର୍ଗେ ଥିବେ ଖୁସି । ॥୯୪॥

କହିଥିଲେ ରାମ୍ ଆଏବେ ନାଇଁ ଥିମି ଜୀଇଁ
ତାହାକୁଁ ଦେଖି ଫଟା ଦଦ୍‌ରା ଜୀବନ୍ ଦେବୁ ସୀଇଁ । ॥୯୫॥

ତାର୍‌କାନୁ ତାର୍ କାନ୍‌କେ ହଇଁ ଷୁଲ୍‌ହ ହଜାର ମୁନି
ପୁହୁଁଚି ପର୍‌ଲେ ଏକା ସଙ୍ଗେଁ ରାମ୍ ଆଏବାର୍ ଶୁନି । ॥୯୬॥

ରାମ୍‌କୁଁ ଦେଖି ଭାସିଁଗଲେ ଆନନ୍ଦ୍-ସମୁଦରେଁ
ରାମ୍ ବି ହେଲେ କଥାବାର୍ତ୍ତା ମହାନ୍ ସମାଦରେ । ॥୯୭॥

କହେଲେ ସଭେ ଭଲ୍ ଅଛ ତ ସବୁ କଥା ତ ବନ୍ଏ''
ମୁଡ୍ ହଲାଇଁ ଯୁଡ଼ା ହାତେଁ ବୁଢ଼ା ମେତାଲ୍ କନ୍ଏ । ।।୯୮।।

କହେଲା ଇନେ ସବୁ ବନ୍ଏ ନ ଗୁଟେ କଥା ମନ୍ଦ
ପଂପା ସରର୍ ପାଏନ୍ ଅଚ୍ଲ୍ ଖିଆ ପିଆକେ ବନ୍ଦ । ।।୯୯।।

ରାମ୍ କହେଲେ ପଚ୍ରା ଉଚ୍ରା ପରେ ପାରିଛେଁ ଜାନି
ଶବ୍ରୀ ସାଧବୀର୍ ଲାଗି ସଫା ଥିଲା ପାନି । ।।୧୦୦।।

ତାହାକୁଁ ମନା ହେଲା ଯେନ୍ତା ପଂପା ସରୋବର୍
ସଫା ନୁହେ ମଏଲାର୍ ଘର୍ ହେଲା ବରାବର୍ । ।।୧୦୧।।

ଅଶଉଚ୍ ଭି ଶଉଚ୍ ହଏ ଯେନ୍ ପାନିର୍ ବଲେଁ
ସେ ପାଏଁନ୍ ଅଶଉଚ୍ ମାନି ପଡ଼ଲ କଲ୍‌ବଲେଁ । ।।୧୦୨।।

ଜଗତ୍ କହ କି ଶରୀର୍ କହ ପଁଚ୍ ଭୂତେଁ ତ ଗଢ଼ା
ସାରା ସିର୍ଜନା ଲାଗିଁ ସମାନ୍ ଭାବେଁ ରହେ କଢ଼ା । ।।୧୦୩।।

ଅକାଶ୍ ଆଲୋକ୍ ପାଏନ୍ ପବନ୍ ସାଙ୍ଗେଁ ମାଏଟ୍ ପୂର୍‌ଥୀ
ସିର୍‌ଜନାକାରୀ ରଖି ନେଇଛେ ସବୁନେ କରି ପୂର୍‌ତି । ।।୧୦୪।।

ତାର୍ ପର୍‌ସାଦ୍ ମାନି ସଭେ ଭାଗ୍ ବାଁଟି ନିଅ
ସଭେଁ ଜାଁଅ ଆଉର୍ ମାନକୁଁ ଜାଁବାକେ ବି ଦିଅ । ।।୧୦୫।।

ତାର୍ ହେଲା ଚିଜେଁ ଏକ୍‌ଚାଟିଆ ଅଧିକାର୍
ହେଲେଁ ହେସି ତାର୍ ଉପରେଁ ଅନ୍ନ ଅତ୍ୟାଚାର୍ । ।।୧୦୬।।

କେ ଛିଆଁ କେ ଅଛିଆଁ ସମ୍‌କରି ଦିହେଁ ସିଏ
କାହାକେ କେ ଅଛିଆଁ ମାନ୍‌ଲେଁ ଛିଆଁ ନାଇଁ ଦିଏ । ।।୧୦୭।।

କଥା ହଉନ୍ ହଉନ୍ ପୁହୁଁଚି ଯାଇଥିଲେ ନ ସର୍‌କେ
ମନା କରିଥିଲା ମୁନି ମନେ ମନେ ସର୍‌କେ । ।।୧୦୮।।

ପୋକ୍ ନରଙ୍ଗା ପୂରିକି ଥିଲା ଧଡାର୍ ପାଏନ୍ ମଏଲା
ଜାନି କିଏହେଁ ନାଇଁ ଆସୁଥାଇଁ ଜନ୍ ଏ କହେଲା । ||୧୦୯||

ନୂଆଁ ମଏଲା ନାଇଁ ହଇଁନ ବେଙ୍ଗ୍ ମାଛର୍ ମୁହେଁ
ପୋକ୍-ମଏଲା ସରିଁ ଗଲେ ନ ରାମ୍ ଶବ୍‌ରୀ ଦୁହେଁ । ||୧୧୦||

ପାଏନ୍ କେ ପଶି ବୁଡ୍ ପକାଲେ ରଷି ପଛାପଛ୍
ଗାଧି କହେଲେ ତୀର୍‌ଥ କାହିଁ ଇତାର୍ ସମ୍‌କଛ । ||୧୧୧||

ରାମ୍‌ର କଥା କୁହା ସୁନ୍ଦର୍ ଚେ଼ହେରା ଆନନ୍ଦ୍ କାରୀ
ଦେହ୍‌କେ ଦେଖି କୋଲ୍ କର୍‌ତେ ମନେ ସଉକ୍ ଭାରୀ । ||୧୧୨||

ରାମ୍ କହେଲେ ତୁମର୍ ମନର୍ କଥା ମୁଇଁ ଜାନେ
କାଁ କରମି ଗହନା ଅଛେ ଦିହ୍ ସୀତାର୍ ଠାନେ । ||୧୧୩||

"ରହ ଏତ୍‌କେଁ' ଯାଉଛେଁ ମୁଇଁ' କହିଁ କଲେ ଯୁହାର୍
ଆହୁରି ଦିନ୍ ଏ ବେଲେ ବଲିଁ ଛେଁକ୍‌ଲେ ସବୁ ପାର୍ । ||୧୧୪||

ରାମ୍ କହେଲେ ହର୍‌ବର୍ ଅଛେ ହର୍-ବର୍ ପାଇଁ ପରେ
ଲଙ୍କାର୍ ରାଜା ନିଶଙ୍କାନେ ନାଇଁ କଲା କାମ୍ କରେ । ||୧୧୫||

ତାହାର୍ ଥାବ୍ କର୍‌ବାକେ ଲାଗ୍‌ବା ସମିୟା ଜହ
ମୁଇଁ ଯାଉଛେଁ ଯୁଗୀ ମୁନି ଯୁହାର୍ ଛିନି ରହ । ||୧୧୬||

ରାମ୍ ଲକ୍ଷ୍ମଣ୍ ଚାଲ୍‌ଲେ ଆର୍ ଶବ୍‌ରୀ ପଛେଁ ତାକର୍
ପରମ୍ ପଛେଁ ଜୀବର୍ ଚାଲି ତାର୍ ପଛେଁ ବିବେକର । ||୧୧୭||

ଜାନ୍‌ବାକେ ରାମ୍ ପଚାରନ୍ ଶବ୍‌ରୀ କହେ ଚାଲିଁ
ଦୁର୍‌ଦାନ୍ତ ଦୁନ୍ଦୁଭି ସାଙ୍ଗେଁ ଲଢୁଥିଲା ବାଲୀ । ||୧୧୮||

ହାରିଁ ଗଲା ଦୁନ୍ଦୁଭି କି ତାହାକେ ଚି଼ରି ଫାରି
ଫିଙ୍ଗ୍‌ଲା କି ଗୁରୁ ଆଶ୍ରମେ ରକତ୍ ହେଲା ଝାରି । ||୧୧୯||

ସ୍ନାନ୍ ଶଉଚେଁ ଥିଲେ ମତଙ୍ଗ ରଷି ଫିରିଁ ଆସି
ରାଗ୍ ଆଏଲା ମାଡି ଅଭିଶାପ୍ ଗଲେ ବର୍‌ଷି । ||୧୨୦||

ତାର୍ ଆଶ୍ରମ୍ ଉପ୍ରେଁ ଯେ ଫିକ୍ଲା ଅସୁର୍ ମୁର୍ଦ୍ଧାର
ଇନ୍କେ ଆଏଲେଁ ଶ'ଶ' ଖଣ୍ ହେବା ନାଇଁ ନିସ୍ତାର୍ । ।।୧୨୧।।

ହେଁଥିର୍ କାଯେଁ ବାଲୀର୍ ଡ଼ରେଁ ସୁଗ୍ରୀ ଆସିଁ ଲୁକେ
ମୂକ୍ ତପିସାର୍ ସିଧିଠାନ୍ ଗିରି ଋଷ୍ୟ ମୂକେ । ।।୧୨୨।।

ଭାଲୁ ମାକର୍ ମାନ୍କର୍ ସେ ରଜା ଦୁଇଭାଇ
ଅକଲନ୍ ଦୁହିଭାଇର୍ ବଲ୍ କିହେ କମ୍ ନାହିଁ । ।।୧୨୩।।

ହେଲେଁ ବାଲୀର୍ ଅସୀମ୍ ଶକ୍ତି ଯା'ର୍ କର୍ସି ସାମ୍ନା
ଅଧାବଲ୍ ତାର୍ ଟାନି ଆନ୍ସି ଯଦ୍‌ରି କରେ କାମ୍ନା । ।।୧୨୪।।

ସେଥିର୍ ଲାଗି ସୁଗ୍ରୀ ବିଚ୍‌ରା ରହେ ଡ଼ରେଁ ଡ଼ରେଁ
ଇନେ ଥାଇ ସବୁ ଖବର୍ ରଖେ ପରେଁ ପରେଁ । ।।୧୨୫।।

ତା'ର୍ ସାଙ୍ଗ୍ ଛାଡ଼ନ୍ ନାଇଁ ଚାଏର୍ ଯୋଦ୍ଧା ମହାନ୍
ଗନ୍ଧମାର୍ଦ୍ଦନ୍ ସୁଷେଣ୍ ତାରାକ୍ଷ ଆଉର୍ ହନୁମାନ୍ । ।।୧୨୬।।

ଇ ଡ଼ଲ୍କେନ୍ ଲହିଁକି ଗଲେଁ ଆର୍ ଫାଲ୍କେ ତାର୍
ଇ ପର୍ବତ୍ ଭିତ୍ରେଁ ନ ନିଝାଟ୍ ପରେ ଝାର୍ । ।।୧୨୭।।

ସେ ନେ ଥିବେ ସୁଗ୍ରୀ ତାକର୍ ସାଙ୍ଗ୍ ସଖା ନେଇ
ସେ ପାର୍ତେ ନୁରି ଖୁଜି ପଠେଇ ଭାଇ ଦାଇ । ।।୧୨୮।।

ରାମ୍ କହେଲେ ହଉ ଗୋ ମା! ନାଇଥିଲେଁ ବି ମନ୍ ।
ତୁମ୍‌କୁ ଛାଡ଼ି ଯାଉଛେଁ ଇ ମମ୍‌ତା ଅଧୀନ୍ ତନ୍ । ।।୧୨୯।।

ତନ୍ ସିନା ଯାଏ ରହେ ଆତ୍‌ମା ସାଙ୍ଗେ ମନ୍
କହି କହି ପାହା ବଢ଼ାଲେ ପଛା ପଛ୍ ଲକ୍ଷ୍ମଣ୍ । ।।୧୩୦।।

ଶବ୍‌ରୀ ଦେଖୁଥିଲା ଦିଶୁଥିବାର୍ ତକ୍ ରାମ୍
ନାଇଁ ଦିଶ୍‌ଲେ କି ଦିହ୍ ଛାଡ଼ି ପଲେଇଗଲା ପ୍ରାଣ୍ । ।।୧୩୧।।

